# କଥା କହେ କୋଣାର୍କ

ଡ. କାର୍ତ୍ତିକେଶ୍ୱର ପାତ୍ର





**ଡକ୍ଟର କାର୍ତ୍ତିକେଶ୍ୱର ପାତ୍ର**

**ପିତା** - ସ୍ୱର୍ଗତ ଭଗବାନ ଚନ୍ଦ୍ର ପାତ୍ର

**ମାତା** - ସ୍ୱର୍ଗତ କ୍ଷୀରୋଦ ମଣି

**ଜନ୍ମସ୍ଥାନ** - ଗ୍ରାମ, ସୁକରାଢ଼ି, ଥାନା-ଭୋଗରାଇ, ଜିଲା- ବାଲେଶ୍ୱର

**ଜନ୍ମତାରିଖ** - ମେ ୨୫, ୧୯୪୧

**ଶିକ୍ଷାଗତ ଯୋଗ୍ୟତା** - ଓଡ଼ିଆରେ ଏମ୍.ଏ. (ରେଭେନ୍ସା), ପି.ଏଚ୍.ଡ଼ି. (ଉତ୍କଳ ବିଶ୍ୱବିଦ୍ୟାଳୟ)

**ଚାକିରୀ** - ଖନ୍ତାପଡ଼ା ହାଇସ୍କୁଲରେ ବିଜ୍ଞାନ ଶିକ୍ଷକ

ନରେନ୍ଦ୍ର ନାଥ ହାଇସ୍କୁଲରେ ପ୍ରଧାନ ଶିକ୍ଷକ

ରାଉରକେଲା ସାନ୍ଧ୍ୟ କଲେଜରେ ଓଡ଼ିଆ ଅଧ୍ୟାପକ ।

**ନିର୍ବାଚିତ ପ୍ରତିନିଧି** - ଭୋଗରାଇ ପଞ୍ଚାୟତ ସମିତିର ଅଧ୍ୟକ୍ଷ ୧୯୬୭-୧୯୭୦

ଭୋଗରାଇ ନିର୍ବାଚନ ମଣ୍ଡଳିର ବିଧାୟକ ୧୯୭୧-୧୯୭୭ / ୧୯୮୦-୧୯୯୫

ବାଲେଶ୍ୱର ଲୋକସଭାର ସଦସ୍ୟ - ୧୯୯୧-୧୯୯୬

ମନୋନୀତ ନିଯୁକ୍ତି - ଓଡ଼ିଶା ଏଗ୍ରୋ ଇଣ୍ଡଷ୍ଟ୍ରିଜ କର୍ପୋରେସନର ଅଧ୍ୟକ୍ଷ ( ୯ ବର୍ଷ)

ଓଡ଼ିଶା ଖଦୀ ଓ ଗ୍ରାମୋଦ୍ୟୋଗ ବୋର୍ଡର ସଭାପତି (୮ ବର୍ଷ)

ହାୟାର ସେକେଣ୍ଡାରୀ କାଉନସିଲର ପ୍ରଥମ ସରକାରୀ ସଦସ୍ୟ,

ଶ୍ରୀ ଜଗନ୍ନାଥ ସଂସ୍କୃତ ବିଶ୍ୱ ବିଦ୍ୟାଳୟର ମନୋନୀତ ସଦସ,

# କଥା କହେ କୋଣାର୍କ

ଡକ୍ଟର କାର୍ତ୍ତିକେଶ୍ୱର ପାତ୍ର

ପ୍ରକାଶନ ଉପଦେଷ୍ଟା
ଶ୍ରୀ ବିନୋଦ ବିହାରି ବିଶୋଇ
ମୋବାଇଲ : ୯୯୩୭୬୯୪୭୮୧

ପ୍ରକାଶକ
ଜ୍ଞାନଯୁଗ ପବ୍ଲିକେଶନ
ଏନ୍-୬/୪୨୮, ଆଇ.ଆର.ସି. ଭିଲେଜ,
ଭୁବନେଶ୍ୱର - ୧୫
ଫୋନ୍ ନଂ : ୦୬୭୪- ୨୩୬୦୨୯୧

ଅକ୍ଷର ସଜ୍ଜା :
ରାକେଶ ଗ୍ରାଫିକ୍ସ, ଭୁବନେଶ୍ୱର
ଫୋନ୍ ନଂ - ୯୪୩୭୬୧୨୪୪୪

ପ୍ରଥମ ପ୍ରକାଶ : ୨୦୧୭

ପ୍ରଚ୍ଛଦ : ମୁନ୍ନା

ମୁଦ୍ରଣ :
କ୍ରିଏଟିଭ୍ ଅଫସେଟ୍ସ,
ଭୁବନେଶ୍ୱର - ୧୫

ମୂଲ୍ୟ : ଟ.୨୦୦/-

---

Published by Smt. Susama Bisoi on behalf of Gyanajuga Publication
N-6/428, IRC Village, Nayapalli, Bhubaneswar - 751015, Odisha
Ph. : (0674) 2362091

# ଅର୍ପଣ

ଯେଉଁମାନଙ୍କ ମୁଖମଣ୍ଡଳ-ଆଇନାରେ ମୁଁ ପୃଥିବୀର ଅସଂଖ୍ୟ ସନ୍ତାନ ସନ୍ତତିଙ୍କର ମୁଖ ଛବି ଦେଖେଁ, ସେମାନେ ହେଲେ ମୋର ପରମ ସ୍ନେହ ଶ୍ରଦ୍ଧାର ପୁତ୍ର କନ୍ୟା ବୃନ୍ଦ, ମମତା, ଅନୀତା, ଦେବାଶିଷ ଏବଂ ଅମିତା।

ମୋର ଆଶା, ସେହିମାନଙ୍କ ଜରିଆରେ ପୃଥିବୀର ସନ୍ତାନ ସନ୍ତତିଙ୍କ ପାଖରେ ମୋର ମାନସ ପୁତ୍ର **"କଥା କହେ କୋଣାର୍କ"** ଏହି ଉପନ୍ୟାସଟି ପହଞ୍ଚି ପାରିବ।

ସେଥିପାଇଁ ମୋର ଏହି ଉପନ୍ୟାସଟିକୁ ସେହିମାନଙ୍କ ଉଦ୍ଦେଶ୍ୟରେ ଅର୍ପଣ କରି ରହୁଛି।

**ଶୁଭେଚ୍ଛୁ**
।। ବାବା ।।



ସୂର୍ଯ୍ୟଦେବଙ୍କ ପାଦ ପ୍ରାନ୍ତରେ ମହାରାଜା, ମହାରାଣୀଙ୍କର ପୂଜାର୍ଚ୍ଚନା



କୋଣାର୍କ ମନ୍ଦିରର ମୁଖ୍ୟ ପ୍ରବେଶ ପଥ



ମନ୍ଦିର ଗାତ୍ରର ସୂକ୍ଷ୍ମ କାରୁକାର୍ଯ୍ୟର ଦୃଶ୍ୟ



କୋଣାର୍କ ମନ୍ଦିର ନିର୍ମାତା ମହାରାଜ ଲାଙ୍ଗୁଳା ନରସିଂହଦେବ ।



ମନ୍ଦିର ପ୍ରାଙ୍ଗଣରେ ସୂକ୍ଷ୍ମ କାରୁକାର୍ଯ୍ୟ



ମନ୍ଦିର ଗାତ୍ରର ସୂକ୍ଷ୍ମ କାରୁକାର୍ଯ୍ୟର ଦୃଶ୍ୟ

# ଯେଉଁଠି ପଥର କଥା କହେ

ଡକ୍ଟର କାର୍ତ୍ତିକେଶ୍ୱର ପାତ୍ରଙ୍କ ସଦ୍ୟ ରଚିତ ଉପନ୍ୟାସ 'କଥା କହେ କୋଣାର୍କ' ଏକ ଅପୂର୍ବ ସାରସ୍ୱତ କୀର୍ତ୍ତି, ଯେଉଁଥିରେ ଇତିହାସ, କିମ୍ବଦନ୍ତୀ, ସତ୍ୟ ତଥା ତଥ୍ୟସମୂହକୁ ଫେଣ୍ଟାଫେଣ୍ଟି କରି ଔପନ୍ୟାସିକ ଗଢ଼ିଛନ୍ତି ଏକ ଚାରୁ କାରୁକଳା ଭାସ୍କର୍ଯ୍ୟର ସାରସ୍ୱତ ଇମାରତ ଏବଂ ଯେଉଁଥିରେ ପ୍ରସ୍ଫୁଟମାନ ହୋଇଛନ୍ତି ଶିଳାର ସୂକ୍ଷ୍ମାତିସୂକ୍ଷ୍ମ ପଦ୍ମ ପାଖୁଡ଼ାମାନ। ଯାହା ସଦା ସତେଜ ଓ ଜୀବନ୍ତ ରହିଛନ୍ତି ଇତି ମଧ୍ୟରେ ଛଅ ଶହ ବର୍ଷ ଅତିକ୍ରାନ୍ତ ହୋଇ ସାରିଥିଲେ ମଧ୍ୟ। ସୁନ୍ଦରେ ତୃପ୍ତିର ଅବସାଦ ନାହିଁ, ଯେତେ ଦେଖୁଥିଲେ ନୂଆ ଦିଶୁଥାଇ ଭଳି ଓଡ଼ିଆ ଜାତିର ଏହି କୋଣାର୍କ ତଦାନୀନ୍ତନ ଜୀବନ ଚିତ୍ରର ଗନ୍ତାଘର, ବିଶ୍ୱର ଏକ ଅତୁଳନୀୟ ଗ୍ରନ୍ଥାଗାର, ଏକ ସୁବିସ୍ତୃତ ଗବେଷଣାଗାର, ଯେଉଁ ମନ୍ଦିର ଗାତ୍ରରେ ଲିପିବଦ୍ଧ ହୋଇ ରହିଛି ଅକଳନ୍ତି ସମାଜ-ଚିତ୍ର, ରାଜା ଓ ପ୍ରଜାର ଚରିତ୍ର, ଦେଶ ଶାସନ ଓ ରାଜ୍ୟ ଜୟର ଐତିହାସିକ ବିବରଣୀ ଓ ବିପଣୀ ଓ ସର୍ବୋପରି ଧର୍ମୀୟ ନୀତିଶାସ୍ତ୍ର ଓ ରତିଶାସ୍ତ୍ର। ଦହିକୁ ରୋମନ୍ଥନ କଲେ ଯେମିତି ସେଥିରୁ ନିର୍ଗତ ହୁଏ ଅଧିକ ଅଧିକ ଘୃତ-ସାର, କୋଣାର୍କରେ ସ୍ଥାପିତ ଚାରୁକଳା ଓ କାରୁକଳାକୁ ଗଭୀର ଅଧ୍ୟୟନ ଓ ମନ୍ଥନରୁ ଉତ୍ପନ୍ନ ହୋଇଥାଏ ଅନେକ କଥା ଓ କାହାଣୀ, ଯେଉଁ କେତୋଟି ମୂଲ୍ୟବାନ ମୁକ୍ତାକୁ ଅର୍ଦ୍ଧଶତକରୁ ଅଧିକ ପୁସ୍ତକର ରଚୟିତା ଡକ୍ଟର କାର୍ତ୍ତିକେଶ୍ୱର ପାତ୍ର ଆବିଷ୍କାର କରିଛନ୍ତି ଓ କଲମ ମୁନରେ ଫୁଟାଇଛନ୍ତି ଅନେକ କଥା ଓ ଉପକଥା, ଯଥା - ମହାବୀର ହନୁମାନଙ୍କ କୃପାରୁ ପିତା ଅନଙ୍ଗଭୀମ ଦେବ (ତୃତୀୟ) ଓ ମାତା ରାଣୀ କସ୍ତୁରୀ ଦେବୀଙ୍କ ଔରସ ସମ୍ଭୂତ ପୁତ୍ର ନରସିଂହ ଦେବ, ଯାହାଙ୍କର ନିମ୍ନ ଦେଶ ମେରୁ ହାଡ଼ଟି ଈଷଦ୍ ବର୍ଦ୍ଧିତ ଅବସ୍ଥାରେ ଥିଲା ଯାହା ହନୁମାନଙ୍କ ଲାଙ୍ଗୁଡ଼ ସଦୃଶ ଥିଲା ଏବଂ ସେଥିପାଇଁ ତାଙ୍କର ନାମ ଲାଙ୍ଗୁଳା ବା ଲାଙ୍ଗୁଡ଼ା ନରସିଂହ ଦେବ ହୋଇଥିଲା (ପୃ-୧୬)। ଔପନ୍ୟାସିକଙ୍କ ଭାଷାରେ 'ସେ

ହେବ ସିଂହ ପରି ବଳବାନ - ବୀରତ୍ୱରେ ବିକ୍ରମାଦିତ୍ୟ, ବିଦ୍ୟାରେ ବୃହସ୍ପତି, ସଂଯମରେ ସଂଜୟ, ସୌନ୍ଦର୍ଯ୍ୟରେ ସୁରପତି ଏବଂ ସକଳ ନିର୍ମାଣ କୌଶଳରେ ବିଶ୍ୱକର୍ମା।' ଏଭଳି ଜଣେ ସର୍ବଗୁଣ ସମ୍ପନ୍ନ ନରପତି ଓଡ଼ିଶା ମାଟିରେ ଜନ୍ମ ନେଇଥିବାରୁ କାଳ କାଳ ପାଇଁ ଏ ଜାତି ଗର୍ବିତ। ଓଡ଼ିଶାର ଗଙ୍ଗବଂଶୀୟ ଏହି ରାଜନ୍ ନରସିଂହ ଦେବ, ବିଭିନ୍ନ ରାଜ୍ୟ ଜୟକରି ବିପୁଳ ଧନରତ୍ନ ଆମ ରାଜ୍ୟକୁ ବୋହି ଆଣିଥିଲେ - ଉତ୍ତରରେ କାଶ୍ମୀର ଠାରୁ ପୂର୍ବରେ ବଙ୍ଗଦେଶ (ଗୌଡ଼ୀୟ ଦେଶ) ଓ ଦକ୍ଷିଣରେ ଦାକ୍ଷିଣାତ୍ୟ (ଆନ୍ଧ୍ରପ୍ରଦେଶ)ରୁ ଏବଂ ବିନିଯୋଗ, କରିଥିଲେ ବିଶ୍ୱର ସର୍ବୋତ୍‌କୃଷ୍ଟ ପଥରର ମନ୍ଦିର ନିର୍ମାଣରେ। ଯାହାର ନାମ 'କୋଣାର୍କ'। କାଶ୍ମୀର ରାଜ୍ୟ ଜୟପରେ ରାଜା ନରସିଂହ କାଶ୍ମୀର ରାଜକୁମାରୀ ଅନସୂୟାଙ୍କୁ ବିବାହ କରିଥିଲେ। ଏହି ବିଦୂଷୀ ମହାରାଣୀ ରାଜାଙ୍କ ଅନୁପସ୍ଥିତି ଓ ରାଜ୍ୟଜୟ ସମୟରେ ପତିଙ୍କ ନିର୍ଦ୍ଦେଶ ମତେ କାୟମନୋବାକ୍ୟରେ ରାଜ୍ୟ ଶାସନ କରୁଥିଲେ, ମନ୍ଦିର ନିର୍ମାଣର ଅଗ୍ରଗତି ତଦାରଖ କରୁଥିଲେ। କୁହାଯାଏ, ବାରଶହ ବଢ଼େଇ ବାର ବର୍ଷ ଧରି ମନ୍ଦିର କାର୍ଯ୍ୟରେ ନିୟୋଜିତ ଥିଲେ। ଏହି ବାରବର୍ଷ, ଇତିହାସରେ ଥିଲା ଏକ କଠିନ ପରୀକ୍ଷା, ସଂଯମର ସମୟ, ବ୍ରହ୍ମଚର୍ଯ୍ୟ ବ୍ରତୋପାସନାର କାଳ। ପରିବାର ଠାରୁ ବିଚ୍ଛିନ୍ନ ରହି ଓଡ଼ିଆ ପଥର ଶିଳ୍ପୀମାନେ ଯେଉଁ ଏକାଗ୍ରତା ଓ ତିତୀକ୍ଷାର ପରିଚୟ ଦେଇଛନ୍ତି, ତାହା ବିଶ୍ୱ ଇତିହାସରେ ବିରଳ। ସେମାନଙ୍କ ପରିବାର ପ୍ରତି ରାଜାନୁଗ୍ରହର ତିଳେ ମାତ୍ର ଅବହେଳା ଦେଖାଯାଇ ନାହିଁ।

ଔପନ୍ୟାସିକ ଡକ୍ଟର ପାତ୍ର ମଧ୍ୟ ସୃଷ୍ଟି କରିଛନ୍ତି ଅନେକ କିମ୍ବଦନ୍ତୀ, କଥା, ଉପକଥା ଓ କାହାଣୀ; ଯଥା - ଶିଳ୍ପୀ ବିଶୁ ମହାରଣାଙ୍କ ପତ୍ନୀ ପଦ୍ମାବତୀଙ୍କର ସାଥୀ-ପଡ଼ୋଶିନୀ ଇନ୍ଦୁମତୀଙ୍କ ସଂପର୍କ। ଯେତେବେଳେ ବିଶୁ ଚାଲି ଯାଇଥାନ୍ତି କୋଣାର୍କ ମନ୍ଦିର ତୋଳା କାର୍ଯ୍ୟରେ, ପଦ୍ମାବତୀଙ୍କର ଏକ ଶିଶୁ ପୁତ୍ର ଜାତ ହୁଏ : ଯାହାର ନାମ ଧର୍ମ ପଦ; ଇନ୍ଦୁମତୀଙ୍କ ଗର୍ଭରୁ ଜାତହୁଏ କନ୍ୟା ସରସୀ; ବଡ଼ ହେଲେ ଧର୍ମପଦ ଓ ସରସୀର ବିବାହ କରିବାକୁ ଉଭୟ ବାନ୍ଧବୀ ଚିନ୍ତା କରି ମସ୍‌ଗୁଲ ହୁଅନ୍ତି। ବିଶୁ ନିଜ ଅଗଣାର ଏକ କୋଣରେ ମନ୍ଦିର ନିର୍ମାଣ କରି ସ୍ଥାପନ କରିଥାନ୍ତି ଭଗବାନ୍ ବେଣୁଧରଙ୍କ ପ୍ରସ୍ତର ମୂର୍ତ୍ତି। ତାଙ୍କୁଇ ପୂଜାର୍ଚ୍ଚନା କରି ଉଭୟ ବାନ୍ଧବୀଙ୍କ ସମୟ ବିତେ - ପ୍ରଭୁ ବେଣୁଧର ହିଁ ସାହା ଭରସା

ଇତ୍ୟାଦି ଉପକଥା ସବୁ। ଡକ୍ଟର ପାତ୍ରଙ୍କ ଏହି ରଚନାରେ ସବୁଠୁଁ ଉଦ୍‌ବେଗପୂର୍ଣ୍ଣ ଓ ମର୍ମାନ୍ତିକ ଘଟଣା ହେଉଛି ନରସିଂହ ଦେବଙ୍କ ପ୍ରଥମ ପ୍ରେୟସୀ ମାୟାବତୀଙ୍କ ଆତ୍ମହତ୍ୟା ବିବରଣୀ। ପ୍ରେମିକା ମାୟାବତୀଙ୍କ ରାଜା ନରସିଂହଙ୍କୁ ଶେଷ ଚିଠିଟି ଥିଲା ଅତୀବ ମର୍ମାନ୍ତିକ। ତାଙ୍କର ପ୍ରେମ ଥିଲା ନିର୍ମଳ। ଔପନାସିକଙ୍କ ଭାଷାରେ, ପ୍ରେମ ହିଁ ସତ୍ୟ, ଜୀବନ ମିଥ୍ୟା.... ପ୍ରେମରେ ଥାଏ ପୂର୍ଣ୍ଣ ଜୀବନର ସାର୍ଥକତା, ପ୍ରେମରେ ହିଁ ରହିଥାଏ ଅମରତ୍ୱର ଆସ୍ୱାଦ...। ତେବେ ପ୍ରେୟସୀର ଶବ ଚନ୍ଦ୍ରଭାଗା ନଦୀରେ ଭାସି ଯାଉଥିବା ଏକ କାଠ ବାକ୍ସରୁ ଉଦ୍ଧାର କରନ୍ତି ରାଜା ନରସିଂହ ଏବଂ ରାଜକୀୟ ସତ୍କାର ଅନ୍ତେ ମନ୍ଦିର ପ୍ରାଙ୍ଗଣ ଭିତରେ ମାୟାବତୀଙ୍କ ସ୍ମୃତି ପାଇଁ ଏକ ମନ୍ଦିର ତୋଳିବାର ଆଦେଶ ଦିଅନ୍ତି, ଯାହା ଆଜି ଶକ୍ତି ସ୍ୱରୂପିଣୀ ଚଣ୍ଡୀ ମନ୍ଦିର ଭାବେ ଖ୍ୟାତ ଏବଂ ମନ୍ଦିର ନିର୍ମାଣରେ ସହଯୋଗ କରନ୍ତି ରାଣୀ ଅନସୂୟା ଏବଂ ନିଷ୍ଠାର ସହିତ ବାରବର୍ଷ କାଳ ପାଳନ କରନ୍ତି ବ୍ରହ୍ମଚର୍ଯ୍ୟ ବ୍ରତ। ସେହିପରି ଭିଣୋଇ ତଥା ସେନାପତି ପରମାର୍ଦ୍ଦି ଦେବଙ୍କ ଗୌଡ଼ଦେଶ ଯୁଦ୍ଧ ଜୟରେ ଆଘାତ ଜନିତ ମୃତ୍ୟୁ ଓ ଭଉଣୀ ଚନ୍ଦ୍ରିକାର ବୈଧବ୍ୟ ଏବଂ ବଡ଼ ମାଆ ସୋମଳ ଦେବୀଙ୍କ ସମେତ, ମହାଭାରତ ଯୁଦ୍ଧରେ ଅଭିମନ୍ୟୁର ମୃତ୍ୟୁରେ ପାଣ୍ଡବ ଶିବିରରେ ଶୋକଛାୟା ଭଳି ଗଭୀର ଶୋକରେ କେମିତି ଲାଗୁଥିଲା ନରସିଂହ ଓ ସାରା ଉଆସ ବୁଡ଼ି ଯାଇଥିବାର ମାର୍ମିକ ଦୃଶ୍ୟ ଏବଂ ତାଙ୍କର ସ୍ମୃତି ରକ୍ଷା ପାଇଁ ମାତାଙ୍କ ଠାରେ ମନ୍ଦିର ନିର୍ମାଣର ପ୍ରତିଶ୍ରୁତି।

ଏହା ସହିତ ନୀଳ ମହାରଣାର ମନ୍ଦିର ଗାତ୍ରରେ ମୂର୍ତ୍ତିନିର୍ମାଣ କରିବା ସମୟରେ ଅଂଶୁ ଘାତରେ ମୃତ୍ୟୁ। ରୋଗଗ୍ରସ୍ତ ଶିଶୁ ପୁତ୍ରକୁ ଦେଖି ଯିବା ପାଇଁ ତାର ମୂର୍ତ୍ତି ନିର୍ମାଣ ଶେଷ ହୋଇ ପାରିଲା ନାହିଁ। ମହା ନିଦ୍ରାରେ ସେ ଟଳି ପଡ଼ିଲା। ମୁଖ୍ୟ ବିଶୁ ମହାରଣା ସହିତ କମଳ ମହାରଣା, ସୁଦର୍ଶନ ଆଦି ଶିଳ୍ପୀମାନଙ୍କର ମାର୍ମିକ ଜୀବନ ଇତିହାସ ଦେବାକୁ ମଧ୍ୟ ଡକ୍ଟର ଭୁଲି ନାହାନ୍ତି। ଏହିପରି ଅନେକ ଛୋଟ ବଡ଼ ଉପାଖ୍ୟାନରେ ପରିପୂର୍ଣ୍ଣ କାର୍ତ୍ତିକେଶ୍ୱର ବାବୁଙ୍କ 'କଥା କହେ କୋଣାର୍କ'

ଇତିହାସ ପୃଷ୍ଠାରେ ମୁଖ୍ୟ ସ୍ଥପତି ସଦାଶିବ ସମନ୍ତରା ବ୍ୟତୀତ ଅନ୍ୟ ସ୍ଥପତିଙ୍କର ନାମ ଉଲ୍ଲେଖ ନାହିଁ। ତେବେ ଅଧ୍ୟୟନ ଓ ଗବେଷଣା ଦ୍ୱାରା ଡକ୍ଟର ପାତ୍ର କେତେକ ସ୍ଥପତିଙ୍କ ନାମ ଉଲ୍ଲେଖ କରିବାକୁ ସମର୍ଥ ହୋଇଛନ୍ତି। ସେମାନେ ହେଲେ କାର୍ଯ୍ୟକାରୀ

ସ୍ଥପତି ଗଦାଧର ମହାପାତ୍ର, ଶିଳ୍ପ ଶାସ୍ତ୍ର ଉପଦେଷ୍ଟା ବନ୍ଧୁ ରଥ, ସ୍ଥପତି ବିଦ୍ୟାଧର ମହାପାତ୍ର, ପଥର ଖୋଦକ ଅଙ୍ଗୁଠି ମହାପାତ୍ର। ପଲସ୍ତରା ମିସ୍ତ୍ରୀ ବିନ୍ଦୁ ମହାରଣା, ମୁଖ୍ୟ ଲୌହ ଢ଼ଳାଇ ମିସ୍ତ୍ରୀ ପୁରିଆ ମହାପାତ୍ର, ମୁଖ୍ର ଭାଡ଼ି ବନ୍ଧାଳି ଶିଳ୍ପୀ ରାଜୀବ ମହାରଣା, ମୁଖ୍ୟ ଶ୍ରମିକ ଯୋଗାଣକାରୀ ବିଶ୍ୱନାଥ ପ୍ରଧାନ, ମୁଖ୍ୟ ହିସାବ ରକ୍ଷକ ବିଦ୍ୟାଧର ପଟ୍ଟନାୟକ ଇତ୍ୟାଦି। ଇତିହାସର ଏକ ଅଭାବବୋଧକୁ କେତେକାଂଶରେ ଦୂରକରି ପାରିଛନ୍ତି ଔପନ୍ୟାସିକ-ଗବେଷକ ଡକ୍ଟର ପାତ୍ର।

ଧରମା ବା ଧର୍ମପଦର କାହାଣୀ ବା ଉପାଖ୍ୟାନ ବ୍ୟତୀତ କୋଣାର୍କ ରଚନା ଅସଂପୂର୍ଣ୍ଣ। ଶିଳ୍ପୀ ଶିରୋମଣୀ ବିଶୁ ମହାରଣାଙ୍କ ପୁତ୍ର ଧରମା ବା ଧର୍ମପଦ। ସେ ମାତୃଗର୍ଭରେ ଥିଲାବେଳେ ବିଶୁ ମନ୍ଦିର ନିର୍ମାଣ କରିବାକୁ ଗୃହତ୍ୟାଗ କରିଥିଲେ। ଧର୍ମପଦ ବାରବର୍ଷରେ ପଦାର୍ପଣ କଲାପରେ ଘରର ବରକୋଳି ଓ ମାତାର ହସ୍ତନିର୍ମିତ ପୋଡ଼ପିଠା ନେଇ ପିତାଙ୍କୁ ଦେଖିବାକୁ ଗଲା। ପିତାଙ୍କ ସହିତ ମିଳନ ପରେ କ'ଣ ସେ ଦେଖିଲା? ଶିଳ୍ପୀମାନେ ମନ୍ଦିରର ଚୂଳ ମାରିବାକୁ ଅସମର୍ଥ। ଘର ପୋଥିରୁ ଧରମା ପଥର ଶିଳ୍ପ ଜ୍ଞାନ ଆହରଣ କରିଥିଲା। ଚୂଡ଼ାରେ ପଥର ବସା ତ୍ରୁଟି ଧରି ପାରିଥିଲା ସେ। ନିର୍ଦ୍ଧାରଣ କରିଥିବା ଭାରକେନ୍ଦ୍ରର ବିନ୍ଦୁଟିକୁ ମାପଚୁପ କରି ଚୁମ୍ବକୀୟ ଚୂଡ଼ାର କେନ୍ଦ୍ରବିନ୍ଦୁରେ ସ୍ଥାପନ କରିବାକୁ ନିଷ୍ପତ୍ତି ନେଲା ସେ। ତଳକୁ ଖସି ଆସିଥିବା କଳସ ସହ ଚୂଡ଼ାକୁ ପୁଣି ଉପରକୁ ଉଠାଗଲା। ଏଥର ଲାଗିଗଲା କଳସ ଉପରେ ମନ୍ଦିରର ଚୂଡ଼ା। ଶହ ଶହ ଶିଳ୍ପୀ ତଳୁ ଅନାଇ ଦେଖୁଥିଲେ ବାରବର୍ଷର ବାଳୁତ କେମିତି ହାତରେ ନିହାଣ ମୁଗୁର ଧରି ପଥର ଦେହରେ ଭାରକେନ୍ଦ୍ର ବିନ୍ଦୁ ନିର୍ଣ୍ଣୟ କରୁଛି। ଆଜି ମନ୍ଦିର ଚୂଡ଼ା ମାରିବାକୁ ବାରଶହ ବଢ଼େଇ ଅସମର୍ଥ ହୋଇଥିଲେ କାଲି ହୁଏତ ସେମାନଙ୍କ ମୁଣ୍ଡ କାଟ ହୋଇଥାନ୍ତା - ଏହା ଥିଲା ରାଜାନୁଦେଶ। ଏଥର କାମଟି ସଂପୂର୍ଣ୍ଣ ହୋଇଛି। ଜୟ ଜଗନ୍ନାଥ ଧ୍ୱନିରେ କମ୍ପି ଉଠିଲା ମନ୍ଦିର ଚତ୍ୱର। ଧନ୍ୟ ବିଶୁ ମହାରଣା, ଧନ୍ୟ ଏଭଳି ପୁତ୍ର ଜନ୍ମ ଦେଇଛୁ। ଆଜି ସେ ବାରଶହ ବଢ଼େଇଙ୍କ ପ୍ରାଣ ରକ୍ଷା କଲା! କିନ୍ତୁ ଶିଳ୍ପୀମାନଙ୍କ ଏ ଆନନ୍ଦ ଥିଲା କ୍ଷଣିକ। ବାରଶହ ବଢ଼େଇଙ୍କ ମୁଣ୍ଡକାଟ ଭଳି ନିଷ୍ଠୁର ରାଜାଦେଶରୁ ମୁକ୍ତି ନାହିଁ। ଯେତେବେଳେ ରାଜା ନରସିଂହ ଦେବ ଜାଣିବେ ଯେ ବାରଶହ ଶିଳ୍ପୀ ଦେଉଳର ଚୂଳ ମାରିବାକୁ ଅସମର୍ଥ ଥିଲେ, ଚୂଳ ମାରିଛି ବିଶୁ ମହାରଣାର ବାରବର୍ଷର ପୁତ୍ର ଧର୍ମପଦ-ସେହିଁ ଶ୍ରେଷ୍ଠ ଶିରପାର ଅଧିକାରୀ! କାଲି କଣ

ହେବ ବାରଶହ ବଢ଼େଇଙ୍କ ଭବିଷ୍ୟତ ! ସେହି ମୁହୂର୍ତ୍ତରେ ବାରଶହ ବଢ଼େଇ ପ୍ରାଣରକ୍ଷା ପାଇଁ ଚିର ବିଦାୟର ନିଷ୍ପତ୍ତି ନେଇଥିଲା! ଧର୍ମପଦ - ନ ରହୁ ବାଉଁଶ, ନବାଜୁ ବଇଁଶୀର ଉତ୍ତର ଦେଇ। ଧର୍ମପଦ କାହିଁ? ରାତ୍ର ଶେଷ ହେବା ପୂର୍ବରୁ ସେ ନିଜକୁ ନିକ୍ଷିପ୍ତ କରି ଦେଇଛି ସମୁଦ୍ରର ଅତଳ ଗର୍ଭ ଭିତରକୁ, ଯେଉଁ ଗର୍ଭରୁ କେବେ କେହି ଫେରନ୍ତି ନାହିଁ, ଫେରିଥାଏ ମଣିଷର ଶବ। ଧର୍ମପଦ ପାଲଟି ଯାଇଛି ଏ ଜାତିର ଦଧିଚୀ। ପରିଶିଷ୍ଟ ତିନୋଟି ପରିଚ୍ଛେଦ ପୁତ୍ରହରା ବିଶୁ ମହାରଣାର ବିଷାଦ ବିଳାପରେ ପରିପୂର୍ଣ୍ଣ। ମୁଁ ଏହାକୁ ତିନିଥର ପାଠ କରିଛି, କିନ୍ତୁ ପ୍ରତିଥର ମୋର ଲୋତକାପ୍ଳୁତ ନୟନ ପଠନର ଅଗ୍ରଗତିରେ ବାଧକ ହୋଇଛି। ଉପନ୍ୟାସଟିକୁ ଯେତେଥର ପାଠକଲେ ମଧ୍ୟ ଚକ୍ଷୁ ଲୋତକ ବିନ୍ଦୁରେ ଜର୍ଜ୍ଜରିତ ହେବା ସୁନିଶ୍ଚିତ। ସର୍ବୋପରି ଔପନ୍ୟାସିକଙ୍କ ବର୍ଣ୍ଣନା ଶୈଳୀ, ନାଟକୀୟ ଉପସ୍ଥାପନା, ଘଟଣା ପ୍ରବାହ, ପ୍ରକୃତି ବର୍ଣ୍ଣନା ଓ ଭାଷା ବିନ୍ୟାଶ ଉପନ୍ୟାସକୁ କରି ପାରିଛି ଏକ ସଫଳ ରଚନା, ହୁଏତ ଡକ୍ଟର ପାତ୍ରଙ୍କ ଏହା ସର୍ବୋତ୍କୃଷ୍ଟ, ସର୍ବଶ୍ରେଷ୍ଠ ରଚନା - ଦ୍ୱିମତ ନାହିଁ। ପୁସ୍ତକଟିର ଛତ୍ରେ ଛତ୍ରେ ଔପନ୍ୟାସିକ - ନାଟ୍ୟକାର ଡକ୍ଟର କାର୍ତ୍ତିକେଶ୍ୱର ପାତ୍ର ପ୍ରମାଣ କରିଛନ୍ତି - 'ସାତଥର ଯିବ ଗଙ୍ଗା, ଥରେ ଯାଇଥିବ ଚନ୍ଦ୍ରଭାଗା, ମୁହଁ ପଡ଼ିଯିବ ରଙ୍ଗା।" ସମୁଦ୍ର ତୀର ଚନ୍ଦ୍ରଭାଗା ତଟରେ ଆଜି ମଧ୍ୟ କଥା କହିବାକୁ ସଦମ୍ଭେ, ସଦର୍ପେ ଛିଡ଼ା ହୋଇଅଛି ରଥାକୃତିର ମନ୍ଦିର କୋଣାର୍କ, ଯାହାର ଦୁଇ ପାର୍ଶ୍ୱରେ ବାର ଗୋଟି କରି କାରୁକାର୍ଯ୍ୟ ପୂର୍ଣ୍ଣ ଚକ ନିର୍ମିତ ହୋଇଛି ସୂର୍ଯ୍ୟଙ୍କ ରଥ ଓ ସମ୍ମୁଖରେ ସାତୋଟି ସବଳ ଅଶ୍ୱ, ଆଗ ଦୁଇ ଗୋଡ଼ରେ କଦମ ତୋଳି ସତେ ଅବା ବୋହି ନେଉଛନ୍ତି ରଥଟିକୁ; ଯାହାକି ଆକାଶ ମାର୍ଗରେ ଗତିଶୀଳ ସୂର୍ଯ୍ୟଙ୍କ ଭଳି ଭ୍ରମ ସୃଷ୍ଟି କରୁଛି। ସଂପ୍ରତି କାରୁକଳା ଓ ଚାରୁକଳାରେ ପରିପୂର୍ଣ୍ଣ କୋଣାର୍କ ଏକ ବିସ୍ମୟ। ଯାହା କବି, ଭାବୁକ, ଚିନ୍ତକ, ଲେଖକକୁ ଅଜାଡ଼ି ଦେଇଛି ଅପରିମିତ କଥାବସ୍ତୁ, ଯାହାକୁ ପାଥେୟ କରି ଲେଖାଯାଇ ପାରିବ ଅନନ୍ତବ୍ୟାପି ରଚନା - କାର୍ତ୍ତିକେଶ୍ୱର ବାବୁଙ୍କ 'କଥା କହେ କୋଣାର୍କ' ଅସରନ୍ତି କଥା କହୁଥିବ ଏବଂ ଏହିପରି ଲିପିବଦ୍ଧ ହୋଇ ରହୁଥିବ ସେମାନଙ୍କ ରଚନା କାଳ କାଳକୁ।

ଉପସଂହାରରୁ ଜଣାପଡ଼େ, କାର୍ତ୍ତିକେଶ୍ୱର ବାବୁ ହୁଏତ ଜାତୀୟ ଓ ଆନ୍ତର୍ଜାତିକ ସ୍ତରରେ ଟି.ଭି. ସରିଆଲ ବା ଇଲେକ୍‌ଟ୍ରୋନିକ ଗଣ ମାଧ୍ୟମରେ ବିଶ୍ୱର ବିସ୍ମୟ କୋଣାର୍କର ଇତିବୃତ୍ତକୁ ଉପସ୍ଥାପିତ ଓ ପ୍ରଚାରିତ କରିବାକୁ ଚେଷ୍ଟିତ ଥିଲେ। କିନ୍ତୁ କର୍ତ୍ତୃପକ୍ଷଙ୍କ ଆନ୍ତରିକତା

ଅଭାବରୁ ତାହା ଫଳବତୀ ହୋଇ ପାରିଲା ନାହିଁ। ଆଗାମୀ ପୀଢ଼ି ପାଇଁ ହୁଏତ ଏକ ଆହ୍ୱାନ ଭାବେ ରହିଗଲା। ଆଶା, ଆନ୍ତର୍ଜାତିକ କ୍ଷେତ୍ରରେ କାର୍ତ୍ତିକେଶ୍ୱର ବାବୁଙ୍କ ଆକାଂକ୍ଷା ଦିନେ ନା ଦିନେ ଫଳବତୀ ହେବ - ତାଙ୍କ ସ୍ୱପ୍ନ, ନିଷ୍ଠା ଓ ପ୍ରଚେଷ୍ଟା ସାକାର ହେବ। ଉପସଂହାର ପରେ ମଧ୍ୟ ପାଠକଙ୍କ ପାଇଁ ମନ୍ଦିରର ଅବକ୍ଷୟ ଓ ତାହାର ସଂରକ୍ଷଣର ଇତିହାସ ଦେବାକୁ ସେ ଭୁଲି ନାହାନ୍ତି।

ଉପନ୍ୟାସଟିର ବହୁଳ ପ୍ରସାର ଓ ପାଠକୀୟ ଆଦୃତି ଆଶା କରୁଛି। ବନ୍ଦେ ଉତ୍କଳ ଜନନୀ।

ରାଧାମୋହନ ମହାପାତ୍ର,
ପ୍ରତିଭାନୀ, ବୁଦ୍ଧେଶ୍ୱରୀ, ଭୁବନେଶ୍ୱର

# କୋଣାର୍କ - କଳାଭାସ୍କର୍ଯ୍ୟ ଓ ଜୀବନର ଚାରୁ ଆଲେଖ୍ୟ

କୋଣାର୍କ ପୃଥିବୀର ଏକ ଅମୂଲ୍ୟ ସମ୍ପଦ। ଯାହା ଉତ୍କଳୀୟ ଶିଳ୍ପୀମାନଙ୍କର କଳା-ଚାତୁର୍ଯ୍ୟର ଏକ ନମୁନା ଓ ଶ୍ରେଷ୍ଠ ସ୍ଥାପତ୍ୟ। କୋଣାର୍କର କଳାକୃତୀ ବିଶ୍ୱ ଦରବାରରେ ଶ୍ରେଷ୍ଠ କଳାକୃତିର ମାନ୍ୟତା ପାଇ ଏହି ଉଦାହରଣ ସୃଷ୍ଟି କରିଛି। ଯେଉଁଥିପାଇଁ ଆଜି ବି ଉତ୍କଳକୁ ପୃଥିବୀର କଳାପ୍ରେମୀମାନେ ଧାଇଁ ଆସନ୍ତି। କୋଣାର୍କର ଏହି କଳାକୃତୀ ମଧ୍ୟରେ ମନୁଷ୍ୟ ଜୀବନର ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ସମସ୍ତ ଶିକ୍ଷା ସଂସ୍କୃତି ଭରି ରହିଛି।

କୋଣାର୍କ ଗାତ୍ରର ମୂର୍ତ୍ତିଗୁଡ଼ିକ ଗୀତ ଗାଏ, ବାଦ୍ୟ ବଜାଏ, ନୃତ୍ୟକରେ, କଥା କହେ ଓ ଜୀବନର ସନ୍ଦେଶ ବିତରଣ କରେ।

ଡକ୍ଟର କାର୍ତ୍ତିକେଶ୍ୱର ପାତ୍ରଙ୍କ ରଚିତ **'କଥା କହେ କୋଣାର୍କ'** ଗବେଷଣାତ୍ମକ ଉପନ୍ୟାସଟି ଭବିଷ୍ୟତ ବଂଶଧରଙ୍କ ପାଇଁ କେବଳ ଏକ ପ୍ରେରଣାର ଉତ୍ସ ନୁହେଁ, ତାହା ଉତ୍ସାହ, ଉଦ୍ଦୀପନାର ଏକ ଅଫୁରନ୍ତ ଗନ୍ତାଘର।

ଆଜିର ମଣିଷ ସମାଜ ଆଶ୍ଚର୍ଯ୍ୟ ହୁଏ ମହାରାଜା ଲାଙ୍ଗୁଳା ନରସିଂହ ଦେବଙ୍କର ଅସୀମ ବୀରତ୍ୱ, ଜାତୀୟ ଚେତନା ଓ ମାନବ ବାଦ କଥା ଭାବି। ସର୍ବୋପରି ଉତ୍କଳୀୟ ଶିଳ୍ପୀ ଓ ଶ୍ରମିକମାନଙ୍କର ଆତ୍ମ-ତ୍ୟାଗର ଇତିହାସ ଏହି ଉପନ୍ୟାସଟିକୁ ସମୃଦ୍ଧ ଓ ସମୁଜ୍ଜ୍ୱଳ କରିଛି।

**ସ୍ଥପତି - ସୁଦର୍ଶନ ସାହୁ**

# କଥା କହେ କୋଣାର୍କ

ମୂକ ବି କଥା କହେ।

ତୁଣ୍ଡରେ ଭାଷା ନ ଥିଲେ ବି ଭାବ ଭଙ୍ଗୀରେ ଭାଷା ଫୁଟି ଉଠେ। ବୁଝିବାକୁ ବାକି ରହେ ନାହିଁ ତା ଅନ୍ତରର କଥା। କୋଣାର୍କ ପଥରର ଏମିତି ଏକ ମୌନ ମନ୍ଦିର, ଯାହାକୁ ଦେଖି ଅନୁଭବ କରି ହୁଏ, ତା ଦେହରେ ଥିବା ପଥରର ମୂର୍ତ୍ତିଗୁଡ଼ିକ କଥା କହୁଛି ବୋଲି।

ସେ କଥା ଚଳ ଚଞ୍ଚଳ ଏକ ଜୀବନ୍ତ ସମାଜର କଥା। ସେହି କଥା ଭିତରେ କେତେ ଜୀବନର ଛନ୍ଦ ଛନ୍ଦାୟିତ। ସମୟ ସ୍ରୋତ ତାକୁ ଭସାଇ ନେଇ ପାରି ନାହିଁ। ଯେମିତି ସେ ସବୁ ଆବଦ୍ଧ ହୋଇ ରହି ଯାଇଛି - ଇତିହାସର କଥା କହିବା ପାଇଁ। ଜୀବନର ସୁଖ ଦୁଃଖର ଇତିହାସ କହିବା ପାଇଁ।

ଏବେ ବି କୋଣାର୍କ ଗାତ୍ରର ପଥର ଦେହରେ ଖୋଦିତ ମୂର୍ତ୍ତିଗୁଡ଼ିକ ଜୀବନ୍ତ। ଫୁଲର ଫସଲ ପରି ସେମାନେ ହସୁଛନ୍ତି, ବାଦ୍ୟ ବାଦନ କରୁଛନ୍ତି, ତାଳେ ତାଳେ ନୃତ୍ୟ କରୁଛନ୍ତି। ଗାଉଛନ୍ତି ଜୀବନ ଯାତ୍ରାର ଜୟଗାନ।

ଯୁଦ୍ଧ, ବିଗ୍ରହ, ବାଣିଜ୍ୟ ବିପଣୀ, ଦେବାର୍ଚ୍ଚନା, ଦାନ, ଧ୍ୟାନ, ଯଜ୍ଞ ଠାରୁ ଆରମ୍ଭ କରି ସମାଜର ସକଳ ଶ୍ରେଣୀର ମାନବର ଶ୍ରମର ସୁଖ ସମ୍ଭାର କଥା କେବଳ ଶୁଣିବାକୁ ମିଳେ ତାହା ନୁହେଁ; ମିଳେ, ମାନବ ସହିତ ମିଶିଥିବା ପ୍ରାଣୀ ଜଗତର କଥା।

ତାହାରି ଭିତରେ ଫୁଟି ଉଠିଛି - ରତିକ୍ରୀଡ଼ା ଠାରୁ ଆରମ୍ଭ କରି ହସ୍ତୀମାନଙ୍କର କ୍ରୀଡ଼ା ପର୍ଯ୍ୟନ୍ତ - ସମସ୍ତ ପ୍ରକାର ଜୀବନ କ୍ରୀଡ଼ା।

କବି, ଭାବୁକ, ଗବେଷକ, ଯିଏ ଥରେ କୋଣାର୍କ ସଂଦର୍ଶନ କରିଛନ୍ତି, କିଛି ନା କିଛି ତା କଥା ଶୁଣିଛନ୍ତି। ସେ କଥା ସେ ପ୍ରକାଶ କରିଛନ୍ତି -

● କଥା କହେ କୋଣାର୍କ

ମହାନ୍ କବି ସଚ୍ଚିରାଉତ ଗାଇଛନ୍ତି —

"ଏଠି ହସେ ଖାଲି ଫୁଲର ଫସଲ, ସପନର ନୀଳ ଢେଉ,
ହୀରାର ସୂର୍ଯ୍ୟ ପ୍ରଭାତି ପ୍ରହରେ ପ୍ରଣାମ ତା ନେଉ ନେଉ,
କହିଗଲା ଧରା କାନେ
ଜୀବନର ଯେତେ ଦୁଃଖ ଅପମାନ, କିଏ ଗାଇ ନାହିଁ ଗାନେ।"

ଜୀବନର କେତେ ସୁଖ ଦୁଃଖ, ହସ କାନ୍ଦର କଥା କହୁଛି କୋଣାର୍କ।



# ମୁଖବନ୍ଧର ଆକାଶ

ଆକାଶ ଯେମିତି ଅନନ୍ତ। ବିଭିନ୍ନ ବର୍ଣ୍ଣାଳି ଭିତରେ ଯାହାର ନୀଳିମା ହେଉଛି ଏକ ମାତ୍ର ପରିପ୍ରକାଶ। ସେହିପରି ସାହିତ୍ୟ ହେଉଛି କଳ୍ପନାର ବିଳାସ। ତାକୁ ଜରିପ କରିବା ସମ୍ଭବ ନୁହେଁ। ଆକାଶ ଭଳି ସାହିତ୍ୟ ସୁବିସ୍ତୃତ। କାରଣ ମନରୁ ସାହିତ୍ୟ ସୃଷ୍ଟି। ଆଉ ଏହି ମନ ହେଉଛି ବିଶ୍ୱର ବେଗବାନ। ମନର ଆକାଶରେ କେତେ ବର୍ଣ୍ଣାଳିର ଆଭା ଉକଟି ଉଠେ। ସେ ଆଭାକୁ କବି, ଲେଖକ କଲମ ମୁନିରେ ଫୁଟାଇ ପାରନ୍ତି। ଆଉ ତାହା ସ୍ଥିର ହୋଇ ଶୋଭା ପାଏ - ଆନନ୍ଦ ବର୍ଦ୍ଧନ କରେ। ସମସ୍ତଙ୍କୁ ସୁଖ ପ୍ରଦାନ କରେ। ତାହାହିଁ ସାହିତ୍ୟ। ତାହାହିଁ ଇତିହାସର ଫସଲ।

ଇତିହାସ ହେଉଛି ମୂଳ-ଯେଉଁଥିରୁ କଳା, ସାହିତ୍ୟ ଓ ସଂସ୍କୃତିର ସୃଷ୍ଟି।

ଅତୀତ ହିଁ ଇତିହାସ। ଆଜିର ଘଟଣା କାଲିର ଇତିହାସ। ଉତ୍ଥାନ ପତନର ପ୍ରବାହ ଭିତରେ ମାନବ ସମାଜ ଆବିଷ୍କାର କରିଚାଲିଛି ସତ୍ୟ। ଏହି ସତ୍ୟହିଁ ସାହିତ୍ୟ ? ଯାହା କଳା ସଂସ୍କୃତିର ବାର୍ତ୍ତାବହ।

ଏକଦା ଆମ ଉନ୍ନତ କଳାର ରାଜ୍ୟ ଉତ୍କଳ ସମସ୍ତ ବିଶ୍ୱକୁ କରିଥିଲା ଚକିତ। ବିଶ୍ୱବାସୀଙ୍କ ଆଗରେ ସପ୍ତାଶ୍ଚର୍ଯ୍ୟ ଭିତରେ ସ୍ଥାନ ପାଇଥିଲା ତାର କୋଣାର୍କ ମନ୍ଦିର। ଯାହାର ଆଜି ବି ଭଗ୍ନାବଶେଷ ବିଶ୍ୱବାସୀଙ୍କୁ ଆକର୍ଷଣ କରେ - ଚକିତ କରେ। ଆମର ମହାନ୍ ସାହିତ୍ୟିକ, ଗବେଷକବୃନ୍ଦ ତାଙ୍କର ସାହିତ୍ୟ ଓ ଗବେଷଣା ଜରିଆରେ ଏହି ଅତ୍ୟାଶ୍ଚର୍ଯ୍ୟ ସୂର୍ଯ୍ୟ ମନ୍ଦିର କୋଣାର୍କର ନିର୍ମାଣର ଇତିହାସ ଜନ ମାନସରେ ତୋଳି ଧରିବାର ପ୍ରୟାସ ଜାରି ରଖିଛନ୍ତି।

ଉତ୍କଳମଣିଙ୍କଠାରୁ ଆରମ୍ଭ କରି ପ୍ରତିଭାରାୟଙ୍କ ପର୍ଯ୍ୟନ୍ତ କେତେ କବି, କେତେ ନାଟ୍ୟକାର ଓ ଔପନ୍ୟାସିକ ଯଶସ୍ୱୀ ସାହିତ୍ୟିକ ବୃନ୍ଦ, ବିଶେଷ କରି କୃପାସିନ୍ଧୁ ମିଶ୍ର, ବଳରାମ ମିଶ୍ର ଏବଂ କରୁଣା ସାଗର ବେହେରାଙ୍କ ଭଳି ମହାନ୍ ଐତିହାସିକ ଓ ଗବେଷକ ବୃନ୍ଦ କୋଣାର୍କ ଓ ତାର ଇତିହାସକୁ ଜନ ମାନସରେ ତୋଳି ଧରିବାର ପ୍ରୟାସ କରିଛନ୍ତି।

ସେହି କୃତୀ ସନ୍ତାନ ବୃନ୍ଦଙ୍କର ପଦାଙ୍କ ଅନୁସରଣ କରି ମୁଁ ଲେଖିଛି 'କଥା କହେ କୋଣାର୍କ' ଉପନ୍ୟାସଟିଏ। ଇଂରେଜ ନାବିକମାନେ ଯେଉଁ କୋଣାର୍କକୁ ବିଶ୍ୱରେ ବିଦିତ କରାଇଥିଲେ କୃଷ୍ଣ ପାଗୋଡ଼ା ବୋଲି; ଯେଉଁ କୋଣାର୍କର ଅବକ୍ଷୟ ପାଇଁ ବ୍ୟଥିତ ହୋଇ ତାର ସଂରକ୍ଷଣ ପାଇଁ ଆବେଦନ କରିଥିଲେ, ଭାରତ ସରକାରଙ୍କ ପାଖରେ ବିଶ୍ୱର ନାବିକ ସଂଘ, ସେହିମାନଙ୍କ ଆବେଗ୍‌କୁ ସମ୍ମାନ ଦେଇ କୋଣାର୍କର ନିର୍ମାଣ କାହାଣୀକୁ ରୂପ ଦେବାକୁ ଚେଷ୍ଟା କରିଛି। ଏହା ଅତୀତ ଉତ୍କଳର କଳା ଭାସ୍କର୍ଯ୍ୟର ଗୌରବମୟ ଇତିହାସର ଆଲେଖ୍ୟ।

ଯେତେବେଳେ ତ୍ରୟୋଦଶ ଶତାବ୍ଦୀରେ ବିଜ୍ଞାନ ଓ କାରିଗରୀର ଆଜି ଦିନ ପରି ଏତେ ବିକାଶ ସାଧିତ ହୋଇନଥିଲା, କିଭଳି ଭାବରେ ଉତ୍କଳର ଭାସ୍କରମାନେ କାରୁକଳା ଶୋଭିତ କୋଣାର୍କ ଭଳି ଏଡ଼େ ବିଶାଳ ମନ୍ଦିରଟିଏ ନିର୍ମାଣ କରିଥିଲେ, କିଭଳି ଭାବରେ ଶହ ଶହ ମହଣ ଓଜନର ବିରାଟ ପଥର ଖଣ୍ଡ ମାନ ଦୁଇ ଶହ ତିରିଶ ଫୁଟରୁ ଊର୍ଦ୍ଧ୍ୱ ମନ୍ଦିର ଚୂଳକୁ ଟେକି ପାରିଥିଲେ? କେମିତି ପଚାଶଫୁଟ ଲମ୍ବ ଓ ଚାରିଫୁଟ ମୋଟେଇର ଲୌହ ଶଳାକାମାନ ତିଆରି କରି ମନ୍ଦିର ନିର୍ମାଣରେ ଲଗାଇଥିଲେ? ଯେଉଁ ଲୌହ ଶଳାକା ଗୁଡ଼ିକରେ ଶହଶହ ବର୍ଷ ଧରି କଳଙ୍କି ଟିକିଏ ବି ଲାଗିନାହିଁ।

ବିଶ୍ୱବାସୀ ବିଶେଷ ବିସ୍ମିତ ଏହି ସୂର୍ଯ୍ୟମନ୍ଦିରର ଆକୃତି ଓ ତାର କାରୁକଳା ସଂଦର୍ଶନରେ। ଯେତେବେଳେ ଏହି ମନ୍ଦିର ନିର୍ମାଣ କରାଗଲା, ସେତେବେଳେ ଏହାର ସନ୍ନିକଟରେ ଥିଲା ଚେଲିତାଳ ବନ୍ଦର। ଯାହାକୁ ଭୂଚିତ୍ରରେ ମହାନ୍ ପରିବ୍ରାଜକ ଟଲେମୀ ଉଲ୍ଲେଖ କରିଛନ୍ତି କୋନାଗର ବୋଲି ଏବଂ ମହାନ୍ ଐତିହାସିକ ଜେରିନି ସେହି କଥାକୁ ପୁନରୁଦ୍ଧାର କରିଛନ୍ତି। ସେ ବହିର ଟେବ୍‌ଲ ନମ୍ବର ୬ରେ ସେ ଉଲ୍ଲେଖ କରିଛନ୍ତି - ଓଡ଼ିଶାର ବିଶିଷ୍ଟ ୬ଟି ବନ୍ଦର କଥା। ୧. ଏଫିଟାରିଆନ, ୨. କୋନାଗର ୩. କଟିକର୍ଦ୍ଦମ, ୪. ମଣ୍ଡା, ୫. ପାଲୁର, ୬. ତାମ୍ରଲିପି। ଚନ୍ଦ୍ରଭାଗା ନଦୀର ମୁହାଣର ଏହି ବନ୍ଦର ସନ୍ନିକଟରେ ଥିଲା ମହାନଗର ଦନ୍ତପୁର। ତାକୁ ମଧ୍ୟ ଉଲ୍ଲେଖ କରିବାକୁ ଭୁଲି ନାହାନ୍ତି। ବ୍ରିଟିଶ ନାବିକ ବୃନ୍ଦ ବାଣିଜ୍ୟ କରିବାକୁ ଆସି ଏହି ବିଶ୍ୱ ବିଖ୍ୟାତ କୋଣାର୍କ ମନ୍ଦିରକୁ 'କୃଷ୍ଣ ପାଗୋଡ଼ା' ବୋଲି ଆଖ୍ୟା ଦେଇଥିଲେ। ଏ ଦିଗରେ ମାଡ୍ରାସ ପ୍ରେସିଡେନ୍‌ସିର ଗଭର୍ଣ୍ଣର ଷ୍ଟ୍ରେନଶାମ (Streynsham) ହେଉଛନ୍ତି ଅନ୍ୟତମ ବ୍ୟକ୍ତି। ସେ ମନ୍ଦିର ପରିଦର୍ଶନ କରି ଅତ୍ୟନ୍ତ ମୁଗ୍ଧ ହୋଇ ତାର ନାମ ଦେଇଥିଲେ Black Pagoda (କୃଷ୍ଣ ପାଗୋଡ଼ା)। ପରବର୍ତ୍ତୀ କାଳରେ ଅଷ୍ଟାଦଶ ଶତାବ୍ଦୀରେ ବିଶ୍ୱ ନାବିକ ସଂଗଠନ ଭାରତର ବଡ଼ଲାଟଙ୍କୁ ନିବେଦନ କରିଥିଲେ,

ଏହି ଭଗ୍ନ ମନ୍ଦିରକୁ ସୁରକ୍ଷା ଦେବାପାଇଁ। ଯେତେବେଳେ ଏହି ମନ୍ଦିରର ତିନୋଟି ଦ୍ୱାର ଦେଶକୁ ଭାଙ୍ଗି ସେଗୁଡ଼ିକର ଦେହରେ ଥିବା କାରୁକାର୍ଯ୍ୟ ଖଚିତ ପଥର ଖଣ୍ଡକୁ ଖୋର୍ଦ୍ଧାର ରାଜା ପୁରୀକୁ ସ୍ଥାନାନ୍ତରିତ କରୁଥିଲେ; ସେମାନେ ତାହା ସହ୍ୟ କରିପାରି ନଥିଲେ। ଆଜି ପୁରୀର ବିଶ୍ୱବିଖ୍ୟାତ ଜଗନ୍ନାଥଙ୍କ ବଡ଼ ଦେଉଳର ସିଂହଦ୍ୱାର ସମ୍ମୁଖରେ ଯେଉଁ ଅରୁଣ ସ୍ତମ୍ଭ ଦଣ୍ଡାୟମାନ, ତାହା କୋଣାର୍କ ମନ୍ଦିର ସମ୍ମୁଖରୁ ଏଠାକୁ ସ୍ଥାନାନ୍ତରିତ ହୋଇଛି। ମରହଟ୍ଟା ରାଜତ୍ୱ ସମୟରେ ଜନୈକ ମରହଟ୍ଟା ସାଧୁ ବ୍ରହ୍ମଚାରୀ ଗୁରୁ ୧୭୭୯ରେ କୋଣାର୍କ ଦର୍ଶନରେ ଆସିଥିଲେ। ସେହି ହିଁ ଅରୁଣସ୍ତମ୍ଭକୁ ନେଇ ସେଠାରେ ପ୍ରତିଷ୍ଠା କରିଥିଲେ। ତାହା ଥିଲା କୋଣାର୍କ କୀର୍ତ୍ତିର ଅରୁଣ ସ୍ତମ୍ଭ / ଏବେ ବି କୋଣାର୍କ ମନ୍ଦିରର ଭିତର ଓ ବାହାରର କେତେ ସୁନ୍ଦର କାରୁକାର୍ଯ୍ୟ ମଣ୍ଡିତ ମୂର୍ତ୍ତି ଇଂଲଣ୍ଡର ସଂଗ୍ରହାଳୟରେ, କଲିକତା ଓ ଦୀଲ୍ଲୀ ସଂଗ୍ରହାଳୟ ମାନଙ୍କରେ ସ୍ଥାନିତ ହୋଇଛି।

ନବଗ୍ରହ ମୂର୍ତ୍ତି ରହିଥିବା ବିରାଟ ପଥର ଖଣ୍ଡକୁ କଲିକତା ସଂଗ୍ରହାଳୟକୁ ନେବା ପାଇଁ ଇଂରେଜ ଶାସକମାନେ ଚେଷ୍ଟା କରି ମଧ୍ୟ ସଫଳ ହୋଇପାରି ନାହାନ୍ତି। ଚେଷ୍ଟା କରିଛନ୍ତି ଏହି ପଥରକୁ ଦୁଇଖଣ୍ଡ କରି ସ୍ୱତନ୍ତ୍ର ଟ୍ରକରେ ସମୁଦ୍ର କୂଳକୁ ବୋହି ନେବା ପାଇଁ। ଜାହାଜରେ କଲିକତା ନେବାକୁ । ପାରିନାହାନ୍ତି ସ୍ଥାନାନ୍ତରିତ କରି ।

ଆଜି ବି ଯେଉଁ ଭଗ୍ନାବଶେଷ ଆମ ସମକ୍ଷରେ ରହିଛି, ସେଦିନ ମଣିଷର ଲୋଭିଲା ହସ୍ତ ତାକୁ ବି ଲୋପ କରିବାକୁ ଚେଷ୍ଟା କରିଥିଲେ। ବୋଧହୁଏ କାଳ ସହିତ ପ୍ରତିଯୋଗିତା କରୁଥିଲେ ସେମାନେ, ଆହୁରି ଧ୍ୱସ୍ତ ବିଧ୍ୱସ୍ତ କରିବାକୁ। ମାତ୍ର ସେ ଦିନର ବଡ଼ଲାଟଙ୍କ ନିର୍ଦ୍ଦେଶରେ ଆଉ ସମ୍ଭବ ହୋଇ ପାରିନାହିଁ।

ସେହି ମଣିଷ ପୁଣି କାଳଜୟୀ ଏହି ମନ୍ଦିରର ନିର୍ମାଣ ସଂପର୍କରେ ଗବେଷଣା କରି ଥୋଇ ଦେଇ ଯାଇଛି ତାର ଗୌରବମୟ ଇତିହାସ। ଆଜିବି ବିଶ୍ୱ ବିଖ୍ୟାତ ରାଜା ଲାଙ୍ଗୁଳା ନରସିଂହ ଦେବଙ୍କ ଉପରେ ଆମ ଐତିହାସିକ ବୃନ୍ଦଙ୍କ ଅପେକ୍ଷା ଅଧିକ ଲେଖିଯାଇଛନ୍ତି ଇଂରେଜ ଐତିହାସିକ ବୃନ୍ଦ / ଯାହାଙ୍କ ସମୟରେ, ଯାହାଙ୍କ ପ୍ରଚେଷ୍ଟାରେ ଏହି ବିଶ୍ୱ ବିଖ୍ୟାତ ମନ୍ଦିର ନିର୍ମିତ ହୋଇଥିଲା। ସେମାନେ ଲାଙ୍ଗୁଳା ନରସିଂହ ଦେବଙ୍କୁ ସର୍ବଶ୍ରେଷ୍ଠ ନିର୍ମାଣକର୍ତ୍ତା ଭାବରେ ବର୍ଣ୍ଣନା କରିଛନ୍ତି।

କୋଣାର୍କ ମନ୍ଦିର ନିର୍ମାଣକୁ ବାଦ ଦେଲେ, ସେ ଗୌଡ଼ ଦେଶକୁ ଯିବା ରାସ୍ତାରେ କେତେ ଦୁର୍ଗ ନିର୍ମାଣ କରିଛନ୍ତି। ନିର୍ମାଣ କରିଛନ୍ତି ରେମୁଣାର କ୍ଷୀରଚୋରା ଗୋପୀନାଥ ମନ୍ଦିର। କପିଳାସ ପାହାଡ ଉପରେ ନିର୍ମାଣ କରିଛନ୍ତି ଶିଖରେଶ୍ୱର ଶିବ ମନ୍ଦିର। ଏପରିକି

ଆନ୍ଧ୍ରପ୍ରଦେଶର ସୀମାଚଳମ୍‌ରେ ନିର୍ମାଣ କରାଇଛନ୍ତି ତାଙ୍କର ସେନାପତି ଅଖଡାଇଙ୍କ ଜରିଆରେ ଭିନ୍ନ ଏକ ସୂର୍ଯ୍ୟମନ୍ଦିର। ଏହା ତାଙ୍କ ବୀରତ୍ୱର ସ୍ମାରକୀ। ମାତ୍ର ସେହି ମନ୍ଦିରରେ ତାଙ୍କର ମୂର୍ତ୍ତି ଏବେ ବି ଶୋଭା ପାଉଛି। କୋଣାର୍କ ମନ୍ଦିର ନିର୍ମାଣ କରି ଓଡ଼ିଆ ଜାତିର କଳା, କୌଶଳ, ଭାସ୍କର୍ଯ୍ୟକୁ ବିଶ୍ୱ ସମକ୍ଷରେ ଟେକି ଧରିବାର ପ୍ରୟାସ ପ୍ରଚ୍ଛନ୍ନ ଭାବରେ ତାଙ୍କର କେବଳ ନଥିଲା, ତାହାରି ଭିତରେ ମଣିଷ ଜୀବନର ସମସ୍ତ ଛନ୍ଦକୁ ସେ ଖୋଲି ଦେବାର ପ୍ରୟାସ କରିଛନ୍ତି। ସମୟର ରଥ ଉପରେ ଗଡ଼ି ଯାଉଥିବା ମାନବ ଜାତିର ଏକ ସୁସ୍ଥ ସମାଜର ସେ ପରିକଳ୍ପନା କରିଛନ୍ତି। ଯାହା କୋଣାର୍କ ଗାତ୍ରରେ ସ୍ଥାନିତ ହୋଇଛି। ଆଜି ଯାହା ବିଶ୍ୱବାସୀଙ୍କର ଅନୁଧ୍ୟାନର ବିଷୟବସ୍ତୁ। ଓଡ଼ିଆ ଜାତି ଏକ ଯୋଦ୍ଧା ଜାତି, ଏକ ବାଣିଜ୍ୟ-ବିଶାରଦଜାତି ଏବଂ ସର୍ବୋପରି କଳା କୁଶଳୀ ଜାତି। ସମଗ୍ର ବିଶ୍ୱରେ ଏ ଜାତି 'କଳିଙ୍ଗାଃ ସାହସିକାଃ' ଭାବରେ ପରିଚିତ।

ଏହି ଓଡ଼ିଆ ମାନଙ୍କର ବାହୁରେ ଥିଲା ଅପ୍ରମିତବଳ। ବିରାଟ ବିରାଟ ଶାଣିତ କରବାଳ ଧରି ସେ ବାହୁ କରୁଥିଲା ରାଜ୍ୟଜୟ - ରାଜ୍ୟବିସ୍ତାର।

ନିହାଣ ମୁଗୁର ଧରି ସେ ବାହୁ କଠିଣ ପାଷାଣ କାଟି ଗଢୁଥିଲା କେତେ ଦୁର୍ଗ, ଦେଉଳ / ତା ଦେହରେ ପୁଣି ଫୁଟାଉ ଥିଲା ନନ୍ଦନର ପାରିଜାତ / ଆଉ ସେହି ବଳିଷ୍ଠ ବାହୁ ଆହୁଲା ମାରି ସାତ ସମୁଦ୍ର ତେର ନଈ ପାରି ହୋଇ ବୋହି ଆଣୁଥିଲା ବୋଇତରେ ସାତଗଦା ଧନ / ଏ ମାଟିରେ ଫଳାଉଥିଲା ହୀରାମୋତି, ମାଣିକ୍ୟ / ଏ ଜାତିକୁ ସମୃଦ୍ଧ କରୁଥିଲା, - ତାର ସାହିତ୍ୟ ସଂସ୍କୃତି ଓ ପରମ୍ପରା। ଯାହାର ପ୍ରତିନିଧିତ୍ୱ କରିବାକୁ ବଡ଼ ଦେଉଳରେ ସେ ବସାଇ ଦେଇଛି ଜଗତର ନାଥ ଜଗନ୍ନାଥଙ୍କୁ। ଆମେ ସେହି ଜାତିର ଦୁର୍ବଳ ଦାୟାଦ। ଏହି ଅତୀତକୁ ଭୁଲି ଆମେ ନିରାଶା, ହତାଶାର ଅନ୍ଧକାର ଭିତରେ ବିଚରଣ କରୁଛୁ। କବିଙ୍କ ଭାଷାରେ -

କଳିଙ୍ଗ ଦେଶର ବୀର ଶିଶୁ କିରେ, ଆହା ମୋ ଓଡ଼ିଆ ଭାଇ
କେଉଁ ସୁଖେ ଆଜି, ସାଜିଛୁ ଭିଖାରୀ, ଜାତି କଥା ଭୁଲି ଯାଇରେ ଓଡ଼ିଆ,
ହେଲୁ କିପାଁ ହୀନିମାନ।
ବଡ଼ ଦେଉଳର ନୀଳଚକ୍ରେ ଚାହିଁ, ମନେ ଭାବୁଛୁ କି ସାନରେ ଓଡ଼ିଆ,
ହେଲୁ କିପାଁ ହୀନିମାନ।

ଯେଉଁ ଜାତି ବିଶ୍ୱ ବିଖ୍ୟାତ କୋଣାର୍କ ମନ୍ଦିର ଗଢିଥିଲା, ସେ ତାର ସେହି ଗୌରବମୟ ଇତିହାସକୁ ଭୁଲି ଗଲାଣି। ବିଶ୍ୱ ସମକ୍ଷରେ କୋଣାର୍କ ନିର୍ମାଣର ଗୌରବ ଗାଥା ଟେକି ଧରିବା ପାଇଁ ହିନ୍ଦୀରେ ଏକ ଧାରାବାହିକ ୮.୧.୨୦୧୨ରେ ସିଲଭାରଟୋନ୍ ନାମକ ପ୍ରଯୋଜକ ଜରିଆରେ ମୁଁ ଭାରତ ସରକାରଙ୍କ ଦୂରଦର୍ଶନରେ ଦାଖଲ କରିଥିଲି। ପ୍ରସାର ଭାରତୀର ଅଧ୍ୟକ୍ଷ ଏବଂ ମୁଖ୍ୟ ନିର୍ବାହୀଙ୍କର ହସ୍ତକ୍ଷେପ ଫଳରେ ଦୂରଦର୍ଶନର ମହାନିର୍ଦ୍ଦେଶକ କୋଣାର୍କ ନିର୍ମାଣ ଉପରେ ହିନ୍ଦୀରେ ଏହି ଧାରା ବାହିକଟିକୁ ଭାଗୁଆଳି ବଜେଟରେ (Budegt sharing mode) କରିବା ପାଇଁ ଓଡ଼ିଶା ସରକାରଙ୍କର ପର୍ଯ୍ୟଟନ ବିଭାଗର ସେକ୍ରେଟରୀଙ୍କଠାରୁ ସମ୍ମତି ଲାଭ କରିବାକୁ ପତ୍ର ଲେଖିଥିଲେ File no 22.15.2012 P.I.V., ତାରିଖ ୩୦.୯.୨୦୧୩ରେ। ଓଡ଼ିଶାର ପର୍ଯ୍ୟଟନ ସେକ୍ରେଟାରୀଙ୍କ ସମ୍ମତି ପାଇଥିଲେ, କେତେ କାଳ ହିନ୍ଦୀରେ ଧାରାବାହିକଟି ବିଶ୍ୱବାସୀଙ୍କ ସମ୍ମୁଖରେ ପ୍ରଦର୍ଶିତ ହୋଇଥାନ୍ତା।

ଏ ସଂପର୍କରେ ପଦକ୍ଷେପ ନେବାକୁ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଉଭୟ ପର୍ଯ୍ୟଟନ ଓ ସଂସ୍କୃତି ବିଭାଗକୁ ନିର୍ଦ୍ଦେଶ ଦେଇଥିଲେ। ତାତ୍କାଳୀନ ପର୍ଯ୍ୟଟନ ଓ ସଂସ୍କୃତି ବିଭାଗ ମନ୍ତ୍ରୀ ମହେଶ୍ୱର ମହାନ୍ତି ଦୁଇ ଦୁଇଥର ମିଟିଂ କରି, ମୋତେ ସେହି ମିଟିଂକୁ ଡ଼କାଇ ତୁରନ୍ତ ସମ୍ମତି ପଠାଇବେ ବୋଲି ପ୍ରତିଶ୍ରୁତି ଦେଇ ପଠାଇଲେ ନାହିଁ। ନାଲି ଫିତା ତଳେ ଏହି ଧାରା ବାହିକଟିର ଭାଗ୍ୟ ବନ୍ଧା ହୋଇ ରହିଗଲା।

ଆହୁରି ମଧ୍ୟ ମୋର ଜଣେ ବନ୍ଧୁ, ସୁବ୍ରତ ନାୟକ, ଯେ କି ଓଡ଼ିଆରେ କେତେକ ଧାରା ବାହିକର ନିର୍ମାତା, ସେ ମୋଠାରୁ ଓଡ଼ିଆରେ କିଛି ଏପିସୋଡ ଲେଖାଇ ନେଇ ବମ୍ବେ ପ୍ରଯୋଜକଙ୍କୁ ହସ୍ତାନ୍ତରିତ କରିଥିଲେ ଧାରାବାହିକଟିଏ ନିର୍ମାଣ କରିବା ପାଇଁ। ସେଥିରେ ମଧ୍ୟ ମୁଁ ନିରାଶ ହୋଇ ଶେଷରେ 'କଥା କହେ କୋଣାର୍କ' ଉପନ୍ୟାସଟି ରଚନା କଲି। ଏଥିରେ ଲାଙ୍ଗୁଳା ନରସିଂହ ଦେବଙ୍କର ଜୀବନ ଇତିହାସ ସହିତ କୋଣାର୍କ ନିର୍ମାଣର ଇତିହାସ ସନ୍ନିବେଶିତ।

ବାରଶହ ବଢ଼େଇ ବାରବର୍ଷ ଧରି ନିର୍ମାଣ କାର୍ଯ୍ୟରେ ଲାଗିଥିବା ନିର୍ମାଣର ଇତିହାସ ସନ୍ନିବେଶିତ। ହସ କାନ୍ଦର ଇତିହାସ ସହିତ ବାରବର୍ଷର ବାଳକ ଧର୍ମପଦର ଜାତିଭାଇ ପାଇଁ ଆତ୍ମତ୍ୟାଗର ଏହା ଏକ ମର୍ମିକ ଇତିହାସର ଆଲେଖ୍ୟ। ଧର୍ମପଦ ଏ ଜାତିର ଦଧିଚୀ। ବାରଶହ ବଢ଼େଇର ପ୍ରାଣରକ୍ଷା ପାଇଁ ସେ ଆତ୍ମାହୁତି ଦେଇଛି। ଯାହା ବିଶ୍ୱ ଇତିହାସରେ ବିରଳ। କେହି କେହି ବନ୍ଧୁ ଏ ଉପନ୍ୟାସଟିର ପାଣ୍ଡୁଲିପିକୁ ପଢ଼ି ମୋତେ ପ୍ରସ୍ତାବ

ଦେଇଥିଲେ ଉପନ୍ୟାସଟିର ନାମ ପ୍ରୀତିର ପାଗୋଡ଼ା ରଖିବାକୁ। ଦେଶ ପ୍ରୀତି, ଜାତିପ୍ରୀତି, କଳାପ୍ରୀତି ଓ ମାନବ ପ୍ରୀତିର ଏହା ଏକ ଅପୂର୍ବ ଆଲେଖ୍ୟ। ସର୍ବୋପରି ପ୍ରେମପୀତିର ପରିଣତି ଉପନ୍ୟାସଟିର ମୁଖ୍ୟ ଉପଜୀବ୍ୟ ଭାବରେ ଚିତ୍ରିତ।

କୋଣାର୍କ ବିଶ୍ୱବାସୀଙ୍କର ଏକ ପରିଚିତ ନାଆଁ ଭାବି ନାମକରଣ ସେହି ଅନୁସାରେ ମୁଁ କରିଛି। ମୁଁ ଗବେଷକ କରୁଣା ସାଗର ବେହେରା, ବଳରାମ ମିଶ୍ର, ପଣ୍ଡିତ କୃପାସିନ୍ଧୁ ମିଶ୍ର, ଦେବଳା ମିତ୍ର, ଗୋପାଳ ଛୋଟରାୟ, ପ୍ରତିଭାରାୟ ଆଦି ବହୁ ସ୍ୱନାମଧନ୍ୟ ଗବେଷକ, ଐତିହାସିକ, ଔପନ୍ୟାସିକ, ନାଟ୍ୟକାରଆଦିଙ୍କର ପୁସ୍ତକ ସହିତ କେତେକ ଇଂରେଜୀ ଲେଖକଙ୍କର ପୁସ୍ତକ ପାଠ କରିଛି / ମୁଁ ସେହି ମାନଙ୍କଠାରେ ଋଣୀ / ମୋର ଏ ଉପନ୍ୟାସର ପାଣ୍ଡୁଲିପିକୁ ଯିଏ ସଂଶୋଧନ କରିବାରେ ମୋତେ ସାହାଯ୍ୟ କରିଛନ୍ତି - ମୋର ସହଧର୍ମିଣୀ ସେହି ଉମାରାଣୀ ପାତ୍ରଙ୍କୁ ମୁଁ ଧନ୍ୟବାଦ ଜ୍ଞାପନ କରୁଛି। ଏହି ଉପନ୍ୟାସଟିକୁ ପ୍ରକାଶ କରିବାର ଆଗ୍ରହ ପାଇଁ ବିନୋଦ ବିହାରୀ ବିଶୋଇଙ୍କୁ ମଧ ଧନ୍ୟବାଦ ଜ୍ଞାପନ କରୁଛି। ପ୍ରଚ୍ଛଦଶିଳ୍ପୀ ସାନଭାଇ ମାତୃ ପ୍ରସାଦ ଗିରି (ମୁନ୍ନା) ଏବଂ ଅଙ୍ଗସଜ୍ଜା ପାଇଁ ପଦ୍ମଶ୍ରୀ ସୁଦର୍ଶନ ସାହୁଙ୍କଠାରେ ମୁଁ କୃତଜ୍ଞ। ତାଙ୍କ ସହିତ ଧନ୍ୟବାଦ ଦେବି ମୋର ଜୁଆଁଇ ପ୍ରଫେସର ପ୍ରଶାନ୍ତ ପରିଡ଼ାଙ୍କୁ ଅଙ୍ଗସଜ୍ଜା ପାଇଁ। ସର୍ବୋପରି ଓଡ଼ିଶାର ଠାକୁର ରାଜା ପରମ ପୂଜ୍ୟ ଗଜପତି ଶ୍ରୀଯୁକ୍ତ ଦିବ୍ୟ ସିଂହ ଦେବ ଯେ କି ଏ ଉପନ୍ୟାସଟି ଉପରେ ଅଭିମତ ପ୍ରଦାନ କରିଛନ୍ତି - ତାଙ୍କୁ ମୋର କୋଟି ଜୁହାର।

ବିନୀତ ଲେଖକ

# (୧)

ସୂର୍ଯ୍ୟୋଦୟର ପ୍ରାକ୍‌କାଳ। ପ୍ରାଚୀ ଦିଗ୍‌ବଳୟରେ ଅପୂର୍ବ ରଙ୍ଗଛଟା ଆକାଶ ଆଡକୁ ମାଡ଼ି ଆସିଛି। ସମୁଦ୍ର ଓ ଆକାଶର ମିଳନ ରେଖାରେ ମୁଣ୍ଡ ଟେକୁଛନ୍ତି ବାଳ ଅରୁଣ, ଏକ ଲୋହିତ କନ୍ଦୁକ ଭଳି। ସଦ୍ୟ ସମ୍ପୂର୍ଣ୍ଣ ହୋଇଥିବା ଚନ୍ଦ୍ରଭାଗା ତୀରରେ ମୁଣ୍ଡ ଟେକି ଛିଡ଼ା ହୋଇଛି ସୂର୍ଯ୍ୟ ମନ୍ଦିର। ଆସ୍ଥାନ ସଜାଡ଼ି ରଖିଛି ସୂର୍ଯ୍ୟ ଦେବତାଙ୍କ ପାଇଁ। ବାଳ ସୂର୍ଯ୍ୟର ଲୋହିତ ସୁନେଲି ଛଟା ବିଞ୍ଚି ପଡିଛି ମନ୍ଦିର ଗାତ୍ରରେ। ବିଞ୍ଚି ପଡ଼ିଛି ସାଗର ସୈକତରେ, ଘୋ ଘୋ କରି କୂଳରେ ମୁଣ୍ଡ ପିଟୁଥିବା ଅସଂଖ୍ୟ ଉର୍ମିମାଳା ଉପରେ। ସମୁଦ୍ର ଚଢ଼େଇ ଗୁଡ଼ିକ କଳ କାକଳି ତୋଳି କେହି ଢ଼େଉ ଉପରେ ଭାସମାନ ତ, କେହି କିଛି ଉପରକୁ ଉଠୁଛନ୍ତି ପ୍ରାଣର ଉଦ୍‌ବେଳନରେ। ମାଛ ମରାଳୀମାନଙ୍କର ଡ଼ଙ୍ଗାଗୁଡ଼ିକ ପାଲ ଉଡ଼ାଇ ଭାସୁଛନ୍ତି ଦୂର ନିକଟ ଜଳରାଶି ଉପରେ। ସେହି ପାଲଗୁଡ଼ିକ ଉପରେ ମଧ ବର୍ଣ୍ଣ ଆଭା ବିଞ୍ଚି ହୋଇପଡିଛି। ରଙ୍ଗତୁଳୀ ନେଇ କିଏ ଯେମିତି ସଦାବେଳେ ରଙ୍ଗ ଲେପିବାରେ ଲାଗିଛି ଦିଗ୍‌ବଳୟର ଆକାଶ ଉପରେ। ବଦଳି ଯାଉଛି ବର୍ଣ୍ଣର ବିଭା। ଅପୂର୍ବ ଶୋଭାରେ ଚମକୁଛି ପ୍ରକୃତି।

ଗତକାଲି ଠିକ୍ ସୂର୍ଯ୍ୟାସ୍ତ ପୂର୍ବରୁ କୋଣାର୍କ ମନ୍ଦିରର ଚୂଳି ମରିଛି। ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇଛି। ମହାରାଜା ଲାଙ୍ଗୁଳା ନରସିଂହ ଦେବଙ୍କ ପାଖରେ ଏ ସମ୍ବାଦ ପହଞ୍ଚିଛି। ପ୍ରଭାତରେ ମହାରାଜା ଓ ମହାରାଣୀ, ପାତ୍ର ମନ୍ତ୍ରୀଙ୍କ ଗହଣରେ ଆସିବେ ମନ୍ଦିର ପରିଦର୍ଶନରେ।

ବାରଶହ ବଢ଼େଇ ବାରବର୍ଷ ଧରି ଯେଉଁ ମନ୍ଦିରର ନିର୍ମାଣ କାର୍ଯ୍ୟରେ ଲାଗିଥିଲେ ଭୟ ଆଶଙ୍କାରେ ସେମାନେ ବିବ୍ରତ। ସୂକ୍ଷ୍ମ ସୁନ୍ଦର କାରୁକାର୍ଯ୍ୟ ମଣ୍ଡିତ କୋଣାର୍କ ମନ୍ଦିର ସେମାନେ ନିର୍ମାଣ କରିଛନ୍ତି। ହେଲେ, ସେମାନଙ୍କର ଚୂଳି ମାରିବାର ବିଫଳତା ସେମାନଙ୍କ ମନରେ ଆନନ୍ଦ ପରିବର୍ତ୍ତେ ଦୁଃଖ, ଆଶଙ୍କା ସୃଷ୍ଟି କରିଛି। କାଲେ ମହାରାଜା ଜାଣିବେ

ବାରବର୍ଷର ବାଳୁତଟିଏ, ସେମାନେ ଯେଉଁ କାମ କରି ପାରୁନଥିଲେ - ସେ ଅସାଧ୍ୟ କାର୍ଯ୍ୟକୁ ସାଧନ କରିଛି। ସେମାନେ ବିଶାଳ ମନ୍ଦିରର ଚୂଳିମାରିବାରେ ବ୍ୟର୍ଥ ହୋଇଛନ୍ତି। ଯେତେଥର ଚୂଳି ମାରିଛନ୍ତି ତାହା ଖସି ପଡ଼ିଛି। ଦଧିନଉତି ନିର୍ଦ୍ଧାରଣ ସଠିକ୍ ଭାବରେ କରି ପାରି ନାହାନ୍ତି। ରାତ୍ରି ପାହିବା ପୂର୍ବରୁ ଚୂଳି ମରା ହୋଇ ନଥିଲେ ବାରଶହ ବଢ଼େଇଙ୍କର ମୁଣ୍ଡକାଟ ହେବ। କିଏ ନଜାଣୁ ବାରଶହ ବଢ଼େଇଙ୍କ ବ୍ୟତୀତ, ଅନ୍ୟ କିଏ ମନ୍ଦିରରେ ଚୂଳି ମାରିଛି ବୋଲି। ସତ୍ୟ ଲୁଚିଯାଉ। ପାହାନ୍ତିଆ ତାରାଗୁଡ଼ିକ ରାତ୍ରିର ଆକାଶରେ ମିଟି ମିଟି କରୁଥିଲେ, ସବୁ ଫିକା ପଡ଼ି ଆସିଲେଣି। ଜହ୍ନଟିବି ବାରୁଣୀ ଦିଗ୍‌ବଳୟରେ ଲୁଚି ଗଲାଣି।

x x x x x

ଦୂରରୁ ଶୁଭୁଛି ତୂର୍ଯ୍ୟନାଦ। ମହାରାଜା, ମହାରାଣୀ ପାତ୍ର ମନ୍ତ୍ରୀଙ୍କ ଗହଣରେ ବିଜେ କରୁଛନ୍ତି ସମ୍ପୂର୍ଣ୍ଣ ହୋଇଥିବା ମନ୍ଦିର ଦର୍ଶନରେ। କେତେଦିନ ଧରି ଦିବା ନିଶି ଯେଉଁ ସ୍ୱପ୍ନରେ ସେ ବିଭୋର ହୋଇ ରହିଥିଲେ, ସେହି ସ୍ୱପ୍ନ ଆଜି ସାକାର ହୋଇଛି। ହୃଦୟରେ ଆନନ୍ଦର ଉଦ୍‌ବେଳନ। ଆସୁଛନ୍ତି ବାରଶହ ବଢ଼େଇଙ୍କୁ ବଧେଇ ଜଣାଇବାକୁ। ବିଶେଷ କରି ଶିଳ୍ପୀ ଶିରୋମଣି ବିଶୁ ମହାରଣାଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଜଣାଇବେ ସେ।

x x x x x

ମନ୍ଦିର ବେଢ଼ାରେ ଉପସ୍ଥିତ ହୋଇ ବିଶାଳ ମନ୍ଦିରକୁ ଦର୍ଶନ କରୁଛନ୍ତି ମହାରାଣୀ ଓ ପାତ୍ରମନ୍ତ୍ରୀଙ୍କ ସହିତ। ଚାହିଁ ଦେଖୁଛନ୍ତି ଜୀବନ୍ତ ହୋଇ ଉଠୁଥିବା ମନ୍ଦିରର ମୂର୍ତ୍ତିଗୁଡ଼ିକୁ; ବିଶେଷ କରି ସୂର୍ଯ୍ୟଙ୍କ ସାରଥୀ ଅରୁଣଙ୍କ ମୂର୍ତ୍ତିକୁ। ବାରଶହ ବଢ଼େଇ ନୀରବରେ ମହାରାଜା, ମହାରାଣୀଙ୍କୁ ନତ ମସ୍ତକ ହୋଇ ସମ୍ବର୍ଦ୍ଧନା ଜ୍ଞାପନ କରୁଛନ୍ତି। କାହାରି ତୁଣ୍ଡରେ ଭାଷା ନାହିଁ। ମହାରାଜା ଖୋଜୁଛନ୍ତି କାହାନ୍ତି ସେଇ ଶିଳ୍ପୀ ଶ୍ରେଷ୍ଠ ବିଶୁ ମହାରଣା।

ଅଳ୍ପ ସମୟ ପୂର୍ବରୁ ପୁତ୍ର ଧର୍ମପଦକୁ ଖୋଜି ଖୋଜି ବେଳା ଭୂମି ଆଡକୁ ଧରମା ଧରମା ଚିତ୍କାର କରି ଚାଲିଯାଇଛନ୍ତି ସେ। ଖୋଜୁଛନ୍ତି ତାର ପ୍ରାଣର ପୁତ୍ର ବାରବର୍ଷର ଧରମାକୁ। ତାହାରି ବାହୁ ଉପରେ ମଥା ରଖି ତାହାରି କୋଳରେ ଶୋଇଥିଲା ପ୍ରିୟ ପୁତ୍ର ତାର। ଯାହାର ମୃତ୍ୟୁ ଚାହୁଁଥିଲେ, କେତେଜଣଙ୍କୁ ଛାଡି, ଅନ୍ୟ ଶିଳ୍ପୀବୃନ୍ଦ। ବାରବର୍ଷର ବାଳକଟିଏ ସେ ଦଧିନଉତି ନିର୍ଦ୍ଧାରଣ କରି କଳସ ବସାଇ ଚୂଳି ମାରି ପାରିଛି ଏହି କୋଣାର୍କ ମନ୍ଦିରର। ଏ କଥା ରାଜା ଜାଣିଲେ, ନିର୍ଦ୍ଦେଶ ଦେବେ, ବାରଶହ ବଢ଼େଇର ମୁଣ୍ଡକାଟ।

ସେହି ମିଥ୍ୟା ଆଶଂକା ସେମାନଙ୍କ ମନରେ ମୃତ୍ୟୁଭୟ ସୃଷ୍ଟି କରିଛି। ସେମାନେ ଚାହିଁଥିଲେ ବିଶୁକୋଳରୁ ତାର ପୁତ୍ର ଧର୍ମପଦକୁ ଛଡ଼ାଇ ନେଇ ହତ୍ୟା କରିବେ। ହେଲେ, ବିଶୁର ବ୍ୟକ୍ତିତ୍ୱ ଆଗରେ ସେମାନେ ସେ ସାହାସ କରିପାରି ନାହାନ୍ତି। ବିଶେଷ କରି ବିଶୁର କେତେକ ଏକାନ୍ତ ବିଶ୍ୱସ୍ତ ସାଥୀ ଶିଳ୍ପୀମାନେ ସୁରକ୍ଷା ଦେଇଛନ୍ତି। ସେହି ପୁତ୍ର ଧର୍ମପଦ ତା ପାଖରେ ନାହିଁ। କ'ଣ ହୋଇପାରେ? କିଏ କହିବ ପୁତ୍ର ତାର କେଉଁଠି? ନିଦ୍ରା ଯିବା ଅବସ୍ଥାରେ ତାର ପୁତ୍ରକୁ ଦୁର୍ବୃତ୍ତମାନେ ଆଉ ଚୋରାଇ ନେଇ ଯାଇନାହାନ୍ତି ତ? ପ୍ରାଣପ୍ରିୟା ପଦ୍ମାବତୀ ପଠାଇଥିଲା ତାର ପୁତ୍ରକୁ, ପିତା ସହିତ ସାକ୍ଷାତ କରିବା ପାଇଁ। ରାତ୍ରିର ବିଳମ୍ବିତ ପ୍ରହର ପର୍ଯ୍ୟନ୍ତ ପିତା ପୁତ୍ର ପରିବାରର କେତେ କଥା ପରସ୍ପର ମଧ୍ୟରେ ହୋଇଥିଲେ। ପରମ ଶାନ୍ତିରେ ଶୋଇ ଯାଇଥିଲା ବିଶୁ। ଜାଣି ପାରିଲା ନାହିଁ ପୁତ୍ରର ଅନ୍ତର୍ଦ୍ଧାନ ବିଷୟରେ। ଅନ୍ତରରେ ପୁତ୍ରର ଅନ୍ତର୍ଦ୍ଧାନ ଏକ ବିକ୍ଷୁବ୍ଧ ଆଲୋଡ଼ନ ସୃଷ୍ଟି କରିଛି। ସେହି ବିକ୍ଷୁବ୍ଧ ଅନ୍ତର ନେଇ ସମୁଦ୍ରତଟ ଆଡକୁ ଧରମା ଧରମା ଚିତ୍କାର କରି ଧାବମାନ ସେ। କାଳେ ସେ ସମୁଦ୍ରର ଶୋଭା ଦେଖିବା ପାଇଁ ସମୁଦ୍ର କୂଳରେ ଭ୍ରମଣ କରୁଥିବ।

ଅଦୂରରେ ସେ ଦେଖିଲା ବହୁଲୋକ ରୁଣ୍ଡ ହୋଇଛନ୍ତି। ଭାବିଲା, ସେହି ଜନଗହଳି ମଧ୍ୟରେ ବୁଲୁଥିବ ଧରମା। ଧସେଇ ପଶିଲା ସେହି ଜନଗହଳି ଭିତରକୁ।

କେହି କେହି କଥାବାର୍ତ୍ତା ହେଉଛନ୍ତି - ଆଃ କି ଅପୂର୍ବ ସୁନ୍ଦର ପିଲାଟି। ସମୁଦ୍ରରେ ସ୍ନାନ କରୁଥିବା ବେଳେ ଅସାବଧାନତାରେ କେମିତି ହୁଏତ ଭାସି ଯାଇଥିବ।

ଆଉ କେହି କହୁଛି, ସଦ୍ୟ ଶବଟିଏ। ଏବେ ବି ସତେଜ ଅଛି ତାର ସୁନ୍ଦର ମୁଖମଣ୍ଡଳ - ହାତଗୋଡ଼। ଏବେ ତ ମାଛଧରାଳିମାନେ ଶବଟିକୁ ସମୁଦ୍ରରୁ ଉଦ୍ଧାର କରିଛନ୍ତି।

ଏହି ସୁନ୍ଦର ଶିଶୁପୁତ୍ରର ଶବକୁ ଘେରି ରହିଥିବା ଜନଗହଳି ଭିତରକୁ ପଶି ବିଶୁ ଯାହା ଦେଖିଲା - ପାଗଳ ହୋଇଗଲା ସେ। ତାରି ପ୍ରାଣର ପୁତ୍ର ଧରମାର ସେ ଶବ। କ୍ରନ୍ଦନରେ ଫାଟି ପଡ଼ିଲା ସେ। ଦୁଇ ହାତରେ ପୁତ୍ରର ଶବକୁ କୋଳକୁ ଟେକି ନେଇ ଚୁମାରେ ଚୁମାରେ ଭରିଦେଲା। ଏ କ'ଣ କଲୁ ପୁତ୍ର ? ମୋତେ ଛାଡି ତୁ ଚାଲିଗଲୁ ? ବାରଶହ ବଢ଼େଇର ପ୍ରାଣ ରକ୍ଷା ପାଇଁ ମୋତେ ଅଳି କରୁଥିଲୁ ପରା। ନା - ନା ତୋତେ ଏ ବଢ଼େଇମାନେ ମାରି ସମୁଦ୍ରରେ ଭସାଇ ଦେଇଛନ୍ତି। ତୁ କୋଣାର୍କ ମନ୍ଦିର ଚୂଳି ମାରିଛୁ ବୋଲି ଜାଣିଲେ - ରାଜା କୁଆଡ଼େ ତାଙ୍କର ମୁଣ୍ଡ କାଟ କରିବେ।

ନା, ତୁ ମରି ପାରିବୁ ନାହିଁ। ତୋତେ କେହି ମାରି ପାରିବେ ନାହିଁ। ତୋ ବାପା ବିଶୁ ମହାରଣା ଅଛି। ତା ପାଖରୁ ତା ପ୍ରାଣର ପୁତ୍ରକୁ କେହି ଛଡ଼ାଇ ନେଇ ପାରିବେ ନାହିଁ। କାନ୍ଦି କାନ୍ଦି ଏମିତି ପାଗଳ ପ୍ରାୟ କେତେକ କଥା ବଖାଣୁ ବଖାଣୁ, ପୁତ୍ରର ଶବକୁ ଛାତିରେ ଭିଡ଼ି ଧରିଛି ପୁତ୍ରହରା ବିଶୁ। ଜାଣି ବି ଜାଣି ପାରୁନାହିଁ ପୁତ୍ର ତାର ପ୍ରାଣହୀନ। ଦୁଇ ଆଖି ଫାଟି ଯେମିତି ତତଲା ଲୁହ ଝରି ପଡୁଛି ତାର ବକ୍ଷସ୍ଥଳକୁ। ଲୁହ ନୁହେଁ ସତେ ଅବା ଲହୁ, ତାର ବକ୍ଷସ୍ଥଳକୁ ଭିଜାଇ ଦେଉଛି।

ପାଗଳ ପ୍ରାୟ ପୁତ୍ରକୁ କାନ୍ଧରେ ପକାଇ ଧାବମାନ ହେଉଛି ବାଲିକୁଦ ଆଡକୁ। ଚିତ୍କାର କରୁଛି - ଏମାନେ ସମସ୍ତେ ମୋ ଧରମାକୁ ମାରିଦେବେ। ମାରି ଦେବେ ପାଷାଣ୍ଡମାନେ...ମାରିଦେବେ...।

ମହାରାଜା, ମହାରାଣୀ ଓ ପାତ୍ରମନ୍ତ୍ରୀ ବିଶୁକୁ ଖୋଜି ଖୋଜି ଠିକ୍ ସେତିକି ବେଳେ ପହଞ୍ଚିଛନ୍ତି ସେହି ଜନଗହଳି ନିକଟରେ।

ପଛରେ ଛିଡା ହୋଇଛି ବିବର୍ଣ୍ଣ କୋଣାର୍କ ମନ୍ଦିର। ଯାହାର କଳସଠାରୁ ଆରମ୍ଭ କରି ମନ୍ଦିରର ପ୍ରାଚୀ ପଟ ଲୋହିତ ଆଭାରେ ରଞ୍ଜିତ / ସମ୍ମୁଖରେ ଏହି ଅନତି ଦୂରରେ ବିଷର୍ଣ୍ଣ ଜନତା / ସବୁରି ମୁଖ ମଣ୍ଡଳରେ ବିଷାଦର ଅରୁଣିମା। ଶୁଣୁଛନ୍ତି ମହାରାଜା ଓ ପାତ୍ର ମନ୍ତ୍ରୀ, ମୃତପୁତ୍ରର ଶବକୁ କାନ୍ଧରେ ପକାଇ ଧାବମାନ ହେଉଥିବା ଶିଳ୍ପୀ ଶ୍ରେଷ୍ଠ ବିଶୁ ମହାରାଣର ଚିତ୍କାର। କୋଣାର୍କ ମନ୍ଦିରର ଚୂଳି ମାରିଥିବା ମୋର ପ୍ରାଣର ପୁତ୍ର ଧରମାକୁ ଏମାନେ ମାରି ପାରିବେ ନାହିଁ। ଛଡ଼ାଇ ନେଇ ପାରିବେ ନାହିଁ ପିତା ପାଖରୁ ତାର ପ୍ରାଣର ପୁତ୍ରକୁ। ନିର୍ବାକ ହୋଇ ମହାରାଜା, ମହାରାଣୀ ଓ ପାତ୍ରମନ୍ତ୍ରୀ - ସେହି କରୁଣ ଦୃଶ୍ୟ ଆଡକୁ ଅନେଇ ରହିଛନ୍ତି। ପାଗଳ ପିତା ତାର କାନ୍ଧରେ ମୃତ ପୁତ୍ରର ଶବକୁ ଧରି ବାଲିକୁଦ ପଛରେ ଲୁଚି ଯାଉଛି। କାଳେ କିଏ ତାର ପୁତ୍ରର ଶବକୁ ଛଡ଼ାଇ ନେବ। ବେଳାଭୂମି ନିକଟରେ ଦୁଃଖରେ ଯେମିତି ମୁଣ୍ଡପିଟି ଘୋ ଘୋ ଗର୍ଜନ କରୁଛି ସମୁଦ୍ର ଢେଉମାନ।



# ( ୨ )

ଏହି ମହାରାଜା ଆଉ କେହି ନୁହନ୍ତି ଉତ୍କଳର ଗର୍ବ ଗୌରବର ପ୍ରତିନିଧି, ବିଶ୍ୱ ବିଖ୍ୟାତ କୋଣାର୍କ ମନ୍ଦିରର ନିର୍ମାତା ଲାଙ୍ଗୁଳା ନରସିଂହ ଦେବ। ଯାହାଙ୍କର ପିତା ଅନଙ୍ଗ ଭୀମ ଦେବ (ତୃତୀୟ)। ଯାହାଙ୍କର ମାତା ଅପୂର୍ବ-ସୁନ୍ଦରୀ ରାଣୀ କସ୍ତୁରୀ ଦେବୀ।

ପ୍ରଜାବତ୍ସଳ, ପରାକ୍ରମୀ ଗଙ୍ଗବଂଶର ଏହି ରାଜା ଅନଙ୍ଗଭୀମ ଦେବ। ତାଙ୍କର ପ୍ରଥମା ରାଣୀଙ୍କର ନାମ ସୋମଳ ଦେବୀ। ସେ ହେଉଛନ୍ତି ବିଡାନସୀ ଗଡ଼ର ଅଧସ୍ତନ ରାଜାଙ୍କର କନ୍ୟା। ସୁନ୍ଦରୀ ପଣରେ ଅତୁଳନୀୟା। ବିବାହର ବର୍ଷକ ପରେ ତାଙ୍କ କୋଳମଣ୍ଡନ କରିଥିଲା ଏକ କନ୍ୟା। ଯାହାର ମୁଖ ମଣ୍ଡଳର ଶୋଭା ଚନ୍ଦ୍ରର ଶୋଭାକୁ ସତେ ଅବା ଭୁଲାଇ ଦେବ। ସେଥିପାଇଁ ନାମ ଦିଆଯାଇଥିଲା ଚନ୍ଦ୍ରିକା। ଚନ୍ଦ୍ରିକାର ଜନ୍ମର ଦୀର୍ଘ ପାଞ୍ଚବର୍ଷ ପରେ ରାଣୀ ସୋମଳ ଦେବୀଙ୍କ କୋଳକୁ କୌଣସି ସନ୍ତାନ ଆସିଲେ ନାହିଁ। ଅନଙ୍ଗଭୀମ ଦେବଙ୍କ ପରେ ଗଙ୍ଗ ବଂଶର କୁଳରକ୍ଷା ସହିତ ସିଂହାସନ ରକ୍ଷାର ଚିନ୍ତା କେବଳ ରାଜାରାଣୀଙ୍କ ଅନ୍ତରକୁ ଛୁଇଁଲା ନାହିଁ। ଛୁଇଁଲା ପାତ୍ରମନ୍ତ୍ରୀ ସମସ୍ତଙ୍କୁ। ସ୍ୱୟଂ ରାଣୀ ସୋମଳ ଦେବୀ ମଧ୍ୟ ବ୍ୟସ୍ତ ହୋଇ ପଡ଼ିଲେ।

ଏକଦା ରାତ୍ରିର ମିଳନ କକ୍ଷରେ ପତିଙ୍କର ବକ୍ଷ ସଂଲଗ୍ନା ହୋଇ ରାଣୀ ସୋମଳ ଦେବୀ ଅନୁରୋଧ କଲେ, ଆପଣ ଦ୍ୱିତୀୟ ଦାରା ଗ୍ରହଣ କରନ୍ତୁ ପ୍ରାଣେଶ୍ୱର। ନହେଲେ ଭବିଷ୍ୟତରେ ଗଙ୍ଗ ବଂଶର କୁଳରକ୍ଷା ଓ ସିଂହାସନ ରକ୍ଷା ହୋଇ ପାରିବ ନାହିଁ। ମୁଁ ମନ ପ୍ରାଣରେ ଚାହୁଁଛି - ମୋ ଦେଇ ଯାହା ହୋଇପାରିଲା ନାହିଁ, ନୂଆ କରି ଯିଏ ଆସିବ - ତାହା ଦେଇ ତାହା ନିଶ୍ଚୟ ସମ୍ଭବ ହେବ। ଆଲିଙ୍ଗନ ମଧ୍ୟରେ ରାଣୀ ସୋମଳ ଦେବୀଙ୍କୁ ମହାରାଜା କହିଲେ, ତୁମେ ଏଡ଼େ ମହାନ୍ ମହାରାଣୀ। ଯେକୌଣସି ପତ୍ନୀ ପତି ପାଖରେ ଆଉ ଜଣେ ପତ୍ନୀକୁ ସ୍ଥାନଦେବାକୁ ଚାହେଁ ନାହିଁ। ତୁମେ କେମିତି ଏ କଥା ଚାହୁଁଛ ?

ସୋମଲ ଦେବୀ କହିଲେ - ମୁଁ ଜାଣେ ମୋର ପତିପରମ ଦେବତାଙ୍କୁ। ସେ କେବଳ ମୋ ହୃଦୟର ଦେବତା ନୁହନ୍ତି। ସେ ହେଉଛନ୍ତି ରାଜ୍ୟର ପ୍ରଜାଙ୍କ ହୃଦୟର ଅଧିଶ୍ୱର। ପ୍ରଜାଙ୍କର ହିତସାଧନରେ ଯେ ସଦାସର୍ବଦା ଚିନ୍ତିତ। ସେହି ପ୍ରଜାମାନଙ୍କର ଭବିଷ୍ୟତ ମଙ୍ଗଳ କାମନା ପାଇଁ ପୁତ୍ରକାମୀ ମୁଁ। ସୋମଲ ଦେବୀଙ୍କ ଚିବୁକ ହଲାଇ ଦେଇ ଅନଙ୍ଗ ଭୀମ ଦେବ କହିଲେ, ତୁମର କାମନା ଫଳବତୀ ହେବ ମହାରାଣୀ।

ସୋମଲ ଦେବୀ ନିଜେ ମନୋନୀତ କରିଥିଲେ ରୂପସା ଗଡ଼ର ରାଜଜେମା କସ୍ତୁରୀଙ୍କୁ। କସ୍ତୁରୀର ସୁଗନ୍ଧ ଭଳି ଯାହାର ରୂପଲାବଣ୍ୟ ଓ ଗୁଣର ଗାରିମା ବିଞ୍ଚି ହୋଇ ପଡ଼ିଥିଲା ରାଜ୍ୟରେ।

କସ୍ତୁରୀ ଦେବୀ ଅସାଧାରଣ ରୂପସୀ ଏବଂ ଜଣେ ବିଦୂଷୀ ନାରୀ ମଧ୍ୟ। ମହାଧୂମ୍ ଧାମ୍‌ରେ ବୈଦିକ ରୀତିରେ ଅନଙ୍ଗଭୀମ ଦେବ ତାଙ୍କର ପାଣି ଗ୍ରହଣ କରିଥିଲେ। ସାରା ରାଜପ୍ରାସାଦ ଯେମିତି କସ୍ତୁରୀ ଦେବୀଙ୍କ ଆଗମନରେ ଆନନ୍ଦ ମୁଖର ହୋଇ ଉଠିଥିଲା। ବିଶେଷ କରି ସୋମଲ ଦେବୀ ଏବଂ ତାଙ୍କର କନ୍ୟା ଚନ୍ଦ୍ରିକା, କସ୍ତୁରୀ ଦେବୀଙ୍କୁ ପାଇ କୋଟିନିଧି ପାଇଲା ଭଳି ମଣୁ ଥିଲେ।

ଚନ୍ଦ୍ରିକା ନୂଆ ମାଆର ପାଖ ଛାଡୁ ନଥିଲା। ସୋମଲ ଦେବୀ ମଧ୍ୟ ସହଚରୀ ଭଳି କସ୍ତୁରୀ ଦେବୀଙ୍କର ସମସ୍ତ ଯତ୍ନ ନେଉଥିଲେ। ଦେଖୁ ଦେଖୁ ଚାରିବର୍ଷ ବିତିଗଲା। କସ୍ତୁରୀ ଦେବୀଙ୍କ ଉଦାସ ମନରେ ହତାଶା ଦେଖା ଦେଲା। ସେ ସନ୍ତାନ ସମ୍ଭବା ହୋଇ ପାରିଲେ ନାହିଁ। ସୋମଲ ଦେବୀ କେବଳ ବ୍ୟସ୍ତ ହୋଇ ଉଠିଲେ ନାହିଁ, ମହାରାଜା ଅନଙ୍ଗ ଭୀମଦେବ ଅସ୍ଥିର ହୋଇ ଉଠିଲେ। ରୂପସୀ କସ୍ତୁରୀ ଦେବୀଙ୍କୁ ସେ କେବଳ ପ୍ରାଣଭରି ଭଲ ପାଉନଥିଲେ - ଆଶା କରିଥିଲେ, ତାଙ୍କର କୋଳ ମଣ୍ଡନ କରିବ ଗଙ୍ଗବଂଶର ଭାବୀ ଅଧିଶ୍ୱର, ସନ୍ତାନଟିଏ।

ସେଦିନ ରାତ୍ରିରେ ସ୍ୱାମୀଙ୍କ କୋଳରେ ଶୋଇ ବାତାୟନ ପଥ ଦେଇ କସ୍ତୁରୀ ଦେବୀ ଦେଖୁଥିଲେ ଚନ୍ଦ୍ର କିରଣରେ ଉଦ୍ୟାନବାଟିକା ଭରି ଯାଇଛି। ସ୍ୱାମୀଙ୍କର ବାହୁ ଉପରେ ମସ୍ତକ ରଖି ଦକ୍ଷିଣ ହସ୍ତ ତାଙ୍କ ବକ୍ଷରେ ଚାପି ଧରି କହୁଥିଲେ, ଦେଖ ପ୍ରିୟତମ, କିପରି, ଚନ୍ଦ୍ରାଲୋକରେ ବିଧୌତ ଉଜ୍ଜ୍ୱଳ ଉପବନ। ହେଲେ, ମୋ ଅନ୍ତର ଉପବନରେ ଅନ୍ଧକାର ରାଜୁତି କରୁଛି। ମୋ ଅନ୍ତର ଉପବନରୁ ଏ ଅନ୍ଧକାର ଦୂର କରି ଚନ୍ଦ୍ରାଲୋକ ଭଳି ଉଜ୍ଜ୍ୱଳ ଆଲୋକରେ ଭରିଦିଅ ସ୍ୱାମୀ। ଏତିକିମାତ୍ର ଜଣେ ଭିକ୍ଷୁଣୀର ପ୍ରାର୍ଥନା। ଏହା

କହୁ କହୁ ତାଙ୍କ ଆଖିରୁ ଦୁଇଧାର ତତଲା ଅଶ୍ରୁଝରି ପଡ଼ିଥିଲା ଅନଙ୍ଗ ଭୀମଦେବଙ୍କର ବାମ ବାହୁ ଉପରେ।

ସେ, ଆବେଗରେ ଜଡ଼ାଇ ନେଇଥିଲେ କସ୍ତୁରୀ ଦେବୀଙ୍କୁ ନିଜ ବକ୍ଷରେ। ଆଶ୍ୱାସନା ଦେଇଥିଲେ, ପୁତ୍ରେଷ୍ଟିଯଜ୍ଞରେ ସମସ୍ତ ଦେବଦେବୀଙ୍କୁ ସନ୍ତୁଷ୍ଟ କରି ମାଗି ଆଣିବି ସେହିବର। ଯେଉଁ ବରରେ ପୁତ୍ରଲାଭ କରିବ ପ୍ରିୟତମା'।

ତହିଁପର ଦିନ ପ୍ରଭାତରେ ସେ ପରାମର୍ଶ କରିଥିଲେ କୁଳ ପୁରୋହିତ ଭୁବନାନନ୍ଦ ରାଜଗୁରୁଙ୍କ ସହିତ।

ତାଙ୍କରି ପରାମର୍ଶରେ ପୁତ୍ରେଷ୍ଟି ଯଜ୍ଞ ନୋହିଲା। ଆରମ୍ଭ ହେଲା ସୂର୍ଯ୍ୟପୂଜାର ଆୟୋଜନ। ମହାରାଣୀ ସୋମଲ ଦେବୀ ଓ ସାନରାଣୀ କସ୍ତୁରୀ ଦେବୀ ମଜ୍ଜିଗଲେ ସୂର୍ଯ୍ୟୋପାସନାରେ।

ଏକଦା ସେହି ଉପାସନା-ମନ୍ଦିର ମଧ୍ୟରେ ଶୁଣାଗଲା ଶୂନ୍ୟବାଣୀ। 'ରାଣୀ ତୁମ ଭାଗ୍ୟରେ ସନ୍ତନ-ସମ୍ଭବା ହେବାର ଯୋଗ ନାହିଁ। ତୁମେ କେବଳ ଯଦି ମହାବୀରଙ୍କୁ ପୂଜାର୍ଚ୍ଚନାରେ ସନ୍ତୁଷ୍ଟ କରିପାରିବ, ତାହାଲେ, ହୁଏତ ତୁମେ ପୁତ୍ର ସମ୍ଭବା ହୋଇପାରିବ। ଏହି ଶୂନ୍ୟବାଣୀ ଶୁଣି ଯେତେବେଳେ କସ୍ତୁରୀ ଦେବୀଙ୍କ ମୁଖମଣ୍ଡଳ ମ୍ଳାନ ଦେଖାଗଲା; ସେତେବେଳେ ସୋମଲ ଦେବୀ ତାଙ୍କୁ ଆଶ୍ୱାସନା ଦେଇଥିଲେ। 'ଶୂନ୍ୟବାଣୀ ଯେତେବେଳେ ହୋଇଛି, ସେତେବେଳେ ମହାବୀରଙ୍କୁ ସନ୍ତୁଷ୍ଟ କରିବାରେ ଆମେ ଅବହେଳା କରିବା ନାହିଁ। ଭଗବାନ ମହାବୀର ଭକ୍ତର ମନୋବାଞ୍ଛା ନିଶ୍ଚୟ ପୂରଣ କରିବେ।'

କସ୍ତୁରୀ ଦେବୀ ମନପ୍ରାଣରେ ମହାବୀରଙ୍କୁ ଆରାଧନା କଲେ। ସତକୁ ସତ କସ୍ତୁରୀ ଦେବୀଙ୍କର ମନସ୍କାମନା ପୂର୍ଣ୍ଣ ହେଲା। ସେ ସ୍ୱାମୀ ସଙ୍ଗ ପରେ ସନ୍ତାନ ସମ୍ଭବା ହେଲେ। ଶୁଭ ସମୟରେ ଭୂମିଷ୍ଠ ହେଲା ଶିଶୁ ପୁତ୍ରଟିଏ। ଦେଖିବାକୁ ସବଳ ସିଂହ ଶାବକଟି ପରି ଅପୂର୍ବ ସୁନ୍ଦର। ଯାହାର ନାମ ଦେଇଥିଲେ ପୁରୋହିତ ଭୁବନାନନ୍ଦ ରାଜଗୁରୁ, - ନୃସିଂହ ଦେବ। ଅବଶ୍ୟ ବୋଧହୁଏ ମହାବୀର ହନୁମାନଙ୍କ କୃପାରୁ ଶିଶୁପତ୍ରଟି ଜନ୍ମଗ୍ରହଣ କରିଥିଲା ବୋଲି ତା ନିମ୍ନ ଦେଶ ଶେଷ ମେରୁହାଡ଼ଟି ଈଷତ୍ ବର୍ଦ୍ଧିତ ଅବସ୍ଥାରେ ଥିଲା। ଯେଉଁଥିପାଇଁ ପରବର୍ତ୍ତୀ କାଳରେ ସେ ଲାଙ୍ଗୁଳା ନରସିଂହ ଦେବଙ୍କ ନାମରେ ପରିଚିତ ହେଲେ। ପୁତ୍ର ସନ୍ତାନଟିର ଜନ୍ମ କୁଣ୍ଡଳି- ତିଆରି କଲାବେଳେ ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ ଜ୍ୟୋତିଷ ବିଦ୍ୟାଧର ବୃହସ୍ପତି। ପିତା ଅନଙ୍ଗ ଭୀମଦେବଙ୍କୁ ଜଣାଇ ଦେଇଥିଲେ ତାଙ୍କ ପୁତ୍ର ହେବ

ସର୍ବଗୁଣ ସମ୍ପନ୍ନ ଭୁବନ ବିଜୟୀ ବୀର। କେବଳ ସେତିକି ନୁହେଁ ବିଶ୍ୱରେ ସେ ଉଡାଇବ କୀର୍ତ୍ତିର ବିଜୟଧ୍ୱଜା। ସେ ହେବ ବୀରତ୍ୱରେ ବିକ୍ରମାଦିତ୍ୟ, ବିଦ୍ୟାରେ ବୃହସ୍ପତି, ସଂଯମରେ ସଞ୍ଜୟ, ସୌନ୍ଦର୍ଯ୍ୟରେ ସୁରପତି ଏବଂ ସକଳ ନିର୍ମାଣ କୌଶଳରେ ବିଶ୍ୱକର୍ମା। ପୁତ୍ରର ଅଲୌକିକ ଗୁଣ ସଂପର୍କରେ ଅବଗତ ହୋଇ ଅନଙ୍ଗ ଭୀମ ଦେବ ସୂର୍ଯ୍ୟଦେବଙ୍କ ଚରଣରେ ସଭକ୍ତିର ଅର୍ଘ୍ୟ ଅର୍ପଣ କଲେ।

ଶଶୀକଳା ଭଳି ଶିଶୁ ପୁତ୍ରଟି ବଢ଼ିବାକୁ ଲାଗିଲା। ଦଶବର୍ଷର ଭଉଣୀ ଚନ୍ଦ୍ରିକାକୁ ଯେମିତି ଖେଳନାଟିଏ ମିଳିଗଲା। ସେ ତାର ଶିଶୁ ସୁଲଭ ଚପଳତାକୁ ପରିତ୍ୟାଗ କରି ଶିଶୁ ନୃସିଂହଙ୍କର କାୟାସହିତ ଛାୟାଭଳି ସେବା ଯତ୍ନରେ ନିଜକୁ ହଜାଇ ଦେଲା।

x x x x x

କ୍ରମେ କୈଶୋର ଅତିକ୍ରମ କରି ଯେତେବେଳେ ଚନ୍ଦ୍ରିକା ଯୌବନରେ ପଦାର୍ପଣ କଲା - ସେତେବେଳେ ତା ପାଇଁ ସୁଯୋଗ୍ୟ ବରପାତ୍ର ସନ୍ଧାନ କରିବା ପାଇଁ ସୋମଲ ଦେବୀ ବ୍ୟସ୍ତ ହୋଇ ଉଠିଲେ। କେବଳ ସୋମଲ ଦେବୀ କାହିଁକି, ସ୍ୱୟଂ ରାଜା ଅନଙ୍ଗଭୀମ ଦେବ ଏବଂ ସାନରାଣୀ କସ୍ତୁରୀ ଦେବୀ ମଧ୍ୟ ଚିନ୍ତିତ ହେଲେ। ସର୍ବଗୁଣ ସମ୍ପନ୍ନା, ଅପୂର୍ବ ରୂପବତୀ ଚନ୍ଦ୍ରିକା ଥିଲା ରାଜ ଉଆସର ଚନ୍ଦ୍ରମା। ଯାହାର ସୌନ୍ଦର୍ଯ୍ୟର ଆଲୋକରେ ସତେଅବା ରାଜ ଉଆସ ପୁରି ରହୁଥିଲା। ସେ ଭଳି କନ୍ୟା, ଯେ କି ସମସ୍ତଙ୍କର ସ୍ନେହ ଶ୍ରଦ୍ଧାର ପାତ୍ରୀ - ତା ପାଇଁ ସୁଯୋଗ୍ୟ ବରଟିଏ ପାଇବା ସେତେ ସହଜ ନୁହେଁ। ଦୈବ ଯୋଗକୁ ମେବାର ରାଜ୍ୟର ଯୁବ ସେନାପତି ଆସିଥିଲେ ଶ୍ରୀକ୍ଷେତ୍ରରେ ମହାପ୍ରଭୁ ଜଗନ୍ନାଥଙ୍କ ଦର୍ଶନ ପାଇଁ। ସେ ସୌଭାଗ୍ୟକୁ ମହାରାଜାଙ୍କର ଅତିଥି ହୋଇଥିଲେ ଏବଂ ଅତିଥିଶାଳାରେ ଅବସ୍ଥାନ କରୁଥିଲେ। ତାଙ୍କର ଅତିଥି ଭବନ ସମ୍ମୁଖ ଉପବନରେ ସାକ୍ଷାତ୍ ହୋଇଥିଲା ରୂପସୀ ଚନ୍ଦ୍ରିକା ସହିତ। ଷୋଡ଼ଶୀ ଚନ୍ଦ୍ରିକା ଯୁବ ସେନାପତି ସେହି ବୀର ପରମାର୍ଦ୍ଦି ଦେବଙ୍କର ସୁନ୍ଦର ବଳିଷ୍ଠ ବପୁ ସଂଦର୍ଶନରେ ଆକୃଷ୍ଟ ହୋଇଥିଲେ ତାଙ୍କ ପ୍ରତି। ଅତିଥି ଭବନରେ ଗୋପନରେ ମିଳିତ ହୋଇଥିଲେ ତାଙ୍କ ସହିତ। ହୋଇଥିଲା ସେମାନଙ୍କର ହୃଦୟର ଦିଆନିଆ।

ଅନଙ୍ଗ ଭୀମଦେବଙ୍କର ଚନ୍ଦ୍ରିକା ହେଉଛନ୍ତି ପ୍ରଥମ ସନ୍ତାନ। ତା ପାଇଁ ତାଙ୍କର ହୃଦୟରେ ଥିଲା ଅମାପ ସ୍ନେହ ଶ୍ରଦ୍ଧାର ଆକର୍ଷଣ। ସେ ପ୍ରଥମେ ଚାହୁଁଥିଲେ ଗଙ୍ଗବଂଶର କୁଳରକ୍ଷା ପାଇଁ କୋଳକୁ ସନ୍ତାନଟିଏ ଯଦି ନଆସେ, ତାହେଲେ ଏହି ଚନ୍ଦ୍ରିକା ପାଇଁ ପୋଷ୍ୟ କରି ଆଣିବେ ଜାମାତାଟିଏ। ଯିଏ କି ଭବିଷ୍ୟତରେ ସିଂହାସନ ରକ୍ଷା କରିବ।

ସେ ପରମାର୍ଦ୍ଦି ଦେବଙ୍କୁ ଜାମାତା ପଣରେ ବରଣ କରି ସେନାପତି ପଦ ଅର୍ପଣ କଲେ। ମାଆ ସୋମଲ ଦେବୀ ଏକମାତ୍ର ସନ୍ତାନ ଚନ୍ଦ୍ରିକା ପାଇଁ ତାହାହିଁ ଚାହୁଁଥିଲେ। ଚନ୍ଦ୍ରିକା ଯେ ତାଙ୍କ ଆଖିର ତାରା। ରାଜ ଉଆସର ଆଲୋକ। ସେ ପରଘରକୁ ଚାଲିଗଲେ ତାଙ୍କୁ ଉଆସ ଅନ୍ଧାର ଦେଖାଯିବ।

ମହା ଧୁମ୍ ଧାମ୍‌ରେ ବୀର ପରମାର୍ଦ୍ଦି ଦେବଙ୍କ ସହିତ ଚନ୍ଦ୍ରିକାର ବିବାହ ସମ୍ପନ୍ନ ହେଲା। ପରମାର୍ଦ୍ଦି ଦେବ ହେଲେ ଅନଙ୍ଗ ଭୀମ ଦେବଙ୍କର କେବଳ ଜାମାତା ନୁହନ୍ତି, ରାଜ୍ୟର ସେନାପତି ଏବଂ ବାଳକ ନରସିଂହଦେବଙ୍କର ଯୁଦ୍ଧ ବିଦ୍ୟାର ଶିକ୍ଷାଗୁରୁ। ବୟୋ ବୃଦ୍ଧି ସହିତ ଅନଙ୍ଗ ଭୀମଦେବଙ୍କ ଉପସ୍ଥିତିରେ ପରମାର୍ଦ୍ଦି ଦେବଙ୍କ ପରାମର୍ଶରେ ଯୁଦ୍ଧ ବିଦ୍ୟାର ପରୀକ୍ଷା ଦେଇଥିଲେ ନରସିଂହଦେବ। ପରୀକ୍ଷାରେ ରାଜ୍ୟର ବଳଶାଳୀ ମଲ୍ଲମାନଙ୍କୁ ସେ ଅକ୍ଳେଶରେ ମଲ୍ଲ ଯୁଦ୍ଧରେ କରି ପାରିଥିଲେ ଧରାଶାୟୀ। ତରବାରୀ ଚାଳନାରେ ବଛା ବଛା ବୀର ଯୋଦ୍ଧା ପରାଭୂତ ହୋଇଥିଲେ ତାଙ୍କଠାରୁ। ଅଜେୟ ଯୋଦ୍ଧା ଭାବରେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ନରସିଂହ ଦେବ।

ସମୟ ଓ ଜୁଆର କାହାରିକୁ ଅପେକ୍ଷା କରେ ନାହିଁ। ସମୟର ସ୍ରୋତ ବହିଯାଏ। ଜୀବନରେ କେତେ ଜୁଆର ଆସେ ଭଟ୍ଟା ମଧ୍ୟ ପଡ଼ିଯାଏ। ରାଜା ଅନଙ୍ଗ ଭୀମ ଦେବ ବାର୍ଦ୍ଧକ୍ୟ ଜନିତ ଅସୁସ୍ଥତା ଅନୁଭବ କରି ପୁତ୍ର ନରସିଂହଙ୍କ ହସ୍ତରେ ରାଜ୍ୟଭାର ଅର୍ପଣ କରିବା ପାଇଁ, ଜାମାତା ପରମାର୍ଦ୍ଦି ଦେବଙ୍କ ସହିତ ପରାମର୍ଶ କଲେ। ପୁରୋହିତଙ୍କୁ ଡାକି ଶୁଭଦିନ ନିର୍ଦ୍ଧାରଣ କଲେ ରାଜ୍ୟଭାର ଅର୍ପଣ କରିବା ପାଇଁ।

ଆମନ୍ତ୍ରଣ କଲେ ରାଜ୍ୟର ଅଧସ୍ତନ ରାଜନ୍ୟବର୍ଗଙ୍କୁ। ଆମନ୍ତ୍ରଣ କଲେ ରାଜ୍ୟ ବାହାରର ମିତ୍ର ରାଜନ୍ୟବର୍ଗଙ୍କୁ। ସିଂହାସନାରୋହଣ ପର୍ବରେ ଯୋଗ ଦେଲେ ସେମାନଙ୍କ ସହିତ ପାତ୍ର ମନ୍ତ୍ରୀ, ପ୍ରଜାପାଟକ। ମହାଆଡମ୍ବର ଆୟୋଜନରେ ଅଭିଷେକ ଉତ୍ସବ ଆରମ୍ଭ ହେବା ପୂର୍ବରୁ ଅତିଥିମାନଙ୍କ ପାଇଁ ନିର୍ମିତ ହେଲା ଅତିଥି ଶାଳା / ପାକଶାଳା / ତୋରଣ ଓ ଆଲୋକମାଳାରେ ସୁସଜ୍ଜିତ ହେଲା ରାଜପ୍ରାସାଦ।

ଉତ୍ସବର ମୁଖ୍ୟ ଦାୟିତ୍ୱ ଅର୍ପିତ ହେଲା ଜାମାତା ସେନାପତି ପରମାର୍ଦ୍ଦି ଦେବଙ୍କ ଉପରେ। ଝିଅ ଚନ୍ଦ୍ରିକା ଉପରେ ମହିଳା ଅତିଥିମାନଙ୍କର ପରିଚର୍ଯ୍ୟାର ଭାର ପଡ଼ିଥିଲା। ସୁବର୍ଣ୍ଣ କଳସରେ ପାଣି ଆଣି ନିରସିଂହ ଦେବଙ୍କ ମସ୍ତକ ପ୍ରକ୍ଷାଳନ ଉତ୍ସବ ସମାପନ ହେଲା। ହୀରା, ନୀଳା, ମୋତି ମାଣିକ୍ୟ ଖଚିତ ସୁବର୍ଣ୍ଣ ମୁକୁଟ, ରାଜ ଦବାରରେ ସଭାସଦ୍‌ବର୍ଗଙ୍କ ସମାହାରରେ ସ୍ୱୟଂ ମହାରାଜା ଅନଙ୍ଗ ଭୀମଦେବ, ପୁତ୍ର ନରସିଂହ

ଦେବଙ୍କ ମସ୍ତକରେ ସ୍ୱହସ୍ତରେ ପିନ୍ଧାଇ ଦେଲେ ମୁକୁଟ। ବିଭିନ୍ନ ବାଦ୍ୟ ସହିତ ତୂର୍ଯ୍ୟନାଦ ହେଲା। ସିଂହାସନରେ ଦକ୍ଷିଣ ପାର୍ଶ୍ୱରେ ରାଜାମାତା ମହାରାଣୀ ସୋମଳ ଦେବୀ ଏବଂ କସ୍ତୁରୀ ଦେବୀ ନିଜ ଆସନରୁ ଉଠି ପୁତ୍ର ନରସିଂହଙ୍କ ଗଳାରେ ପୁଷ୍ପମାଳା ପିନ୍ଧାଇଦେଲେ ଏବଂ ବାମ ପାର୍ଶ୍ୱରେ ମହାରାଜା ଅନଙ୍ଗ ଭୀମଦେବ ମୁକୁଟ ପିନ୍ଧାଇ ଦେଇ ଆସି ଆସନ ଅଳଙ୍କୃତ କରିଥିଲେ। ଆମନ୍ତ୍ରିତ ଅତିଥି ବୃନ୍ଦ ସମ୍ମୁଖ ଭାଗର ଉଭୟ ପାର୍ଶ୍ୱରେ ଉଦ୍ଦିଷ୍ଟ ଆସନରେ ଉପବେଶନ କରିଥିଲେ। ପୁରୋହିତ ବେଦ-ପାଠ କରିଥିଲେ। ରୂପସୀ ମହିଳାମାନେ ହସ୍ତରେ ବନ୍ଦାପନା ଥାଳି ଧରି ଧୂପଦୀପରେ ବନ୍ଦାପନା କରିଥିଲେ।

ଏହି ଅବସରରେ ନରସିଂହ ଦେବଙ୍କର ଭଉଣୀ ଚନ୍ଦ୍ରିକାଙ୍କ ସହିତ ଆସିଥିବା ଅଧସ୍ତନ ଶିଶୁପାଳ ଗଡ଼ର ରାଜାଙ୍କର ଅପୂର୍ବ ରୂପସୀ କନ୍ୟା ମାୟାଦେବୀଙ୍କ ସହିତ ନରସିଂହ ଦେବଙ୍କର ଚକ୍ଷୁର ମିଳନ ଘଟିଥିଲା। ତାହାରି ଭିତରେ ଦୁଇଟି ହୃଦୟର ଏକ ଚୁମ୍ବକୀୟ ଆକର୍ଷଣ ଥିଲା। ପରବର୍ତ୍ତୀ ସମୟରେ ବଡ଼ ଭଉଣୀ ଚନ୍ଦ୍ରିକା ସାଜିଥିଲେ ଉଭୟଙ୍କ ମଧ୍ୟରେ ସମ୍ପର୍କର ସେତୁ। ଏହି ମାୟା ଆସିଥିଲେ ପିତାଙ୍କ ସହିତ ସିଂହାସନାରୋହଣ ଉତ୍ସବରେ ଯୋଗ ଦେବାପାଇଁ। ମାୟାଙ୍କର ରୂପ ଲାବଣ୍ୟରେ ମୋହିତ ହୋଇ ମନୋନୀତ କରିଥିଲେ ଚନ୍ଦ୍ରିକା ସାନଭାଇଙ୍କ ହୃଦୟ ସିଂହାସନ ମଣ୍ଡନ କରିବା ପାଇଁ। ସେଦିନ ସିଂହାସନରୋହଣ ପର୍ବରେ ବନ୍ଦାପନା ବେଳେ ସେ ଲକ୍ଷ୍ୟ କରିଥିଲେ ଉଭୟଙ୍କର ଆଖିରେ ଭାବର ଆଦାନପ୍ରଦାନ। ସେହି ମାୟା ସାଜିଥିଲେ ମହାରାଜା ଲାଙ୍ଗୁଳା ନରସିଂହ ଦେବଙ୍କର ହୃଦୟର ରାଣୀ। ଅପେକ୍ଷା କରିଥିଲେ କେବେ ମହାରାଜା ତାଙ୍କୁ ଜୀବନ ସଙ୍ଗିନୀ କରି ନେଇ ଯିବେ ସେହି ସମୟକୁ। ସମୟର ସ୍ରୋତ ବହି ଚାଲିଛି ଅବରହ। କେତେ ଘଟଣାର ଇତିହାସ ସେହି ସୁଅରେ ଭାସି ଚାଲିଛି।

●

# (୩)

ମାୟା ବୁଲୁଛନ୍ତି ଉଦ୍ୟାନ ବାଟିକାରେ। ସାଥିରେ ଅଛନ୍ତି ସହଚରୀଦ୍ୱୟ। ହେମଲତା ଓ ଅପରୂପା। ସୂର୍ଯ୍ୟଦେବ ଅସ୍ତାଚଳଗାମୀ। ବର୍ଣ୍ଣମୟ ଅସ୍ତାଚଳର ଆକାଶ। ଲୋହିତ ସ୍ୱର୍ଣ୍ଣାଭ ଆଭା ବିଂଚି ପଡିଛି ବନଭୂଇଁ, ଜନପଦ ନଗରୀ ଉପରେ। ସୂର୍ଯ୍ୟଙ୍କର ମୁକୁଟ ଝଟକୁଛି ଦୂର ବରୁଣେଇ ମଥାନରେ। ଧାଡ଼ି ଧାଡ଼ି ନୀଡ଼ଫେରନ୍ତା ପକ୍ଷୀଗୁଡ଼ିକ ଉଡ଼ି ଯାଉଛନ୍ତି ଆକାଶରେ। ବିଦାୟୀ ସୂର୍ଯ୍ୟର ମମତା ଅବିରରେ ଝଟକୁଛି ସେମାନଙ୍କର ଡ଼େଣାଗୁଡ଼ିକ। ବିଦାୟୀ ସୂର୍ଯ୍ୟଙ୍କର ସେହି ଅବିରରୁ ସତେ ଅବା ମେଞ୍ଚାଏ ବିଞ୍ଚି ପଡିଛି ଉଦ୍ୟାନ ବାଟିକାର ବୃକ୍ଷଲତା ଉପରେ। ଆଉ ଲାଗିଛି ଭ୍ରମଣ କରୁଥିବା ତିନି ସଖୀଙ୍କ ଦେହମନରେ। ସେମାନେ ବି ଉପଭୋଗ କରୁଛନ୍ତି ପାଲଟୁଥିବା ପ୍ରକୃତିର ମନୋରମ ବର୍ଣ୍ଣଛଟାକୁ।

ଯୌବନର ମୂର୍ତ୍ତିମନ୍ତ ବିଗ୍ରହ ମାୟା ସତେ ଅବା ରତି ସୁନ୍ଦରୀ। ସତେ ଅବା ତାଙ୍କ ଦେହରେ ଯାଦୁକାରୀ ମାୟା ଲେପି ହୋଇଯାଇଛି। ଯେଉଁଥି ପାଇଁ ମନୋରମ ପ୍ରକୃତିର ସୌନ୍ଦର୍ଯ୍ୟ ସହିତ ପ୍ରତିଯୋଗିତା କରୁଛନ୍ତି ସେ। ସ୍ୱର୍ଣ୍ଣାଭ ଗୋଧୂଳିର ଅପୂର୍ବ ପରିବେଶ ଏହି ତିନି ସଖୀଙ୍କୁ ଆମୋଦିତ କରୁଛି।

ବସନ୍ତର ମଳୟ ସ୍ପର୍ଶରେ ଆମ୍ର ମୁକୁଳର ସୌରଭ ସେମାନଙ୍କର ଦେହମନକୁ ଛୁଇଁ ଯାଉଛି। କୁସୁମିତ କୁଞ୍ଜ ମଧ୍ୟରେ ଧୀରେ ଧୀରେ ସେମାନେ ପଦ ଚାଳନ କରୁଛନ୍ତି। ଆଗରେ ଗୁଣୁ ଗୁଣୁ ଗୀତ ଗାଇ ଆଗେଇ ଚାଲିଛନ୍ତି ମାୟା। ପଛରେ ଅନୁଗାମୀ ସଖୀଦ୍ୱୟ।

ଆଜି ମାୟା ପ୍ରାଣରେ ବସନ୍ତର ଉଦ୍‌ବେଳନ। ଫୁଲ ପରି ସେ ସୌନ୍ଦର୍ଯ୍ୟର ପସରା ମେଲି ଅପେକ୍ଷା କରିଛନ୍ତି ପ୍ରାଣପ୍ରିୟ ପ୍ରଜାପତିଟିର ପଥକୁ। ସେ ପ୍ରଜାପତି ଆଉ କେହି ନୁହଁନ୍ତି ପ୍ରିୟତମ ନରସିଂହ ଦେବ। ସେ ଦିନ କାଶ୍ମୀର ଯାତ୍ରା ପୂର୍ବରୁ ସେ ଅତିଥି ହୋଇ ଆସିଥିଲେ ଶିଶୁପାଳଗଡ଼କୁ। ବିଦାୟ ଲଗ୍ନରେ ଏହି ଆମ୍ର କାନନରେ ଏକାନ୍ତରେ ତାଙ୍କୁ ସାକ୍ଷାତ୍ କରିଥିଲେ। ନିବିଡ଼ ଆଲିଙ୍ଗନରେ ନିଜର ଛାତି ଉପରକୁ ଭିଡ଼ି ନେଇ ପ୍ରୀତିର

ଚୁମ୍ବନ ଆଙ୍କି ଦେଇଥିଲେ ମାୟାଙ୍କର ଗଣ୍ଡଦେଶରେ। ତନୁମନରେ ମାୟାଙ୍କର ଜାଗି ଉଠିଥିଲା ଶିହରଣ। କମ୍ପିତ କଣ୍ଠରେ କହିଥିଲେ, କେତେଦିନ ଏମିତି ଲୁଚି ଛପି ଲୋଟି ପଡୁଥିବି ତୁମରି ଛାତିରେ। ଆଉ ନୁହେଁ....

ନିବିଡ଼ ବାହୁ ବନ୍ଧନରୁ ମାୟାଙ୍କୁ ମୁକ୍ତ କରି ନରସିଂହ ଦେବ ଦୁଇ ପାପୁଲିରେ ଟେକି ଧରିଥିଲେ ମାୟାଙ୍କର ମୁଖମଣ୍ଡଳକୁ। ତାଙ୍କ ଆଖିରେ ଆଖି ରଖି କହିଥିଲେ - କଥା ଦେଉଛି, କାଶ୍ମୀର ଜୟ କରି ଫେରିଲାପରେ ନେଇଯିବି ପ୍ରାଣପ୍ରିୟା- ପାଟରାଣୀ କରି। ଆନନ୍ଦ ଆବେଗରେ ନରସିଂହ ଦେବଙ୍କ ପ୍ରଶସ୍ତ ଛାତି ଉପରେ ଲୋଟି ପଡ଼ିଥିଲେ ମାୟା। ତାଙ୍କ ଛାତିରେ ମୁଖ ମଣ୍ଡଳକୁ ଘଷୁ ଘଷୁ ଆବେଗରେ କହିଥିଲେ, କାଶ୍ମୀର ଜୟ କରି ସେଠାରୁ ମୋ ପାଇଁ ନିଶ୍ଚୟ ନେଇ ଆସିବ ସୁନ୍ଦର ଉପଢ଼ୌକନଟିଏ। ଦେଖି ନାହିଁ। ଶୁଣିଛି, କାଶ୍ମୀରର ଲଳନାମାନେ ଅପୂର୍ବ ସୁନ୍ଦରୀ। କାହାରି ପ୍ରେମରେ ଆଉ ସେଠାରେ ଅଟକି ଯିବ ନାହିଁଟି ? ଯେମିତି, ତୁମର ଭଉଣୀ ପ୍ରେମରେ ଅଟକି ଯାଇଛନ୍ତି ମେବାର ରାଜ୍ୟର ଯୁବ ସେନାପତି। ସଅଳ କିନ୍ତୁ ଫେରିବ। ମୋ ପକ୍ଷରେ ପୀଡ଼ା ଦିଏ ଦୀର୍ଘ ଦିନର ପ୍ରତୀକ୍ଷା। ଚାତକ ପରି ତୁମରି ଫେରିବା ପଥକୁ ଅନାଇ ରହିଥିବି ମୁଁ। ମାୟାଙ୍କର ମୁଣ୍ଡର କୃଷ୍ଣ କୁନ୍ତଳକୁ ସାଉଁଳି ସାଉଁଳି କହିଥିଲେ ନରସିଂହ ଦେବ - ଯେତେ ସଅଳ ଯୁଦ୍ଧ ସରିବ ସେତେ ସଅଳ ଫେରି ଆସିବି ଏକ ମହାର୍ଘ ଉପଢ଼ୌକନ କାଶ୍ମୀର ବିଜୟର ସ୍ମାରକୀ ନେଇ।

ଏହାପରେ ମାୟାଙ୍କର ମୁଖ ମଣ୍ଡଳକୁ ଦୁଇ ପାପୁଲିରେ ନେଇ ଟେକି ଧରି ପୁଣି ତାଙ୍କ ଗୋଲାପୀ ଅଧରରେ ନିଜର ଉଷ୍ମ ଅଧରକୁ ଦବାଇ ଦେଇଥିଲେ ନରସିଂହ ଦେବ। ଦୁଇଟି ଶରୀର କମ୍ପି ଉଠିଥିଲା ଆନନ୍ଦର ଆତିଶଯ୍ୟରେ। ମାୟାଙ୍କର ନୀଳ ନୟନ ଦୁଇଟି ମୁଦି ହୋଇ ଯାଇଥିଲା। ହେଲେ, କାହାରି ସଂଯମର ସେତୁବନ୍ଧ ଭୁଷୁଡି ପଡ଼ି ନ ଥିଲା।

ସେ ଦିନର ସେହି ମଧୁର ମିଳନ କଥା ଭାବି ଭାବାବେଶରେ ଆଜି ନିଜକୁ ହଜାଇ ଦେଇଥିଲେ ମାୟା। ଫେରିବେ କାଶ୍ମୀର ବିଜୟ ଯାତ୍ରା ସମାପ୍ତ କରି ପ୍ରିୟତମ। ଏହି ପଥପ୍ରାନ୍ତ ଉପବନରୁ ପ୍ରାଣ ପୁରାଇ ଦେଖିବେ ସେ ଯୁଦ୍ଧ ହସ୍ତୀ ଉପରୁ ଫେରୁଥିବା ପ୍ରିୟତମକୁ। ଆଖିରେ ଆଖି ମିଳାଇ ଜଣାଇବେ ସନ୍ତୁଷ୍ଟ ସମ୍ବର୍ଦ୍ଧନା।

ଆରେ ମହାରାଜା ଯଦି ଆମ ସଖୀକୁ ଦେଖି ଅଟକି ଯାଆନ୍ତି ? କହିଲେ ହେମଲତା। ଅପରୂପା କହିଲା - ଯଦି ଅଟକିବେ- ସେ ହାତୀରେ ଆମ କ୍ଷେମାଙ୍କୁ ଟେକି ନେଇଯିବେ ଚନ୍ଦ୍ରଭାଗାକୁ। ମନ ଆନନ୍ଦରେ ସେହିଠାରେ ପାଳିବେ ବିଜୟୋତ୍ସବ। ଏକଥା ଶୁଣି ମାୟା

ଲାଜେଇ ଯାଇ କହିଲେ, ଧେତ୍ ଏ ସବୁ କ'ଣ କହୁଛୁ ଅଲାଜୁକୀ। ଜାଣିନୁ ମହାରାଜା ବଡ଼ ସଂଯମୀ। ତାଙ୍କ ଛାତିରେ ମୁଁ ମୁଣ୍ଡରଖି ପରୀକ୍ଷା କରିଛି ତାଙ୍କର ଅନ୍ତରର ଆତ୍ମସଂଯମକୁ। ଦ୍ୱିତୀୟତଃ ମୁଁ କ'ଣ ଖେଳନା ହୋଇଛି, ଯେ ସେ ମୋତେ ନେଇ ତାଙ୍କ ଖେଳ ଆରମ୍ଭ କରିବେ ?

ଏତିକି ବେଳେ ଅପରୂପା ଦେଖାଇ ଦେଇ କହିଲା ଏଇ ଦେଖ, ଦେଖ ଶୋଭାଯାତ୍ରା ପାଖେଇ ଆସିଲାଣି। ସମ୍ମୁଖରେ ଚାଲିଛି ରାଜାଙ୍କର ପାଟହସ୍ତୀ। ହେମଲତା କହିଲେ, ଆରେ ପାଟହସ୍ତୀ ଉପରେ ମହାରାଜାଙ୍କ ପାଖକୁ ଲାଗି ବସିଛନ୍ତି - ଯୌବନବତୀ ଅପୂର୍ବ ସୁନ୍ଦରୀ ନାରୀଟିଏ। ଇଏ ପୁଣି କିଏ ?

ମାୟା ଏକ ଧ୍ୟାନରେ ଚାହିଁ ରହିଥିଲେ ପ୍ରିୟତମଙ୍କ ହସ୍ତୀ ଆଡକୁ। ସଖୀଦ୍ୱୟଙ୍କର କଥୋପକଥନ ଶୁଣି ଚମକି ଉଠିଲେ। ଦୃଷ୍ଟି ପଡିଲା ହସ୍ତୀ ପୃଷ୍ଠରେ ମହାରାଜାଙ୍କ ବାମ ପାର୍ଶ୍ୱରେ ବସିଛନ୍ତି - ଅପୂର୍ବ ସୁନ୍ଦରୀ ମହିଳାଜଣକ। ଅସ୍ତାଚଳଗାମୀ ସୂର୍ଯ୍ୟଙ୍କର ଲୋହିତ ଆଭାରେ ଝଟକି ଦିଶୁଛି ତାଙ୍କର ରୂପ ସମ୍ଭାର।

କିଏ ସେହି ସୌଭାଗ୍ୟଶାଳିନୀ ରମଣୀ! ଅପରୂପା କଣ୍ଠରେ ବିସ୍ମୟ। ହେମଲତା କହିଲେ, ଇଏ ନିଶ୍ଚୟ କାଶ୍ମୀର ରାଜଜେମା। ଅପରୂପା କହିଲେ - ସତେ ? ଆଖିକୁ ମୁଁ ବିଶ୍ୱାସ କରି ପାରୁନାହିଁ। ଆମ ରାଜଜେମା ଅବସ୍ଥା କ'ଣ ହେବ? ସେତେବେଳକୁ ମାୟାଙ୍କ ଆଖିରେ ଅନ୍ଧାର ଯେମିତି ଘୋଟି ଆସୁଛି। ବିଷର ଜ୍ୱଳନ ତାଙ୍କ ଶରୀରର ପ୍ରତ୍ୟେକ କୋଷରେ ଯେମିତି ସଞ୍ଚରି ଯାଉଛି।

ଶୋଭାଯାତ୍ରା ପାଖେଇ ଆସୁଛି। ମୂର୍ଚ୍ଛିତା ହୋଇ ଲୋଟି ପଡ଼ିଛନ୍ତି ମାୟା। ତଳେ କଚାଡ଼ି ପଡିବା ପୂର୍ବରୁ ହେମଲତା କାନ୍ଧରେ ଭରା ଦେଇଥିଲେ ସେ। ତାଙ୍କର ମୃଣାଳ-ନିନ୍ଦି ବାହୁକୁ ଧରି ନେଇଥିଲେ ହେମଲତା।

ଆଶା ଥିଲା, ଅତି ନିକଟରୁ ସେ ଦେଖିବେ ସମରକ୍ଳାନ୍ତ ଯୁଦ୍ଧ ବିଜୟୀ ପ୍ରିୟତମଙ୍କୁ। ହେଲେ, ଏ କ'ଣ ହେଲା ? ଏହି କ'ଣ ମହାରାଜାଙ୍କର ତାଙ୍କ ପାଇଁ ମହାର୍ଘ ଉପଢ୍ଢୌକନ ?

ତାଙ୍କ ଅନ୍ତରରେ ହାତୁଡ଼ି ପିଟୁଥିଲା; ଶୁଭୁଥିବା ଜୟଧ୍ୱନି, 'ଜୟ ନରସିଂହ ଦେବଙ୍କ ଜୟ'। କାଚଘର ପରି ଆଶାର ସଉଧଟି ଚୂର୍ଣ୍ଣବିଚୂର୍ଣ୍ଣ ହୋଇଗଲା କ୍ଷଣିକରେ। ମିଳେଇ ଗଲା ପାଣି ଫୋଟକା ଭଳି ସବୁ ସ୍ୱପ୍ନ। ଦୁଇ କଡ଼ରେ ଦୁଇ ସଖୀ ସଯତ୍ନରେ ସହାୟତାଦେଇ ନେଇଗଲେ ତାଙ୍କୁ ଅଦୂରରେ ଥିବା ଅନ୍ତପୁରକୁ।

ଅଳ୍ପସମୟ ପୂର୍ବରୁ ରଙ୍ଗୀନ ସ୍ୱପ୍ନରେ ଯିଏ ଥିଲା ବିଭୋର-ପରିପୂର୍ଣ୍ଣା, ସେ ଏବେ ରିକ୍ତ-ଶୂନ୍ୟା। ବୋଧହୁଏ ଏହା ଥିଲା ନିୟତିର ପରିହାସ।

ଦ୍ୱିତୀୟ ଦାରା (ପତ୍ନୀ) ଗ୍ରହଣ କରିବାର ଇଚ୍ଛା ନଥିଲା ମହାରାଜାଙ୍କର। ଏହି କାଶ୍ମୀର ରାଜଜେମା ଅପୂର୍ବ ସୁନ୍ଦରୀ ଅନୁସୂୟା ସେଦିନ ନରସିଂହ ଦେବଙ୍କର ଯୁଦ୍ଧ କୌଶଳ ଦେଖୁଥିଲେ ଦୁର୍ଗ ଉପରୁ। ଦେଖୁଥିଲେ କେମିତି ବଳିଷ୍ଠ ବାହୁ, ବିଶାଳ ବକ୍ଷ ଓ ସୁନ୍ଦର ଶରୀର ସୌଷ୍ଠବ ନରସିଂହ ଦେବଙ୍କର। ପିତୃରାଜ୍ୟ ଉପରେ ଆକ୍ରମଣ କରିବାକୁ ଆସିଛନ୍ତି - ପିତାଙ୍କର ଶତ୍ରୁ ସେ। ହେଲେ ନାରୀମାନେ ପୁରୁଷର ବୀରତ୍ୱ ପ୍ରତି ସାଧାରଣତଃ ଆକୃଷ୍ଟ ହୋଇଥାନ୍ତି। ପ୍ରଲୁବ୍ଧ ହୋଇଥାନ୍ତି ପୌରୁଷ ପ୍ରତି। ତାହାହିଁ ଘଟିଥିଲା କାଶ୍ମୀର ରାଜଜେମାଙ୍କର। ପରାଜିତ ପିତାଙ୍କ ନିର୍ଦ୍ଦେଶରେ ସେ ସିଂହଦ୍ୱାରରୁ ବରଣମାଳା ପିନ୍ଧାଇ ପାଛୋଟି ନେଇଥିଲେ ନରସିଂହ ଦେବଙ୍କୁ। ଦୈବ ଯୋଗକୁ ଯୁଦ୍ଧରେ ପରାଜିତ ପିତା - ପ୍ରଭୂତ ଧନରତ୍ନ ସହ ସମର୍ପି ଦେବାକୁ ମନସ୍ଥ କଲେ ତାଙ୍କର ଅଲିଅଳୀ କନ୍ୟାଙ୍କୁ ଏହି ବୀରପୁରୁଷ ନରସିଂହ ଦେବଙ୍କ ହସ୍ତରେ।

ଏ କ୍ଷେତ୍ରରେ ନିୟତି ଯେମିତି କୋମଳ ଦୃଷ୍ଟି ଢ଼ାଳି ଦେଇଛି - କାଶ୍ମୀର ରାଜଜେମାଙ୍କ ଉପରେ।



# (୪)

ଚନ୍ଦ୍ରଭାଗାର ଉପକଣ୍ଠ। ଯେଉଁଠି ସାଗର ସହିତ ମିଶିଛି ଚନ୍ଦ୍ରଭାଗା। ମିଳନର ମୁହାଁଣ ମୁହଁ। ଦୁର୍ଗ ବାରବାଟୀକୁ ବାଦ ଦେଲେ ଏଠାରେ ମଧ୍ୟ ଏକ ସୁନ୍ଦର ପ୍ରସାଦ ରହିଛି ନରସିଂହ ଦେବଙ୍କର। ସମର କ୍ଳାନ୍ତ ହୋଇ ଫେରିଲା ପରେ ଏହିଠାରେ ହିଁ ସେ ଅବସ୍ଥାନ କରୁଥିଲେ ଅବସର ବିନୋଦନ ପାଇଁ। ପୂର୍ବରୁ ଏହି ସ୍ଥାନ ମିତ୍ରବନ ନାମରେ ପରିଚିତ ଥିଲା। ଏଠାକାର ଏହି ପ୍ରାସାଦକୁ ଏକ କ୍ଷୁଦ୍ରଦୁର୍ଗ ବି ବୋଲା ଯାଇପାରେ। ସେହି ଦୁର୍ଗର ସିଂହ ଦ୍ୱାରରେ ସେ ଦିନ ଅଟକି ଥିଲା ନରସିଂହ ଦେବଙ୍କ ଶୋଭାଯାତ୍ରା। ପାଟହସ୍ତୀ ଉପରୁ ମହାରାଜାଙ୍କ ସହିତ ଅବତରଣ କରିଥିଲେ ଅପୂର୍ବ ସୁନ୍ଦରୀ କାଶ୍ମୀର ରାଜଜେମା ଅନୁସୂୟା। କାଶ୍ମୀର ରାଜ୍ୟ ଜୟ କଲାପରେ କାଶ୍ମୀରର ରାଜା ପ୍ରଭୁତ ଧନରତ୍ନ ସହ ସମର୍ପି ଦେଇଥିଲେ ତାଙ୍କର ଅଲିଅଳୀ କନ୍ୟା ଏହି ଅନୁସୂୟାକୁ। ବୈଦିକରୀତିରେ ସେଠାରେ ଏ ବିବାହ ସମ୍ପନ୍ନ ହୋଇଥିଲା। ବୋଧହୁଏ ନରସିଂହ ଦେବ ଚାହିଁନଥିଲେ ମାୟାଙ୍କର ସହଚରୀ ହେବା ପାଇଁ ଏପରି ଅପୂର୍ବ ସୁନ୍ଦରୀ ଅନୁସୂୟାଙ୍କୁ ସେ ମହାର୍ଘ ଉପଢୌକନ ଭାବରେ ଭେଟି ଦେବେ ତାଙ୍କୁ।

ଆଜି ମହୋଦଧି ଉପକଣ୍ଠ ଚନ୍ଦ୍ରଭାଗାର ମୁହାଣ ସନ୍ନିକଟରେ ଏହି ପ୍ରାସାଦଟି ହୋଇ ଉଠିଛି ଉତ୍ସବ ମୁଖରିତ। ଅପୂର୍ବ ସାଜସଜ୍ଜାରେ ଝଟକୁଛି ଯେମିତି। ମର୍ତ୍ତ୍ୟର ଇନ୍ଦ୍ରଭୁବନ। ବାସର ରଜନୀରେ ରତିକ୍ଳାନ୍ତା ଅନୁସୂୟା କେତେବେଳେ ନିଦ୍ରାଦେବୀଙ୍କ କୋଳରେ ଢ଼ଳି ପଡ଼ିଛନ୍ତି ଦୁଗ୍ଧ ଫେନିଳ ଶଯ୍ୟାରେ। ସେତେବେଳେ, ଲାଙ୍ଗୁଳା ନରସିଂହ ଦେବଙ୍କ ଆଖିକୁ ନିଦ ଆସୁନାହିଁ। ଭାବୁଛନ୍ତି ପ୍ରାଣପ୍ରିୟା ମାୟାଙ୍କ କଥା। ମାୟାଙ୍କୁ ସେ କଥା ଦେଇଥିଲେ କାଶ୍ମୀର ଜୟ କରି ତାଙ୍କ ପାଇଁ ନେଇ ଆସିବେ ମହାର୍ଘ୍ୟ ଉପଢୌକନ। ହେଲେ ସେହି ମାୟା, ଆଜି ରକ୍ତମାଂସ ଧାରଣ କରିଥିବା ଜଣେ ନାରୀ ହୋଇ ଅନ୍ୟ କେହି ନାରୀର ତାର ଭଲପାଇବା ଉପରେ ଭାଗ ବସାଇବାକୁ ସହ୍ୟ କରିପାରିବ ତ? ମାୟାଙ୍କୁ କ'ଣ

କହି ସେ ପ୍ରବୋଧନା ଦେବେ । ପ୍ରାଣର ମାୟା ପ୍ରତି ଏହା ତାଙ୍କର ପ୍ରେମ ନା ପ୍ରତାରଣା ? ରାତ୍ରି ପାହି ଆସୁଛି । ପାହାନ୍ତି ତାରାଗୁଡ଼ିକ ଫିକା ହୋଇ ଆସିଲେଣି । ଆକାଶଟା ଫର୍ଚ୍ଚା ଦେଖାଯାଉଛି । ରାତିଚର ପକ୍ଷୀଗୁଡ଼ିକ ଫେରୁଛନ୍ତି ନୀଡ଼କୁ । ବାସର ଗୃହରେ ଜଳୁଥିବା ଦୀପଶିଖାର ଆଲୋକକୁ ଉଷାର ଆଲୋକ ହଜାଇ ଦେବାକୁ ଚେଷ୍ଟା କରୁଛି । କେତେବେଳରୁ ଶଯ୍ୟା ତ୍ୟାଗ କରି ବାତାୟନ ନିକଟରେ ଛିଡ଼ା ହୋଇ ବାହାରର ଶାନ୍ତ ସ୍ନିଗ୍ଧ ପ୍ରକୃତିର ରମ୍ୟ ପରିବେଶକୁ ଉପଭୋଗ କରୁଛନ୍ତି - ତାଙ୍କରି ବିକ୍ଷୁବ୍ଧ ହୃଦୟକୁ ଶାନ୍ତ କରିବା ପାଇଁ । ବେଳେବେଳେ ମାୟାର କମନୀୟ ମୁଖ ମଣ୍ଡଳ ମାୟା ସୃଷ୍ଟି କରୁଛି ତାଙ୍କ ହୃଦୟ ଭିତରେ । ପଛକୁ ଫେରି ତୁଳୀତଳ୍ପ ଶଯ୍ୟା ଉପରକୁ ଅନେଇ ଅନୁସୂୟାର ଶାନ୍ତସ୍ନିଗ୍ଧ ମୁଖମଣ୍ଡଳ ଆଡକୁ ଚାହିଁ ଅଣ୍ଡାଳି ହେଉଛନ୍ତି ମାୟାଙ୍କ ମୁଖମଣ୍ଡଳ । ଧୀରେ ଧୀରେ ହଜି ଯାଉଛନ୍ତି ଅତୀତର ଅମାନିଆ ମଧୁର ସ୍ମୃତିଗୁଡ଼ିକ ଭିତରେ । କିଏ ଯେମିତି ତାଙ୍କୁ ଟାଣି ନେଇ ଯାଉଛି ସେ ଦିନର ଗୋଧୂଳି ଲଗ୍ନର ସେହି ଆମ୍ର କୁଞ୍ଜର ବେଦୀକା ନିକଟକୁ । ଯେଉଁଠି ସେ ମିଳିତ ହୋଇଥିଲେ ପ୍ରାଣପ୍ରିୟା ମାୟା ସହିତ । ଯାହାଙ୍କୁ ବକ୍ଷରେ ଭିଡ଼ିଧରି ତାଙ୍କର ଜବାନିନ୍ଦି ଅଧରରେ ଆଙ୍କି ଦେଇଥିଲେ ପ୍ରେମଚୁମ୍ବନ । ଆଉ ମୃଣାଳନିନ୍ଦୀ ବାହୁ ଯୁଗଳରେ ତାଙ୍କର ଗଳାକୁ ବେଷ୍ଟନ କରି ଥିଲେ ମାୟା ।

ନରସିଂହ ଦେବ ତାଙ୍କୁ କଥା ଦେଇଥିଲେ, ମୁଁ କାଶ୍ମୀର ଜୟ କରି ଫେରିଲା ପରେ ତୁମକୁ ପାଟରାଣୀ କରି ନେଇଯିବି ଅନ୍ତପୁରକୁ । ମାୟା କହିଥିଲେ - ସେ ଦିନଟି କେବେ ? ନିରସିଂହ ଦେବ କହିଥିଲେ, ସେ ଦିନଟି ଆସନ୍ନ ପ୍ରାୟ । ପ୍ରେମାତିଶଯ୍ୟରେ ଲତାଟିଏ ବୃକ୍ଷରେ ଗୁଡ଼ାଇ ହେଲା ଭଳି ମହାରାଜାଙ୍କ ଶରୀରରେ ଗୁଡାଇ ଯାଇଥିଲେ ମାୟା । ମହାରାଜା କହିଥିଲେ, ପଦ୍ମ ପରାଗର ଗନ୍ଧ ଭଳି ତୁମ ଶରୀରର ସୁଗନ୍ଧ ମୋତେ ପାଗଳ କରିଦିଏ ମାୟା । ଇଚ୍ଛା ହୁଏ ରାଜକାର୍ଯ୍ୟ ଛାଡ଼ି ତୁମ ପାଖକୁ ଧାଇଁ ଆସିବି । ମାୟା କହିଥିଲେ, ସତେ ! ସେହି ସୌଭାଗ୍ୟବତୀ ମୁହିଁ ସେହି ନାରୀ ? ଯାହାର ଅନ୍ତରରେ ତୁମ ଛବି ସଦାବେଳେ ଭାସିବୁଲେ ।

ମାୟା ଓ ଅନୁସୂୟାଙ୍କ ମଝିରେ ଅଟକି ଯାଏ ମହାରାଜାଙ୍କ ଭାବଧାରା । ଆଜି ଅନୁସୂୟା ବଦଳରେ ଏ ତୂଳିତଳ୍ପ ଶଯ୍ୟାରେ ଶୋଇଥାନ୍ତେ ମାୟା, ରତିକ୍ଳାନ୍ତା ହୋଇ । ସେହି ମାୟାକୁ କ'ଣ କହି ସେ ତାଙ୍କ ମନରେ ସାନ୍ତ୍ୱନା ଭରିଦେବେ । ଏବେ ଅନୁସୂୟାଙ୍କ ସହିତ ସମ୍ପର୍କ ତାଙ୍କର ଏହି ଗୋଟିଏ ରାତ୍ରିର । ହେଲେ ମାୟାଙ୍କ ସହିତ ସମ୍ପର୍କ ତାଙ୍କର ବହୁଦିନର । ସେହି ମାୟାଙ୍କ କଥା ଚିନ୍ତା କରୁଥିଲା ବେଳେ ହଠାତ୍ ବାତାୟନ ନିକଟରେ

ଚଟାଣ ଉପରେ ଖଡ଼ ଖଡ଼ କରି ପବନରେ କାଗଜ ଖଣ୍ଡିଏ ଘୋଷାରି ହେଉଥିଲା । ଗବାକ୍ଷ ଫାଙ୍କରେ କେବେକେବେ କେତେବେଳେ ମାୟାଙ୍କର ସହଚରୀ ଅପରୂପା ବା ହେମଲତାଙ୍କ ହାତରେ ଆସିଥିବା ମାୟାର ହସ୍ତଲିପି ପଡ଼ି ଏମିତି ଖଡ଼ ଖଡ଼ ଘୋଷାରି ହେଉଥାଏ । ସହସା ସେହି ପତ୍ରଟି ଦେଖି ଆଗ୍ରହାତିଶଯ୍ୟରେ ଚଟାଣରୁ ଟେକି ନେଲେ ନରସିଂହ ଦେବ । ପତ୍ରଟିକୁ ଦେଖି ଜାଣିପାରିଲେ ଏ ପତ୍ର ପ୍ରାଣ-ପ୍ରେୟସୀ ମାୟାଙ୍କର । ହୃଦୟ ତାଙ୍କର ଆନନ୍ଦରେ ଚହଲି ଉଠିଲା । ଏମିତି ପତ୍ର କେତେବେଳେ ମାୟା ପଠାଉଥିଲେ ଭଉଣୀ ଚନ୍ଦ୍ରିକାଙ୍କ ପାଖକୁ । ଯେଉଁଥିରେ ବି ପ୍ରକାଶିତ ହେଉଥିଲା ନରସିଂହ ଦେବଙ୍କ ପ୍ରତି ପ୍ରେମାନୁରାଗ । ଚିଠିଟିକୁ ଉଠାଇ ନେଇ ବାତାୟନ ପଥ ଦେଇ ଆସୁଥିବା ଉଷାର ଅସ୍ପଷ୍ଟ ଆଲୋକରେ ପଢ଼ିବାକୁ ଚେଷ୍ଟା କଲେ ଚିଠିଟିକୁ । ଭଲଭାବରେ ପଢ଼ି ନପାରି ପୁଣି ଗଲେ ଜଳୁଥିବା ପ୍ରଦୀପ ନିକଟକୁ ।

ମାୟା କ'ଣ ଲେଖିଛନ୍ତି ? ଏକ ନିଃଶ୍ୱାସରେ ଚିଠିଟି ପଢ଼ି ଶେଷ କରିବା ପାଇଁ ତାଙ୍କର ଧୈର୍ଯ୍ୟ ରହିଲା ନାହିଁ । ହାତରୁ ତାଙ୍କର ଚିଠିଟି ଖସି ପଡିଲା । ଆଖି ଆଗରେ ଅନ୍ଧାର ଘୋଟି ଆସିଲା । ମାୟା ଆଉ ଇହଜଗତରେ ନାହିଁ । ସେ ଆତ୍ମହତ୍ୟା କରିଛି, ତା ପ୍ରେମର ପରାଜୟ ଘଟିଛି ବୋଲି । ମାୟା ଲେଖିଛି – ମୋ ପ୍ରେମର ପରାଜୟ ଘଟିଛି । ମୋ ଭଲ ପାଇବାରେ କେଉଁଠି ତ୍ରୁଟି ରହିଗଲା । ଯେଉଁଥିପାଇଁ ଏକାନ୍ତଭାବରେ ମୁଁ ଆପଣଙ୍କୁ ପତି ଭାବରେ ପାଇ ପାରିଲି ନାହିଁ । ସେଥିପାଇଁ ମୁଁ ପ୍ରାଣ ବିସର୍ଜନ କରୁଛି । ଏ ଜୀବନରେ ମୋ ପ୍ରେମର ସାଧନା କରି ପାରିଲି ନାହିଁ । ଅପେକ୍ଷା କରିବି ଆସନ୍ତା ଜୀବନରେ ସେ ସାଧନାରେ ସିଦ୍ଧି ଲାଭ କରିବା ପାଇଁ ।

ବାପାଙ୍କୁ ଚିଠି ଲେଖି ଦେଇ ଯାଉଛି । ସେ ମୋର ମୃତ ଶରୀରକୁ ଏକ କାଠ ବାକ୍ସରେ ପୁରାଇ ନଦୀରେ ଭସାଇ ଦେବେ । ଏ ଜୀବନରେ ଆପଣଙ୍କୁ ମୋର ଶେଷ ଅନୁରୋଧ – ଆପଣ ମୋର ଶବକୁ ଶେଷ ଦର୍ଶନ ଦେବେ । ସେ ପର୍ଯ୍ୟନ୍ତ ମୋର ଆତ୍ମା ଅପେକ୍ଷା କରିବ ଆପଣଙ୍କୁ ଶେଷ ଦର୍ଶନ କରିବା ପାଇଁ । ମନେ ରଖିବେ ଆପଣ ହିଁ ମୋର ଇହ ପର କାଳର ଦେବତା ।

ନରସିଂହ ଦେବଙ୍କର ହୃଦୟ ବିଦୀର୍ଣ୍ଣ ହୋଇଗଲା । ମାୟା, ମାୟା କହି କରୁଣ କ୍ରନ୍ଦନ କରିବାକୁ ଇଚ୍ଛା ହେଲା । ହେଲେ ସେ ନିଜକୁ ସମ୍ଭାଳି ନେଲେ । ଆଉ ଝଡ଼ ବେଗରେ ସେ ବାସର ଗୃହରୁ ନିଷ୍କ୍ରାନ୍ତ ହେଲେ । ଅଶ୍ୱ ପୃଷ୍ଠରେ ବସି ଧାବମାନ ହେଲେ ନଦୀତଟକୁ । ପଛେ ପଛେ ତାଙ୍କର ଅନୁଧାବନ କଲେ ଦେହରକ୍ଷୀ କେତେଜଣ ।

କୂଳେ କୂଳେ ଛୁଟି ଚାଲିଥାଏ ଅଶ୍ୱ। ହେଲେ ତାଙ୍କର ଆଖି ଅନ୍ୱେଷଣ କରୁଥାଏ କେଉଁଠି ଭାସୁଛି - ମାୟାଙ୍କର ଶବବାହୀ ବାକ୍ସ। ଜଣେ ପାଗଳ ପ୍ରେମୀର ହୃଦୟ ନେଇ ସେ ଅଣ୍ଡାଳି ହେଉଛନ୍ତି ତାଙ୍କ ସ୍ୱପ୍ନର ଶେଷ ସନ୍ତକଟିକୁ।

ସାଗର ବକ୍ଷର ଦିଗ୍‌ବଳୟ ଉପରେ ସୂର୍ଯ୍ୟୋଦୟର ଆୟୋଜନ। ରକ୍ତିମ ଆଭାରେ ରଂଜିତ ଦିଗବଳୟର ଆକାଶ। ବିଂଚି ପଡିଛି ଲୋହିତ ଆଭା, ବନ, ଭୂଇଁ, ନଦୀ ଓ ସାଗର ବକ୍ଷ ଚତୁର୍ଦ୍ଦିଗରେ। ପ୍ରଭାତ ପକ୍ଷୀର କାକଳିରେ ମୁଖରିତ ନଦୀର ତଟଦେଶ। ହେଲେ, ନରସିଂହ ଦେବଙ୍କ ଅନ୍ତରରେ ପ୍ରକୃତିରାଣୀର ଏହି ଅମୃତମୟ ପରିବେଶ ଏକ କାରୁଣ୍ୟର ଝଙ୍କାର ସୃଷ୍ଟି କରୁଛି। ସୃଷ୍ଟି କରୁଛି, ହା-ହା-କାର, ଶୂନ୍ୟତାର ହାହାକାର। ଧାବମାନ ହେଉଛନ୍ତି ଗଭୀର ମର୍ମପୀଡ଼ା ନେଇ ସେ। ସହସା ତାଙ୍କର ଦୃଷ୍ଟିର ବଳୟ ଭିତରକୁ ଆସିଲା ନଦୀରେ ଭାସୁଥିବା ଆକାଂକ୍ଷିତ ସେହି କାଠବାକ୍ସଟି। ବୁଝିବାକୁ ବାକି ରହିଲା ନାହିଁ ଏହି ସେହି ମୃତ ମାୟାର ମର ଶରୀର-ବାହୀ ବାକ୍ସଟି।

ତୁରନ୍ତ ସେ ଅଶ୍ୱପୃଷ୍ଠରୁ ଅବତରଣ କଲେ। ଅଟକି ଗଲେ ଦେହରକ୍ଷୀଗଣ। ସେମାନେ ବି ଅଶ୍ୱପୃଷ୍ଠରୁ ଅବତରଣ କଲେ। ମହାରାଜା ନରସିଂହ ଦେବଙ୍କ ନିର୍ଦ୍ଦେଶରେ ଜଣେ ସନ୍ତରଣ ପଟୁ ଦେହରକ୍ଷୀ ଲମ୍ଫ ପ୍ରଦାନ କଲେ ନଦୀବକ୍ଷକୁ। ମାତ୍ର ତାଙ୍କୁ ସନ୍ତରଣ କରିବାକୁ ପଡିଲା ନାହିଁ। ଅଗଭୀର ଜଳରୁ ସେ ବାକ୍ସଟିକୁ ଜଳ ଉପରେ ଠେଲି ଠେଲି ନେଇ ଆସିଲେ ତଟଦେଶକୁ। ନରସିଂହ ଦେବଙ୍କ ହୃଦୟ ବେଳାଭୂମିରେ ସେତେବେଳେ ମଥାପିଟୁ ଥିଲା ଅସଂଖ୍ୟ ବିକ୍ଷୁବ୍ଧ ଭାବନାର ତରଙ୍ଗ।

ଯେତେବେଳେ ତାଙ୍କରି ନିର୍ଦ୍ଦେଶରେ ଜଣେ ଦେହରକ୍ଷୀ ଖୋଲି ଧରିଲେ ବାକ୍ସଟିର ଢ଼ାଙ୍କୁଣିଟିକୁ, ସେତେବେଳେ ଦ୍ରୁତ ବେଗରେ ନଇଁ ପଡ଼ି ନିର୍ଜୀବ ମାୟାଙ୍କର ମୁଖମଣ୍ଡଳକୁ କରୁଣ ଆବେଗରେ ଅନେଇ ରହିଲେ ନରସିଂହ ଦେବ। ସତକୁ ସତ ମୃତ ମାୟାର ମୁଖମଣ୍ଡଳ ସତେଜ ହୋଇ ଉଠିଲା ଏବଂ ମୁଦ୍ରିତ ଆଖିପତା ଦୁଇଟି ମେଲିଗଲା। ବିନିମୟ ହେଲା ଉଭୟଙ୍କର ଚାରିଚକ୍ଷୁର ଚାହାଣି। ସେହି ଚକ୍ଷୁ ଗୁଡ଼ିକରୁ ଯୋଡାଏ ଜୀବନ୍ତ ଓ ଅନ୍ୟ ଗୋଟିଏ ଯୋଡା ମୃତ ମଣିଷର।

ବିସ୍ମୟରେ ବିଗଳିତ ହୋଇ ଚାହିଁ ରହିଲେ ନରସିଂହ ଦେବ। ସତେ ଯେମିତି ଢ଼ଳ ଢ଼ଳ ହେଉଥିଲା ସେହି ମୃତ ଚକ୍ଷୁ ଯୋଡାକରେ ଭଲ ପାଇବାର-ଅଶ୍ରୁର-ମୁକ୍ତାବିନ୍ଦୁ। ନିମିଷକରେ ପୁଣି ମୁଦି ହୋଇଗଲା ପଲକ ଓ ଲୁଚିଗଲା ପ୍ରେମର ସ୍ମାରକୀ। ବ୍ୟଥିତ ଉଦ୍‌ବେଳିତ ହୃଦୟରେ ନୃସିଂହ ଦେବ ବାକ୍ସରୁ ଟେକିନେଲେ ମାୟାର ଶବକୁ। କାନ୍ଧରେ

ପକାଇ ଅଶ୍ୱପୃଷ୍ଠରେ ଧାବମାନ ହେଲେ ଚନ୍ଦ୍ରଭାଗା ତଟ ଦୁର୍ଗକୁ। ପଛେ ପଛେ ଅନୁଧାବନ କଲେ ଦେହରକ୍ଷୀ ଗଣ। ନିମିଷକ ଭିତରେ ପ୍ରଚାର ହୋଇଗଲା ଏହି ମର୍ମନ୍ତୁଦ ଘଟଣା।

ଯେତେବେଳେ ମାୟାର ଶବକୁ ନେଇ ରାଜଧାନୀରେ ପହଞ୍ଚିଲେ ନୃସିଂହ ଦେବ, ସେତେବେଳେ ଚାରିଆଡେ ଶୋକର ଛାୟା ଖେଳିଗଲା। ପ୍ରଜାର ଦୁଃଖରେ ରାଜା ଦୁଃଖୀ। ରାଜାର ଦୁଃଖରେ ମଧ୍ୟ ପ୍ରଜାବୃନ୍ଦ ଦୁଃଖୀ। ନରସିଂହ ଦେବଙ୍କ ନିର୍ଦ୍ଦେଶରେ ନିର୍ମିତ ହେଲା ରତ୍ନଖଚିତ ଚନ୍ଦନ କାଠର ଶବାଧାର। ଆୟୋଜିତ ହେଲା ଉଆସର ରାଣୀ ମହଲର ଅନତି ଦୂରରେ ଶବଦାହର ବ୍ୟବସ୍ଥା। ମହାରାଜାଙ୍କ ପାଖେ ପାଖେ ରହି ରାଣୀ ଅନୁସୂୟା ଗଭୀର ମର୍ମ ବେଦନାରେ ଅଂଶୀଦାର ହେବା ସହିତ ଶବ ସଂସ୍କାରର ସମସ୍ତ ଆୟୋଜନ ତଦାରଖ କରୁଥିଲେ।

ଏକ ବିଶାଳ ଶବ ଶୋଭାଯାତ୍ରାରେ ହସ୍ତୀ ପୃଷ୍ଠରେ ମାୟାଙ୍କ ଶବଟିକୁ ରଖି ଆଗରେ ଗମନ କରୁଥିଲେ ମହାରାଜା ଏବଂ ପଛରେ ମହାରାଣୀ ଅନୁସୂୟା। ନରସିଂହ ଦେବ ମାୟାଙ୍କ ଶବାଧାର (କୋକେଇ) ନେଇ ବସିଥିଲେ ହସ୍ତୀପୃଷ୍ଠରେ। ରାଜକୀୟ ମର୍ଯ୍ୟାଦାରେ ହସ୍ତୀ ପୃଷ୍ଠରୁ ସେହି ସୁସଜ୍ଜିତ ଶବାଧାରଟିକୁ ଅବତରଣ କରାଗଲା। ଅଧସ୍ତନ ଶିଶୁପାଳ ଗଡ଼ର ରାଜା ଓ ରାଣୀ ଏବଂ ରାଜ୍ୟର ବହୁ ପ୍ରଜାପାଟକ ମଧ୍ୟ ଏହି ଶବସତ୍କାର ଉତ୍ସବରେ ଉପସ୍ଥିତ ଥିଲେ। ମହାରାଜା ନରସିଂହ ଦେବ ନିଜ ହାତରେ ଚିତାରେ ଅଗ୍ନି ସଂଯୋଗ କରିଥିଲେ। ଯଜ୍ଞରେ ଆହୂତି ଦେଲାଭଳି ଘୃତ, ଧୂଣା, ଗୁଗ୍‌ଗୁଳ ଆଦି ଢ଼ଳା ଯାଉଥିଲା ସେହି ଚନ୍ଦନ କାଠର ଚିତାରେ। ହୁତୁ ହୁତୁ ହୋଇ ଜଳି ଉଠିଲା ମାୟାଙ୍କର ଚିତା। ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ପ୍ରଦାନ କଲେ ରାଜାରାଣୀ ଓ ପ୍ରଜାପାଟକ ବୃନ୍ଦ। ସବୁଠୁ ଅଧିକ ଅଶ୍ରୁ ଢ଼ାଳିଥିଲେ ଚନ୍ଦ୍ରିକା ଦେବୀ। ତାଙ୍କର ଆଶାର ଆକାଶଟି ଧୂମାଳ ହୋଇଗଲା।



# (୪)

ପ୍ରେମ ଓ ପ୍ରତାରଣା ଏକ ଆପେକ୍ଷିକ ଶବ୍ଦ। ନରସିଂହ ଦେବଙ୍କ ହୃଦୟ ଭିତରେ ପ୍ରତାରଣା ଶବ୍ଦଟି ଅହରହ ଆଘାତ କରୁଥିଲା। ମାୟାର ପ୍ରେମ ସହିତ ସେ ପ୍ରତାରଣା କରିଛନ୍ତି ଅନୁସୂୟାଙ୍କୁ ବିବାହ କରି। ଯେଉଁ ଅଭିମାନରେ ମାୟା ସବୁଦିନ ପାଇଁ ତାଙ୍କୁ ଛାଡ଼ି ଚାଲିଯାଇଛି। ଶୂନ୍ୟକରି ଯାଇଛି ତାଙ୍କ ହୃଦୟର ପ୍ରେମ ରାଜ୍ୟର ସିଂହାସନକୁ। ନରସିଂହ ଦେବ ଉଦାସ ହୋଇ ପଡ଼ିଛନ୍ତି। ମୁଖମଣ୍ଡଳର ଶୋଭା, ସ୍ନିଗ୍ଧତା ସତେ ଅବା ହଜି ଯାଇଛି। ତାଙ୍କ ଭାବ ରାଜ୍ୟର ପରିବର୍ତ୍ତନ ଘଟିଛି। ସେ ଅଧିକ ଗମ୍ଭୀର ଦେଖା ଯାଉଛନ୍ତି।

ଅନୁସୂୟାଙ୍କ ଆଖିରେ ଧରା ଦେଇଛି ଏ ପରିବର୍ତ୍ତନ। ଯେଉଁଦିନ ମାୟାଙ୍କର ଶବ ସତ୍କାର ହେଲା – ସେ ଦିନ ରାତିରେ ଅନୁସୂୟା ଶୟନ କକ୍ଷରେ ନରସିଂହ ଦେବଙ୍କୁ ଅନୁନୟ କରି କହିଥିଲେ, ଆପଣ ଶୋକରେ ଭାଙ୍ଗି ପଡ଼ିଲେ, ରାଜ୍ୟର ଅକଲ୍ୟାଣ ହେବ। ରାଜା ପ୍ରଜାଙ୍କ ମୁଖରେ ହସ ଫୁଟାଇବେ। ରାଜାଙ୍କ ମୁଖ ମଣ୍ଡଳରେ ହସ ନଥିଲେ ପ୍ରଜାଙ୍କ ମୁଖମଣ୍ଡଳରେ ହସ ଫୁଟିବ କେମିତି ?

ନରସିଂହ ଦେବ ବିବଶ ହୋଇ କହିଥିଲେ, ତୁମେ ବୁଝି ପାରିବ ନାହିଁ ମହାରାଣୀ। ମୁଁ ଜଣେ ରଜା। ରାଜା ହୋଇ ଯଦି ନ୍ୟାୟବନ୍ତ ନ ହୁଏ, ମୁଁ ପ୍ରଜାଙ୍କୁ ନ୍ୟାୟ ଦେବି କେମିତି ? ଯାହାର ନିଜକୁ ଦଣ୍ଡିତ କରିବାର ଶକ୍ତି ନାହିଁ, ସେ ଅପରକୁ ଦଣ୍ଡିତ କେମିତି କରିବ ?

ମୁଁ ନିଜେ ଯାହା ପ୍ରତି ଅନ୍ୟାୟ କରିଛି, ତାର ଆତ୍ମା ଶାନ୍ତି ଲାଭ କରିବ କେବଳ ମୋ ପ୍ରତି ଶାସ୍ତି ବିଧାନ ହେଲେ। ସେ ଶାସ୍ତି କିଏ ବିଧାନ କରିବ ? ଅନୁସୂୟା କହିଲେ, ମୁଁ ଆପଣଙ୍କ ଅନ୍ତରର କଥା ବୁଝି ପାରୁଛି ପ୍ରାଣେଶ୍ୱର। ଏଥିପାଇଁତ ମୁଁ ହିଁ ପ୍ରଥମରୁ ଦାୟୀ। ମୁଁ ମାୟାଦେବୀଙ୍କ ପ୍ରେମ ପଥରେ କଣ୍ଟା ହୋଇ ଛିଡା ହୋଇଛି। ମୋତେ ଆପଣ ଦଣ୍ଡ

ଦିଅନ୍ତୁ। ହେଲେ, ଆପଣ ପ୍ରଜାପାଳକ। ଆପଣଙ୍କ ମନର ଉଦାସୀନତା ପ୍ରଜାଙ୍କ ମନୋବଳକୁ ଦୁର୍ବଳ କରିଦେବ। ଯାହା ଘଟି ଯାଇଛି- ତାହା ଫେରି ଆସିବ ନାହିଁ। ଭଗବାନ ବୁଦ୍ଧଙ୍କ ବାଣୀ -

ଶୋଚିଲେ ଶରୀରେ କ୍ଲେଶ ମନରେ ଯନ୍ତ୍ରଣା,

ମୃତ କି ଆସିବ ଫେରି ମାୟାର ଛଳନା।

ଆପଣ ଶୋକରେ ଏମିତି ଭାଙ୍ଗି ପଡ଼ିଲେ କେମିତି ଚଳିବ? ନରସିଂହ ଦେବ କହିଲେ, ମୁଁ ଯେ ନିଜକୁ ବୁଝାଇ ପାରୁନାହିଁ। ମୃତ ମାୟାର ଆତ୍ମାକୁ ମୁଁ କିଭଳି ଶାନ୍ତି ଦେଇପାରିବି ? ଅନୁସୂୟା କହିଲେ, ମାୟା ଦେବୀଙ୍କର ଆତ୍ମା ଶାନ୍ତି ଲାଭ କରିବାର ଏକମାତ୍ର ଉପାୟ ହେଉଛି - ଆପଣଙ୍କୁ ପ୍ରମାଣ କରିବାକୁ ହେବ - ଆପଣ ମୋ ଅପେକ୍ଷା ତାଙ୍କୁ ଅଧିକ ପ୍ରେମ କରୁଥିଲେ ବୋଲି। ସେ ପ୍ରମାଣ କେବଳ ଆପଣ ହିଁ ଦେବେ। ନରସିଂହ ଦେବ କହିଲେ, ଏକଥା ସତ। ମୋତେ ହିଁ ମାୟାର ବିଦେହୀ ଆତ୍ମା ପାଖରେ ପରୀକ୍ଷା ଦେବାକୁ ପଡିବ। ମୋ ହୃଦୟରେ ଏବେ ବି ମାୟାର ଆସନ ଆଉ କେହି ଦଖଲ କରିନାହିଁ। ଏ ପ୍ରମାଣ ଦେବାରେ ତୁମେ ହିଁ ମୋତେ ସାହାଯ୍ୟ କରିବ।

କଥା ଦେଉଛି ମୋତେ ଯାହା ନିର୍ଦ୍ଦେଶ ହେବ - ମୁଁ ତାହା ଅକ୍ଷରେ ଅକ୍ଷରେ ପାଳନ କରିବି, କହିଲେ ଅନୁସୂୟା।

ପାରିବ ରାଣୀ ମୋତେ ସାହାଯ୍ୟ କରି ? ମାୟାର ଆତ୍ମା ଶାନ୍ତି ଲଭିବା ପାଇଁ ମୋର କାଲିଠୁଁ ଏକ ସଂକଳ୍ପ ହେବ - ବାରବର୍ଷ ଧରି ବ୍ରହ୍ମଚର୍ଯ୍ୟ ଧାରଣ। ଯେମିତି କିନ୍ଦମ ଋଷିଙ୍କ ଅଭିଶାପକୁ ପାଳନ କରିବା ପାଇଁ ପାଣ୍ଡୁ ଅପୂର୍ବ ସୁନ୍ଦରୀ କୁନ୍ତୀ ଓ ମାଦ୍ରୀଙ୍କୁ ପାଖରେ ପାଇ ମଧ୍ୟ ବ୍ରହ୍ମଚର୍ଯ୍ୟ ଧାରଣ କରିଥିଲେ।

ତେବେ ପାଣ୍ଡୁଙ୍କର ମୃତ୍ୟୁ ହେଲା କାହିଁକି ? ପ୍ରଶ୍ନ କଲେ ଅନୁସୂୟା। ନରସିଂହ ଦେବ କହିଲେ, ତେବେ ଶୁଣିବ ଯଦି ଶୁଣ ସେ ମହାଭାରତର ଉପାଖ୍ୟାନ।

ଏକଦା ପାଣ୍ଡୁ ଯାଇଥିଲେ ବଣକୁ ଶିକାର କରିବା ପାଇଁ। ଅବଶ୍ୟ ତାଙ୍କ ସହିତ ଶିକାରୀ ସୈନ୍ୟ ସାମନ୍ତ ମଧ୍ୟ ଥିଲେ। ଏକୁଟିଆ ଆଗକୁ ସେ ଅଶ୍ୱରେ ଧାବମାନ ହେଲାବେଳେ ତାଙ୍କ ସମ୍ମୁଖକୁ ଆସିଲେ ଏକ ହରିଣ-ଯୂଥ। ତାଙ୍କ ଘୋଡାର ଟାପୁ ଶୁଣି ଇତଃସ୍ତତଃ ହୋଇ ହରିଣ ହରିଣୀ ତାଙ୍କର ଶିଶୁମୃଗମାନଙ୍କ ସହିତ ତୀବ୍ର ବେଗରେ ଜଙ୍ଗଲ ମଧ୍ୟକୁ ପଳାୟନ କଲେ। ହେଲେ ଗୋଟିଏ ସୁନ୍ଦର ଋତୁମତୀ ମୃଗୁଣୀକୁ ସଙ୍ଗମ କରୁଥିବା

ସୁନ୍ଦର ମୃଗଟି ସଙ୍ଗମ ରତ ରହିଥିଲା । ବୃକ୍ଷର ଆଢୁଆଳରୁ ପାଣ୍ଡୁ ସେହି ସଙ୍ଗମ ରତ ମୃଗଟିକୁ ଲକ୍ଷ୍ୟ କରି ଶର ନିକ୍ଷେପ କଲେ । ମୃଗଟି ସେହିଠାରେ ଟଳି ପଡିଲା । ସେ ମୃଗଟି ଆଉ କେହି ନୁହେଁ, ସେ ଥିଲେ କିନ୍ଦମ ଋଷି । ସୁନ୍ଦର ଋତୁମତୀ ହରିଣୀଟିକୁ ଦେଖି ସେ କାମ ଭାବ ପରିତ୍ୟାଗ କରି ପାରିଲେ ନାହିଁ । ଲୋଭରେ ସୁନ୍ଦର ମୃଗ ରୂପ ଧାରଣ କରି ତାକୁ ରମଣ କରୁଥିଲେ । ସେ ଶରାଘାତ ହୋଇ ମୃତ୍ୟୁ ଯନ୍ତ୍ରଣାରେ ଛଟପଟ ହେଉଥିବା ବେଳେ ଅଶ୍ରୁପୂର୍ଣ୍ଣ ନେତ୍ରରେ ମୃଗୁଣୀଟି ତା ପାଖରେ ଛିଡା ହୋଇ ତା ଶରୀରକୁ ଚାଟୁଥିଲା । ଇତ୍ୟବସରରେ ସେହି ଛଟପଟ ହେଉଥିବା ମୃଗରୂପି କିନ୍ଦମ ଋଷିଙ୍କ ପାଖରେ ଧନୁତୀର ଧାରଣ କରି ପହଞ୍ଚିଲେ ପାଣ୍ଡୁ । ମୃତ୍ୟୁ ଯନ୍ତ୍ରଣା କାତର ସଜଳ ଆଖିରେ ପାଣ୍ଡୁଙ୍କୁ ପାଖରେ ଦେଖି କ୍ରୋଧରେ କିନ୍ଦମ ଅଭିଶାପ ଦେଲେ – 'ତୁମେ ଜଣେ ରାଜା ବୋଲି ଜଣାପଡୁଛ । ଆମର ସଙ୍ଗମ ଅବସ୍ଥାରେ ତୁମ ହାତ ଟଳିଲା କେମିତି ମୋତେ ଶର ବିଦ୍ଧ କରିବା ପାଇଁ ? ମୁଁ ତୁମକୁ ଅଭିଶାପ ଦେଉଛି – ତୁମେ ଯେବେ ନାରୀକୁ ସଙ୍ଗମ କରିବାକୁ ଚେଷ୍ଟା କରିବ ତୁମର ପ୍ରାଣ ନାଶ ଯିବ ।' ସେ ଅଭିଶାପ ପାଇ, ଭୟଭୀତ ହୋଇ ଯାଇଥିଲେ ବୀର ପାଣ୍ଡୁ । ଏ କଥା ତାଙ୍କର ପ୍ରିୟତମା ରାଣୀ – କୁନ୍ତୀ ଓ ମାଦ୍ରୀଙ୍କୁ କହିଥିଲେ । ସେମାନେ ସେହିଦିନୁ ସଂଯମୀ ହୋଇ ସ୍ୱାମୀ ସଂଗମ ଲାଳସାକୁ ପରିତ୍ୟାଗ କରିଥିଲେ । ପାଣ୍ଡୁଙ୍କୁ ବ୍ରହ୍ମଚର୍ଯ୍ୟ ଧାରଣ କରିବା ପାଇଁ ସମସ୍ତ ଶକ୍ତି ଯୋଗାଇ ଥିଲେ । ଏପରିକି ଦେବତାମାନଙ୍କୁ ନିର୍ବାଚିତ କରି ପତିଙ୍କ ଅନୁମତି ନେଇ ପୁତ୍ର ସନ୍ତାନ ପ୍ରାପ୍ତ ହୋଇଥିଲେ । ଅନୁସୂୟା ମନଯୋଗ ସହକାରେ ଶୁଣୁଥିଲେ ସ୍ୱାମୀ ନରସିଂହ ଦେବଙ୍କର ପାଣ୍ଡୁ ଉପାଖ୍ୟାନ । ସେ କହିଲେ, ପାଣ୍ଡୁଙ୍କର ମୃତ୍ୟୁ ହେଲା କେମିତି ?

ନରସିଂହ ଦେବ କହିଲେ, ଅରଣ୍ୟ ମଧ୍ୟରେ ଋଷି ଆଶ୍ରମରେ ଦୁଇପତ୍ନୀ ଓ ପୁତ୍ରମାନଙ୍କୁ ନେଇ କାଳ କାଟୁଥିଲେ ପାଣ୍ଡୁ । ଏକଦା ସୂର୍ଯ୍ୟାସ୍ତ ପୂର୍ବରୁ କୁନ୍ତୀ ଯାଇଥିଲେ ପୁତ୍ରମାନଙ୍କୁ ନେଇ ମୁନି ଆଶ୍ରମକୁ, ଯେଉଁଠାରେ ସେମାନେ ଅଧ୍ୟୟନ କରନ୍ତି । ପାଣ୍ଡୁଙ୍କ ସହ ମାଦ୍ରୀ ବି ଯାଇଥିଲେ ବନ ଝରଣା କୂଳରେ ସାନ୍ଧ୍ୟ ଭ୍ରମଣରେ । ବସନ୍ତ କାଳ । ସୁନ୍ଦର ବନଭୂଇଁ । କୁସୁମାୟିତ ତରୁଲତା । କୋକିଳର ମଧୁର କୂଜନ, ଝରଣାର ଝର ଝର ସଙ୍ଗୀତ ସେମାନଙ୍କୁ କେବଳ ମୁଗ୍ଧ କରୁ ନଥିଲା – ସୂର୍ଯ୍ୟାସ୍ତର ଅପୂର୍ବ ମନୋରମ ଦୃଶ୍ୟ ସେମାନଙ୍କ ପ୍ରାଣକୁ ଉଲ୍ଲସିତ କରୁଥିଲା । ଲୋହିତବର୍ଣ୍ଣ ବାରୁଣୀ ପଟର ଶୋଭାକୁ ସ୍ୱର୍ଗୀୟ ସୁଷମାରେ ଭରି ଦେଉଥିଲା । ବନ, ଭୂଇଁ, ଝରଣା ସେ ଲୋହିତ ଆଭାରେ ଚମକୁ ଥିଲା ।

ସୁନ୍ଦରୀ ଶିରୋମଣି ମାଦ୍ରୀ ଝରଣା ଜଳରେ ସ୍ନାନ କରିବାର ଲୋଭ ସମ୍ଭାଳି ପାରିଲେ ନାହିଁ। ସ୍ନାନ କରୁଥିବା ବେଳେ ମୁଗ୍ଧ ଦୃଷ୍ଟିରେ ତାଙ୍କୁ ଚାହିଁ ରହିଥିଲେ ପାଣ୍ଡୁ। ମାଦ୍ରୀଙ୍କର ଯୌବନଦୀପ୍ତ ଶରୀରରେ ଫୁଟି ଉଠୁଥିବା କାମକଳାର ରେଖା ଗୁଡ଼ିକ ପାଣ୍ଡୁଙ୍କୁ ପ୍ରଲୁବ୍ଧ କଲା। ଯେତେବେଳେ ପଥର ଖଣ୍ଡକ ଉପରେ ଗୋଟିଏ ପାଦ ଥାପି ମାଦ୍ରୀ ତାଙ୍କର ଆର୍ଦ୍ର ବେଣୀକୁ ପଛକୁ ଈଷତ୍ ମୁଣ୍ଡ ନୁଆଇଁ ସଜାଡୁ ଥିଲେ - ସେତିକିବେଳେ ତାଙ୍କ ଶରୀର ବିଶେଷ କରି ସ୍ଫୀତ ବକ୍ଷୋଜ ଦୁଇଟିକୁ ଦେଖି ପ୍ରଲୁବ୍ଧ ହୋଇ ପଛରୁ ତାଙ୍କୁ ଗ୍ରହଣ କରିନେଇଥିଲେ ପାଣ୍ଡୁ। ସଙ୍ଗେ ସଙ୍ଗେ ତାଙ୍କ ପ୍ରାଣପକ୍ଷୀ ଉଡ଼ି ଯାଇଥିଲା। ଟଳି ପଡୁଥିବା ଆଲିଙ୍ଗନବଦ୍ଧ ମାଦ୍ରୀ ସ୍ୱାମୀ ପାଣ୍ଡୁଙ୍କର ମର ଶରୀରକୁ ଆୟତ୍ତ କରି ନେଇଥିଲେ - ପାଣିରେ ପଡ଼ିବାକୁ ନଦେଇ।

ଅନୁସୂୟା କହିଲେ - ଆପଣ ଭାବୁଛନ୍ତି ସ୍ୱାମୀ ମୁଁ ଆପଣଙ୍କର ବ୍ରହ୍ମଚର୍ଯ୍ୟ ଭଙ୍ଗ ପାଇଁ ଆପଣଙ୍କୁ ପ୍ରଲୁବ୍ଧ କରିବି; ତାହା ନୁହେଁ। ମୁଁ ମଧ୍ୟ ଆସନ୍ତା କାଲିଠାରୁ ବ୍ରହ୍ମଚାରିଣୀର ଜୀବନ ଯାପନ କରିବି, କଥା ଦେଉଛି।

ନରସିଂହ ଦେବ ଅନୁସୂୟାଙ୍କ ମନର ଆବେଗକୁ ସମ୍ମାନ ଜଣାଇ ତାଙ୍କୁ ନିଜ ବକ୍ଷ ସଂଲଗ୍ନା କଲେ। କହିଲେ, ଆଜି ରାତ୍ରି ବାର ବର୍ଷ ପାଇଁ ଆମ ମିଳନର ଶେଷ ରାତ୍ରି ହେଉ। ଗୋଟିଏ ବିଦେହୀ ଆତ୍ମାକୁ ଶାନ୍ତ କରିବା ପୂର୍ବରୁ ଆମ ଶରୀର ଉତ୍ତାପକୁ ଆମେ ଶାନ୍ତ କରିବା। ରାଜ୍ୟଜୟ ଓ ନିର୍ମାଣ ହେବ ମୋ ସଂଯମର ସର୍ବଶ୍ରେଷ୍ଠ ଆୟୁଧ।



# (୬)

ବଙ୍ଗ-ବିଜୟ-ଯାତ୍ରା ଥିଲା ଲାଙ୍ଗୁଳା ନରସିଂହ ଦେବଙ୍କର ସଂକଳ୍ପ ଯାତ୍ରା । ଯୁଦ୍ଧ ବିଶାରଦ ସେନାପତି ଭଗ୍ନୀପତି ପରମାର୍ଦ୍ଦି ଦେବ ସଦାବେଳେ ନରସିଂହ ଦେବଙ୍କର ବଙ୍ଗ ବିଜୟ ଯାତ୍ରାର ଅଗ୍ରଭାଗରେ । ତାଙ୍କରିଠାରୁ ତ ଶିଖି ଥିଲେ ସେ ଯୁଦ୍ଧ ବିଦ୍ୟା । କାଶ୍ମୀର ବିଜୟ ପଛରେ ଥିଲା ତାଙ୍କର ଅସୀମ ବୀରତ୍ୱର ପାରକାଷ୍ଠା ।

ରାଣୀ ଅନୁସୂୟା - ପ୍ରଭାତରେ ମନ୍ଦିରରେ ପୂଜାର୍ଚ୍ଚନା କରି ପତି ଦେବତାଙ୍କ ମସ୍ତକରେ ଲେପି ଦେଇଥିଲେ ଚନ୍ଦନର ଟୀକା । ପିନ୍ଧାଇ ଦେଇଥିଲେ ଗଳାରେ ଦେବତାଙ୍କ ପୂଜା ଧଣ୍ଡାମାଳ । ଧରାଇ ଦେଇଥିଲେ ହସ୍ତରେ ବିରାଟ ଶାଣିତ କୃପାଣ । ଆଉ ସେହି କୃପାଣରେ ଲେପି ଦେଇଥିଲେ ଦେବୀଙ୍କର ନାଲି ଟହ ଟହ ସିନ୍ଦୂର । ଭୁଞ୍ଜାଇ ଦେଇଥିଲେ ଦେବୀଙ୍କର ପ୍ରସାଦ । ତାଙ୍କ ମସ୍ତକ ଉପରେ ବିଞ୍ଚି ଦେଇଥିଲେ ଶୁଭ ତିଳ ତଣ୍ଡୁଳ । ପୂଜାର୍ଚ୍ଚନାର ଆରତୀ ଥାଳିରେ ଜଳୁଥିବା ପ୍ରଦୀପ ବୁଲାଇ କରିଥିଲେ ବନ୍ଦାପନା । ଯୁଦ୍ଧ ବାଦ୍ୟରେ କମ୍ପି ଉଠୁଛି ଉଆସ ବାରବାଟୀ ଗଡ଼ । ଯୁଦ୍ଧ ଜୟପରେ ଫେରିଲେ ସେ ପୁଣି ପିନ୍ଧାଇବେ ଜୟମାଲ୍ୟ ।

ଅପେକ୍ଷା କରିବେ ମହାରାଣୀ ଅନୁସୂୟା । ମନ୍ଦିରରେ ସବୁଦିନ ତାଙ୍କ ପୂଜାର୍ଚ୍ଚନାର ଅନ୍ତ ନାହିଁ । କିଛିଦିନ ପରେ ଜଣେ ଅଶ୍ୱାରୋହୀ ପାଇକ ଆସି ଖବର ଦେଲା ମହାରାଜା ନରସିଂହ ଦେବ ଉତ୍ତର ସୀମାନ୍ତ କଟାସିନ୍ ଯୁଦ୍ଧ ପଡ଼ିଆରେ ବଙ୍ଗର ଶାସକ ତୁଘାନ ଖାଁକୁ ପରାସ୍ତ କରିଛନ୍ତି । ଲଖନୋର ଓ ଲକ୍ଷ୍ମୌତି ଉତ୍କଳର ଅଧିକାରକୁ ଆସିଛି । ଅନୁସୂୟା ଭାବିଥିଲେ ସ୍ୱାମୀ ଦୁର୍ଗକୁ ପ୍ରତ୍ୟାବର୍ତ୍ତନ କଲେ ବିଜୟୋତ୍ସବ ପାଳନ କରାଯିବ ।

ହେଲେ ଯୁଦ୍ଧ ପିପାସୁ ନରସିଂହ ଦେବ ତୁଘାନ ଖାଁକୁ ହରାଇବା ପରେ ପରେ ଗୌଡ଼ ଦେଶ ଆକ୍ରମଣ କଲେ । ତାଙ୍କର ସେନାପତି ଭଗ୍ନୀପତି ପରମାର୍ଦ୍ଦି ଦେବଙ୍କର ବାହୁର ପରାକ୍ରମ ଉପରେ ତାଙ୍କର ଅଖଣ୍ଡ ବିଶ୍ୱାସ । କାଶ୍ମୀର ଓ କଟାସିନ୍ ଯୁଦ୍ଧରେ ସେ ପ୍ରତ୍ୟକ୍ଷ କରିଛନ୍ତି ଭଗ୍ନୀପତିଙ୍କର ଅସୀମ ବୀରତ୍ୱ ।

ଗୌଡ଼ର ଶାସକ ୟୁଜ୍‌ବେଗ ପରାସ୍ତ ହେଲେ ଏବଂ ବଙ୍ଗର ହାଉଡ଼ା, ହୁଗୁଳି, ବାଙ୍କୁର, ବୀର-ଭୂମି ଜିଲ୍ଲା ଆଦି ଉତ୍କଳର କରାଗତ ହେଲା। ମାତ୍ର ଏହା ପରେ ପରେ ସୁଲତାନର ରାଜଧାନୀ ଲକ୍ଷ୍ନୌତି ଠାରେ ପ୍ରବଳ ଯୁଦ୍ଧ ହେଲା।

ପ୍ରଥମେ ଅଶ୍ୱାରୋହୀ ପାଇକ ଜଣକ ଆସି ଖବର ଦେଲା ଯୁଦ୍ଧରେ ମହାରାଜା ହସ୍ତୀ ଉପରୁ ଖସି ପଡ଼ିଥିଲେ। ଗୌଡ଼ ଦେଶର ଶାସକ ୟୁଜବେଗଙ୍କୁ ପରାସ୍ତ କରି ତାଙ୍କର ଶ୍ୱେତ ହସ୍ତୀକୁ ମହାରାଜା ଲାଭ କରିଥିଲେ। ମାତ୍ର ଲକ୍ଷ୍ନୌତି ଯୁଦ୍ଧରେ ସେହି ଶ୍ୱେତ ହସ୍ତୀରେ ଚଢ଼ି ଯୁଦ୍ଧ କରୁଥିବା ବେଳେ ଅସାବଧାନତା ବଶତଃ ତାଙ୍କର ହସ୍ତୀ ଉପରୁ ପତନ ଘଟି ଥିଲା। ସେହି ହସ୍ତୀ ନାହିଁକି ମହାରାଜା ମଧ ନାହାନ୍ତି।

ଏ ଖବର ପାଇ ମହାରାଣୀ ଅନୁସୂୟା ମୂର୍ଚ୍ଛିତା ହୋଇପଡିଥିଲେ। ବୃଦ୍ଧ ଅସୁସ୍ଥ ମହାରାଜା ଅନଙ୍ଗ ଭୀମ ଦେବଙ୍କର ମୁମୂର୍ଷୁ ଅବସ୍ଥା ହେଲା। ରାଣୀ ସୋମଲ ଦେବୀ ଓ କସ୍ତୁରୀ ଦେବୀଙ୍କ କ୍ରନ୍ଦନରେ ଉଆସ ଶୋକାଭିଭୂତ ହୋଇ ଯାଇଥିଲା। ଚନ୍ଦ୍ରିକାଦେବୀ ଏ ବିପତ୍ତି ବେଳେ ଅନୁସୂୟା ଦେବୀଙ୍କର ସେବା ସୁଶ୍ରୁଷା କରି ତାଙ୍କୁ ଆଶ୍ୱାସନା ଦେଇଥିଲେ। କହିଥିଲେ - ମହାବୀରଙ୍କ କୃପାରୁ ଯାହାର ଜନ୍ମ, ତାର ପୁଣି ପରାଜୟ ଅସମ୍ଭବ। ଦ୍ୱିତୀୟତଃ ଯେଉଁଠି ଭାଇର ଭଗ୍ନୀପତି ମହାବୀର ପରମାର୍ଦ୍ଦି ଦେବ ତାଙ୍କର ସେନାପତି ଅଛନ୍ତି - ସେ ବଞ୍ଚିଥିବା ତକେ ପରାଜୟର ଗ୍ଲାନି ଭାଇ ମହାରାଜା ନରସିଂହଙ୍କ ଭାଲ ଦେଶକୁ ସ୍ପର୍ଶ କରିପାରିବ ନାହିଁ।

ହେଲେ, ଅନ୍ୟ ଏକ ଗଭୀର ଦୁଃଖର କଳାଛାୟା ଉଆସକୁ ଆଚ୍ଛନ୍ନ କଲା। ସତକୁ ସତ ପରମାର୍ଦ୍ଦି ଦେବ ସେଦିନ ବୀରତ୍ୱର ସହିତ ପ୍ରାଣମୂର୍ଚ୍ଛା ସଂଗ୍ରାମ କରି ଉତ୍କଳର ବିଜୟ ବାନା ଉଡାଇଥିଲେ। ହେଲେ ଶରୀରରେ ବହୁସ୍ଥାନରେ କ୍ଷତାକ୍ତ ଅବସ୍ଥାରେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ। ଉତ୍କଳୀୟ ସେନାଙ୍କର ଜୟନାଦରେ ସମର ଭୂଇଁ ପ୍ରକମ୍ପିତ ହୋଇଥିଲା। ମାତ୍ର ପରମାର୍ଦ୍ଦି ଦେବଙ୍କ ବିୟୋଗରେ ମହାରାଜା ନରସିଂହ ଦେବଙ୍କ ହୃଦୟ ଗଭୀରଶୋକୋଚ୍ଛ୍ୱାସରେ କମ୍ପି ଉଠିଥିଲା

ୟୁଜବେଗ୍‌ଙ୍କୁ ପରାସ୍ତ କରି ଯେଉଁ ଶ୍ୱେତ ହସ୍ତୀ ସେ ପାଇଥିଲେ, ତାଙ୍କର ସେହି ହସ୍ତୀ ପୃଷ୍ଠରୁ ପତନ ପରେ - ହସ୍ତୀଟି ତାଙ୍କୁ ନିଛାଟିଆ ନିକାଞ୍ଚନ ଏକ ବନ ଭୂଇଁ ଭିତରକୁ ନେଇ ଯାଇଥିଲା। ସେହିଠାରେ ସଂଜ୍ଞା ଲାଭ କରି ଉତ୍କଳର ପ୍ରାଣାଧିକ ପ୍ରାଣ ପ୍ରଭୁ ଜଗନ୍ନାଥଙ୍କୁ ସ୍ମରଣ କରିଥିଲେ ସେ। ସେହି ପ୍ରଭୁଙ୍କୁ ଗୌଡ଼ଦେଶ ଯାତ୍ରା ସମୟରେ ପଥରେ ରେମୁଣାରେ ପ୍ରଭୁ କ୍ଷୀରଚୋରା ଗୋପୀନାଥଙ୍କ ଭିତରେ ଦର୍ଶନ କରି ଯାଇଥିଲେ ସେ।

ଥିଲେ ସବୁଦିନ ପାଇଁ ବଙ୍ଗଳାର ମୁସଲମାନ ଶାସକର କବଳରୁ ରାଜ୍ୟକୁ ସୁରକ୍ଷା ଦେବା ପାଇଁ ସଡ଼କ କଡ଼େ କଡ଼େ ଦୁର୍ଗମାନ ନିର୍ମାଣ କରିବାକୁ ଚିନ୍ତାକରିଥିଲେ। ମନାସିଥିଲେ ଗୌଡ଼ଦେଶ ଜୟ କରି ଫେରିଲାପରେ ସେ କ୍ଷୀରଚୋରା ଗୋପୀନାଥଙ୍କ ପାଇଁ ମନ୍ଦିରଟିଏ ନିର୍ମାଣ କରିବେ। ବିଜୟଲାଭ ପରେ ରାଜଧାନୀକୁ ପ୍ରତ୍ୟାବର୍ତ୍ତନ କରି ସେ ନିର୍ଦ୍ଦେଶ ଦେଇଥିଲେ - ଜଳେଶ୍ୱର ରାଇବଣିଆ, ତମଲୋକ, ନାରାୟଣଗଡ଼, ଅମର୍ଦ୍ଦା ଆଦି ଦୁର୍ଗ ଓ ଗୋପୀନାଥ ମନ୍ଦିର ନିର୍ମାଣ ପାଇଁ। ଯିଏ ଗୋପୀନାଥ, ସେ ହିଁ ଜଗନ୍ନାଥ। ତାଙ୍କୁ ସ୍ତୁତି ପରେ, ତାଙ୍କରି କୃପାରୁ ସେ ସୁସ୍ଥ ସବଳ ହୋଇ ପୁଣି ଦ୍ୱିଗୁଣ ଉତ୍ସାହରେ ଯୁଦ୍ଧ କ୍ଷେତ୍ରକୁ ଫେରି ଆସିଥିଲେ। ମାତ୍ର ସେତେବେଳକୁ ଭଗ୍ନୀ ପତି ପରମାର୍ଦ୍ଦି ଦେବ ତାଙ୍କର ଅନୁପସ୍ଥିତିରେ ପ୍ରବଳ ପରାକ୍ରମରେ ଯୁଦ୍ଧରେ ବ୍ୟାପୃତ ଥିଲେ। ଆହତ ଅବସ୍ଥାରେ ମଧ୍ୟ ପରମାର୍ଦ୍ଦି ଦେବ ଶତ୍ରୁ ପ୍ରାଣରେ ଆତଙ୍କ ସୃଷ୍ଟି କରି ବିଜୟ ନିଶାଣ ଧରି ଉଡାଇ ଥିଲେ। ଯୁଦ୍ଧ କ୍ଷେତ୍ର ଛାଡି ଶତ୍ରୁ ସୈନ୍ୟ ପଳାୟନ କରିଥିଲେ।

ଲକ୍ଷ୍ମୌତି ଯୁଦ୍ଧରେ ନରସିଂହ ଦେବଙ୍କର ବିଜୟଲାଭ ହେଲା। ହେଲେ ସେହି ଯୁଦ୍ଧ କ୍ଷେତ୍ରରେ ଆହତ ଅବସ୍ଥାରେ ପରମାର୍ଦ୍ଦି ଦେବଙ୍କର ମୃତ୍ୟୁ ଘଟିଲା। ଗଭୀର ଦୁଃଖ ରାଜ୍ୟ ଜୟର ଆନନ୍ଦକୁ ଆଚ୍ଛନ୍ନ କଲା। ତାଙ୍କର ଶବ ପାଖରେ ଛିଡା ହୋଇ କେବଳ ଅଶ୍ରୁ ଅର୍ପଣ କରିନଥିଲେ ନରସିଂହ ଦେବ; ତାଙ୍କର ଶବକୁ ପବିତ୍ର ଗଙ୍ଗା ତଟରେ ଶେଷ ସତ୍କାର କରି ରାଜଧାନୀକୁ ଭଗ୍ନ ହୃଦୟରେ ଫେରିଥିଲେ ସେ।

ତାଙ୍କର ବିଜୟ ବାହୁଡ଼ାରେ ବାଜିଲା ନାହିଁ ବୀରର କାହାଳୀ, ଶୁଭିଲା ନାହିଁ ଉତ୍କଳୀୟ ବୀର ସୈନିକ ବୃନ୍ଦଙ୍କର ଯୁଦ୍ଧ ବିଜୟର ଧ୍ୱନି। ପାଳିତ ହେଲା ନାହିଁ ବାରବାଟୀ ଦୁର୍ଗରେ ବିଜୟୋତ୍ସବ। ପରନ୍ତୁ ଶୋକ ସନ୍ତପ୍ତ ବିଜୟୀ ପୁତ୍ର, ମାତା ସୋମଲ ଦେବୀଙ୍କ ଚରଣରେ ଆସି ଲୋଟି ପଡ଼ି ଅଶ୍ରୁ ତର୍ପଣ କଲେ। କହିଲେ ମାତେ ! ପରିଲି ନାହିଁ ଆପଣଙ୍କର ଜାମାତା, ମୋର ଚିର ନମସ୍ୟ ଭଗ୍ନୀପତିଙ୍କର ପ୍ରାଣ ରକ୍ଷା କରି। ଶତ୍ରୁ ହସ୍ତରେ ସେ ପରାଜୟ ବରଣ କରି ନାହାନ୍ତି। ଆହତ ହୋଇ ମଧ୍ୟ ବିଜୟର ବାନା ଉଡାଇଛନ୍ତି - ଶତ୍ରୁ ସୈନ୍ୟଙ୍କ ପ୍ରାଣରେ ଭୀତି ସଞ୍ଚାର କରି। କାନ୍ଦି କାନ୍ଦି କହିଲେ, ମୋର ଭଉଣୀଙ୍କର ପ୍ରାଣର ପତି ଦେବଙ୍କୁ ସଶରୀରରେ ସାଥିରେ ଧରି ଆସି ପାରିଲି ନାହିଁ। ପବିତ୍ର ଗଙ୍ଗାତଟରେ ତାଙ୍କର ଶବ ସତ୍କାର କରି ଫେରି ଆସିଲି। କ'ଣ ପ୍ରବୋଧନା ଦେଇ ତାଙ୍କୁ ସାନ୍ତ୍ୱନା ଦେବି ? ତାଙ୍କର ଶୋକ ସନ୍ତପ୍ତ ହୃଦୟରେ ଶାନ୍ତିର ବାରି ସିଞ୍ଚନ କରିବି ?

ମାତା ସୋମଲ ଦେବୀ ନିର୍ବାକ ହୋଇ ଯାଇଥିଲେ। ଶୋକାର୍ତ୍ତ ପୁତ୍ରର ଏ ଅବସ୍ଥା ଦେଖି ତାଙ୍କୁ ଉଠାଇ କୋଳାଗତ କରିଥିଲେ ସୋମଲ ଦେବୀ। କ୍ରନ୍ଦନର କୋହରେ ମଧ୍ୟ ଫାଟି ପଡିଥିଲେ ସେ ନିଜେ। ତାପରେ ଆତ୍ମସମ୍ବରଣ କରି କହିଲେ, ସବୁ ବିଧିର ବିଧାନ ପୁତ୍ର। ପାରିବ ଯଦି ମୋର ପ୍ରାଣାଧିକ-କନ୍ୟା ଚନ୍ଦ୍ରିକାକୁ ସାନ୍ତ୍ୱନା ଦିଅ। ବୋଧହୁଏ - ସେ ସଂଜ୍ଞା ହରାଇ ଭୂପତିତା ହୋଇ ପଡିଥିବ।

କାଳ ବିଳମ୍ବ ନକରି ନରସିଂହ ଦେବ ଭଉଣୀ ଚନ୍ଦ୍ରିକାଙ୍କ ପାଖକୁ ଗଲେ। ଦେଖିଲେ ଭଉଣୀ ଚନ୍ଦ୍ରିକା ଅଜ୍ଞାନ ହୋଇ ପଡିଛନ୍ତି। ଅନୁସୂୟା ତାଙ୍କର ପାର୍ଶ୍ୱରେ ବସି ତାଙ୍କର ସଂଜ୍ଞା ଫେରାଇ ଆଣିବା ପାଇଁ ସେବା ସୁଶ୍ରୁଷା କରୁଛନ୍ତି। ମହାଭାରତ ଯୁଦ୍ଧରେ ଅଭିମନ୍ୟୁର ନିଧନ ପରେ ଯେମିତି ପାଣ୍ଡବ ଶିବିରରେ ଗଭୀର ଶୋକର ଛାୟା ଖେଳି ଯାଇଥିଲା, ସେମିତି ରାଜ ଉଆସ ଶୋକାଚ୍ଛନ୍ନ। ବଡ଼ଭଉଣୀଙ୍କ ପାଦତଳେ ବସି ତାଙ୍କୁ ନରସିଂହ ଦେବ ସାନ୍ତ୍ୱନା ଦେବାକୁ ଚେଷ୍ଟା କରୁଥିଲାବେଳେ, ଚନ୍ଦ୍ରିକା ତାଙ୍କୁ କୁଣ୍ଢାଇ ଧରି କ୍ରନ୍ଦନରେ ଫାଟି ପଡ଼ିଲେ। ଗଡ଼ ଜିତି ମୋର ସିଂହ ଫେରିଲା। ହେଲେ ମୋର ଆଉ ଜଣେ ସିଂହ ଚିରଦିନ ପାଇଁ ମୋଠାରୁ ବିଦାୟ ନେଇଗଲା। ଅନୁସୂୟା ଏପରି ମର୍ମଭେଦୀ କରୁଣ ଦୃଶ୍ୟରେ ବ୍ୟଥିତ ହୋଇପଡ଼ିଲେ। ଚନ୍ଦ୍ରିକାଙ୍କ ଆଖିରୁ ବହି ଯାଉଥିଲା ଅମାନିଆ ଅଶ୍ରୁ ଦେଖି ସେ ବି ନିଜର ଲୁହ ସମ୍ଭାଳି ପାରିଲେ ନାହିଁ।

ମୃତଭଗ୍ନୀପତିଙ୍କର ଅନ୍ତ୍ୟେଷ୍ଟି କ୍ରିୟା ଗାମ୍ଭୀର୍ଯ୍ୟ ପୂର୍ଣ୍ଣ ଭାବରେ ସମାପନ ହେଲା। ଦରିଦ୍ରଙ୍କୁ ସ୍ୱର୍ଣ୍ଣ ମୁଦ୍ରା ଦାନ କରାଗଲା। ପୂଜାର୍ଚ୍ଚନା ଓ ଶ୍ରାଦ୍ଧ ସ୍ୱସ୍ତୟନ ପରେ ବ୍ରାହ୍ମଣ ମାନଙ୍କୁ ଗୋଦାନ ଓ ଭୂମି ଦାନ ମଧ୍ୟ କରାଗଲା। ବିଧବା ବେଶରେ ସବୁଦାନ ଚନ୍ଦ୍ରିକା ହିଁ ସମ୍ପାଦନ କଲେ।

କିଛିଦିନ ପାଇଁ ନରସିଂହ ଦେବ ଯୁଦ୍ଧ ବନ୍ଦ କରିଦେଲେ। ଭଉଣୀ ଚନ୍ଦ୍ରିକାର ସୀମନ୍ତରେ ଝଟକୁଥିବା ସିନ୍ଦୂର ଚିରଦିନ ପାଇଁ ଲିଭିଯାଇଛି। ତାଙ୍କର ବୈଧବ୍ୟ ବେଶ ସେ ନିଜ ଆଖିରେ ଦେଖି ପାରୁନାହାନ୍ତି। ତାଙ୍କୁ ମାତା ସୋମଲ୍ ଦେବୀ କହିଲେ ପୁତ୍ର, ତୁମର ମୃତ ଭଗ୍ନୀ-ପତିଙ୍କ ସ୍ମାରକୀ ଉଦ୍ଦେଶ୍ୟରେ ଏକ ମନ୍ଦିର ନିର୍ମାଣ କର ଯେଉଁଠିକି ନିରିମାଖୀ ଚନ୍ଦ୍ରିକା ପୂଜାର୍ଚ୍ଚନା କରି ପତିହରା-ଶୋକକୁ ପାସୋରି ପାରିବ।

ଠିକ୍ ସେମିତି ମଧ୍ୟ ମନେ ପକାଇ ଦେଇଥିଲେ ରାଣୀ ଅନୁସୂୟା ମୃତ ମୟାଦେବୀଙ୍କ ସ୍ମୃତି ଉଦ୍ଦେଶ୍ୟରେ ଏକ ମନ୍ଦିର ନିର୍ମାଣ କରିବା ପାଇଁ। ମାଆ କସ୍ତୁରୀ ଦେବୀ ମଧ୍ୟ ପୁତ୍ର

ନରସିଂହ ଦେବଙ୍କୁ କହିଥିଲେ ସୂର୍ଯ୍ୟ ପୂଜା ପାଇଁ ଏକ ସୂର୍ଯ୍ୟ ମନ୍ଦିର ନିର୍ମାଣ କରିବା ପାଇଁ।

ମାତ୍ର ମନେ ମନେ ନୃସିଂହ ଦେବ ଏ ସବୁକୁ ପାଥେୟ କରି ଭାବୁଥିଲେ, ସେ ଏକ ବିଶ୍ୱ ବିଖ୍ୟାତ ମନ୍ଦିର ନିର୍ମାଣ କରିବେ। ହେଲେ, ଗୌଡ଼ ଦେଶ ବିଜୟ ଯାତ୍ରା ସମୟରେ ରେମୁଣାଠାରେ ଗୋପୀନାଥଙ୍କୁ ଦର୍ଶନ କରି ମନାସିଲେ ଗୌଡ଼ଦେଶ ଜୟ କରି ଫେରିଲେ ସେ ଗୋପୀନାଥଙ୍କର ମନ୍ଦିରଟିଏ ନିର୍ମାଣ କରିଦେବେ। ଗୋପୀନାଥଜୀଉ ସେତେବେଳେ ଗୌଡ଼ୀୟ ମଠର ମହନ୍ତଙ୍କ ତତ୍ତ୍ୱାବଧାନରେ ରହୁଥିଲେ।

କାଶ୍ମୀର ବିଜୟ ଓ ଗୌଡ଼ଦେଶ ବିଜୟ ପରେ ପ୍ରଭୂତ ଧନରତ୍ନ ରାଜକୋଷରେ ଗଚ୍ଛିତ କରିଥିଲେ ନରସିଂହଦେବ। ସେହି ଧନରତ୍ନରୁ ଆବଶ୍ୟକୀୟ ଅର୍ଥ ରେମୁଣାର ସେହି ପ୍ରଭୁ କ୍ଷୀରଚୋରାଙ୍କ ମନ୍ଦିର ନିର୍ମାଣ ପାଇଁ ବିନିଯୋଗ କରିବାକୁ କୋଷାଧକ୍ଷଙ୍କୁ ନିର୍ଦ୍ଦେଶ ଦେଇଥିଲେ। ଅବଶ୍ୟ ତାଙ୍କର ଏକ ତେରଜଣିଆ ପରାମର୍ଶ ଦାତା କମିଟି ଥିଲା। ସେହି କମିଟିର ଅନୁମୋଦନ ନେବାକୁ ସେ ଭୁଲି ନଥିଲେ।

ସେଦିନ କୋଷାଧକ୍ଷ ତଥା ହିସାବ ରକ୍ଷକ ବିଦ୍ୟାଧର ପଟ୍ଟନାୟକ ଜଣାଇଥିଲେ - ଏବେ ବି ରାଜକୋଷରେ ଯେତେ ଅର୍ଥ ଗଚ୍ଛିତ ଅଛି ରାସ୍ତାନିର୍ମାଣ, କେନାଲ ଖନନ, ବିଦ୍ୟାଳୟ ସ୍ଥାପନ ଇତ୍ୟାଦି ପ୍ରଜାହିତକର କାର୍ଯ୍ୟ ସମେତ କ୍ଷୀରଚୋରା ଗୋପୀନାଥଜୀଉଙ୍କ ମନ୍ଦିର ଭଳି ଶହ ଶହ ମନ୍ଦିର ନିର୍ମାଣ ହୋଇପାରିବ। ନରସିଂହ ଦେବ କହିଲେ, ମୁଁ ରାଜ୍ୟଜୟ କରି ରାଜକୋଷକୁ ଭରିଦେବି। କ୍ଷୀରଚୋରା ମନ୍ଦିର ନିର୍ମାଣ ପାଇଁ ମଠାଧୀଶ ଯେତିକି ଅର୍ଥ ଆବଶ୍ୟକ କରୁଛନ୍ତି, କମିଟି ଯାହା ଅନୁମୋଦନ କରିଛନ୍ତି - ସେତିକି ସେ ଦେଇ ଦିଅନ୍ତୁ। ଆହୁରି ମଧ୍ୟ କହିଲେ କପିଳାସ ପାହାଡ ଉପରେ ଥିବା ମହାଦେବଙ୍କୁ ମାତା ପୁତ୍ରାର୍ଥେ ଦର୍ଶନକୁ ଯାଇଥିଲେ। ସେ ମନ୍ଦିର ନିର୍ମାଣ ପାଇଁ ଆବଶ୍ୟକୀୟ ଅର୍ଥ ଦେଇ ଦିଅନ୍ତୁ, ଆମ ପରାମର୍ଶ ଦାତା କମିଟିର ଅନୁମୋଦନ ନେଇ। ହେଲେ ଚନ୍ଦ୍ରଭାଗା ତୀରରେ ମାତା ତାଙ୍କର ଜାମାତାଙ୍କ ସ୍ମୃତିରେ ଯେଉଁ ମନ୍ଦିର ନିର୍ମାଣ କରିବାକୁ ଚାହୁଁଛନ୍ତି ସେ ମନ୍ଦିର ପାଇଁ ଯେତେ ଅର୍ଥ ଆବଶ୍ୟକ ମୁଁ ରାଜ୍ୟ ପରେ ରାଜ୍ୟ ଜୟ କରି ଯୋଗାଇ ଦେବି। ସେ ମନ୍ଦିର ବିଶ୍ୱରେ ଉତ୍କଳୀୟ ଶିଳ୍ପୀର ଗୌରବର ବାନା ଉଡ଼ାଇବ। ମୁଁ ମନସ୍ଥ କରିଛି ସେମିତି ଏକ ମନ୍ଦିର ନିର୍ମାଣ କରିବା ପାଇଁ । ଆସନ୍ତା କାଲି ନିର୍ମାଣ ବିଭାଗର ସମସ୍ତ ମୁଖ୍ୟମାନଙ୍କୁ ତଥା ମନ୍ତ୍ରୀ ଓ ମୁଖ୍ୟ ସ୍ଥପତି ଶିବେଇ ସାମନ୍ତରାକୁ ରାଜଦରବାରକୁ ଆସିବାକୁ ଖବର ଦିଅନ୍ତୁ।

●

## (୭)

ସିଂହାସନରେ ସମାସୀନ ମହାରାଜା ନରସିଂହ ଦେବ। ବାମପାର୍ଶ୍ୱ ଆସନରେ ମହାରାଣୀ ଅନୁସୂୟା। ଉଦ୍ଦିଷ୍ଟ ଆସନ ମାନଙ୍କରେ ପୁରୋହିତ ଭୁବନାନନ୍ଦ ରାଜଗୁରୁ, ଅନ୍ୟାନ୍ୟ ମାନଙ୍କ ମଧ୍ୟରେ ଅଛନ୍ତି ମୁଖ୍ୟ ସ୍ଥପତି ମନ୍ତ୍ରୀ ସଦାଶିବ ସାମନ୍ତରା, କାର୍ଯ୍ୟକାରୀ ସ୍ଥପତି ଗଦାଧର ମହାପାତ୍ର, ଶିଳ୍ପଶାସ୍ତ୍ରର ଉପଦେଷ୍ଟା ବନ୍ଧୁରଥ (ଆତ୍ରେୟ ବ୍ରାହ୍ମଣ) ମୁଖ୍ୟ ମୂର୍ତ୍ତି ସ୍ଥପତି ବିଦ୍ୟାଧର ମହାପାତ୍ର, ମୁଖ୍ୟ ପଥର କଟାଳି ଅଇଁଠୁ ମହାରଣା। ମୁଖ୍ୟପଲସ୍ତରା କାରୀଗର ବିନ୍ଦୁ ମହାରଣା, ମୁଖ୍ୟ ଲୌହ ଢ଼ଳେଇ କାରୀଗର ପୁରିଆ ମହାପାତ୍ର, ମୁଖ୍ୟ ଭାଡ଼ିମଞ୍ଚ ଶିଳ୍ପୀ ରାଜୀବ ମହାରଣା, ମୁଖ୍ୟ ଶ୍ରମିକ ଯୋଗାଣକାରୀ ବିଶ୍ୱନାଥ ପ୍ରଧାନ। ସର୍ବୋପରି ହିସାବରକ୍ଷକ ବିଦ୍ୟାଧର ପଟ୍ଟନାୟକ।

ମହାରାଜା ଅନଙ୍ଗଭୀମ ଦେବଙ୍କର ସମୟରେ ଏହି ପ୍ରମୁଖ ବ୍ୟକ୍ତି ବୃନ୍ଦ ଜାଗିରୀଦାର ଭାବରେ ରହି ଆସିଛନ୍ତି। ସେମାନଙ୍କ ପାଇଁ ଖଞ୍ଜି ଦିଆଯାଇଛି ଶହ ଶହ ଏକର ଭୂସମ୍ପତ୍ତି ସହିତ କୋଠାବାଡ଼ି ଯାନବାହନ ଏବଂ ରାଜକର୍ମଚାରୀ, ଯେଉଁମାନେ ତାଙ୍କୁ ସହାୟତା ପ୍ରଦାନ କରିବେ। ରାଜ୍ୟରେ ଯେତେ ପୋଲ, ଯେତେ ବଡ଼ ବଡ଼ ରାଜ ଅଟ୍ଟାଳିକା, ମନ୍ଦିର ନିର୍ମାଣ - ଏହିମାନଙ୍କ ଦ୍ୱାରା ହୋଇଥାଏ। ସେଦିନ ମହାରାଜା ନରସିଂହ ଦେବ, ଉପସ୍ଥିତ ଏହି ସମସ୍ତ ପ୍ରମୁଖ ବ୍ୟକ୍ତିଙ୍କୁ ସମ୍ବୋଧନ କରି କହିଲେ, ହେ ମୋର ପ୍ରିୟ ପାରିଷଦ ବର୍ଗ ଏବଂ ରାଜ୍ୟର ମହାରାଣୀ ଅନୁସୂୟା ଦେବୀ। ଆଜି ଏକ ଶୁଭ ମୁହୂର୍ତ୍ତରେ ମୁଁ ଆପଣମାନଙ୍କୁ ଏକ ଗୁରୁଭାର ଅର୍ପଣ କରିବା ପାଇଁ ଆହ୍ୱାନ କରିଛି। ମହାରାଣୀଙ୍କ ସମେତ ମୋ ରାଜ୍ୟର ନିର୍ମାଣ ବିଭାଗର ସମସ୍ତ ମୁଖ୍ୟମାନେ ଉପସ୍ଥିତ ଅଛନ୍ତି। ଆମ ରାଜ୍ୟ ଉତ୍କଳ ଉନ୍ନତ କଳାର ରାଜ୍ୟ ଏବଂ ଏକ ବୀରଭୂମି। ଏହି ଭୂମିର ବୀର ଯୋଦ୍ଧାମାନଙ୍କ ସାହାଯ୍ୟରେ ବଙ୍ଗଳା, ମଗଧ ଓ କାଶ୍ମୀର ଆଦି ରାଜ୍ୟ ଆମ ରାଜ୍ୟର ଅଧିନସ୍ଥ ହୋଇଛି। ଏହି ରାଜ୍ୟମାନଙ୍କରୁ ଆସିଥିବା ବହୁ ଧନରତ୍ନ, ଆମ ରାଜକୋଷରେ

ଗଚ୍ଛିତ ହୋଇ ପାରିଛି। ରାଜ୍ୟର ସମୂହ ବିକାଶ ସହିତ, ପ୍ରଜାଙ୍କର କଲ୍ୟାଣ ସାଧନ ପାଇଁ ସେ ସବୁର ବିନିଯୋଗ ସହିତ, ବିନିଯୋଗ କରିବାକୁ ମୁଁ ଚାହୁଁଛି ଉନ୍ନତ କାରୁକଳାର ଏକ ବିଶାଳ ମନ୍ଦିର ନିର୍ମାଣ କରିବା ପାଇଁ। ଯେଉଁ ମନ୍ଦିର ବିଶ୍ୱରେ ଆମ ଉତ୍କଳୀୟ କାରୁକଳାର ଗୌରବ କେତନ ଉଡ଼ାଇବ। ସେପରି ଏକ ମନ୍ଦିରକୁ ମୋର ମୃତଭଗ୍ନୀ ପତି, ଯେ କି ଥିଲେ ଏ ରାଜ୍ୟର ବୀର ସେନାପତି - ସେହି ପରମାର୍ଦ୍ଦି ଦେବଙ୍କ ସ୍ମୃତି ଉଦ୍ଦେଶ୍ୟରେ ଅର୍ପଣ କରିବି।

ଏହି ଅବସରରେ ମହାରାଣୀ ଅନୁସୂୟା ଦେବୀ ନିବେଦନ ବାଢ଼ିଲେ ଏହି ବିଶାଳ ମନ୍ଦିର ନିକଟରେ ଆଉ ଏକ ସ୍ମୃତି ମନ୍ଦିର ନିର୍ମିତ ହେଉ। ତାହା ହେବ - ମହାରାଜାଙ୍କର ପ୍ରାଣର ପ୍ରେୟସୀ ମୃତା-ମାୟାଦେବୀଙ୍କ ସ୍ମୃତି ଉଦ୍ଦେଶ୍ୟରେ। ଯେଉଁ ମାୟାଦେବୀ ଥିଲେ, ପ୍ରେମ, ପ୍ରୀତିର ପ୍ରତୀକ। ତାଙ୍କ ଆତ୍ମତ୍ୟାଗର - ଆଦର୍ଶ ସ୍ମୃତି ସ୍ୱରୂପ ଆଉ ଏକ ମନ୍ଦିର ନିର୍ମିତ ହେଉ।

ପୁରୋହିତ ଭୁବନାନନ୍ଦ ରାଜଗୁରୁ କହିଲେ -ଦୁଇଟି ମନ୍ଦିର ନିର୍ମିତ ହେବ - ପ୍ରଥମଟି ହେବ ଦେବୀ ମନ୍ଦିର - ଯାହାର ନାମ ହେବ ମାୟାଦେବୀ ମନ୍ଦିର। ଅନ୍ୟଟିର ନାମ ହେବ ସୂର୍ଯ୍ୟମନ୍ଦିର। ପ୍ରଥମଟିରେ ପୂଜା ପାଇବେ ଶକ୍ତି ସ୍ୱରୂପିଣୀ ଚଣ୍ଡୀଦେବୀ ଏବଂ ଦ୍ୱିତୀୟଟିରେ ଶୋଭା ପାଇବେ ଏ ବିଶ୍ୱର ପ୍ରାଣ ସୂର୍ଯ୍ୟଦେବ। ସୂର୍ଯ୍ୟଦେବଙ୍କୁ ଉପାସନା କରି ଶ୍ରୀକୃଷ୍ଣ ପୁତ୍ର ଶାମ୍ବ କୁଷ୍ଠ ରୋଗରୁ ଆରୋଗ୍ୟ ଲାଭ କରିଥିଲେ। ସୂର୍ଯ୍ୟଦେବ ହେଉଛନ୍ତି ସର୍ବରୋଗର ନିରାମୟ କର୍ତ୍ତା। ତାଙ୍କର ପୂଜା ଉପାସନା ପାଇଁ ମନ୍ଦିରଟିଏ ନିର୍ମାଣ କରିବାକୁ ହେବ ସାଗର ବେଳାଭୂମିରେ।

ଅନୁସୂୟା କହିଲେ, କୁହନ୍ତୁ ରାଜଗୁରୁ ! କାହିଁକି ଶ୍ରୀକୃଷ୍ଣଙ୍କ ପୁତ୍ର କୁଷ୍ଠ ରୋଗରେ ଆକ୍ରାନ୍ତ ହେଲେ ? ଏବଂ ସେ କେମିତି କୁଷ୍ଠରୋଗରୁ ଆରୋଗ୍ୟ ଲାଭ କଲେ ?

ଉପସ୍ଥିତ ସଭାସଦ୍‌ବୃନ୍ଦ ମଧ୍ୟ ଅନୁରୋଧ ଜଣାଇଲେ ଭୁବନାନନ୍ଦ ରାଜଗୁରୁଙ୍କୁ। ଭୁବନାନନ୍ଦ ରାଜଗୁରୁ କହିଲେ, ଦ୍ୱାପର ଯୁଗର ଏ କଥା। ପିତା ହୋଇ ଶ୍ରୀକୃଷ୍ଣ ସ୍ୱୟଂ ନିଜ ପୁତ୍ର ଶାମ୍ବକୁ ଅଭିଶାପ ଦେଇଥିଲେ କୁଷ୍ଠ ରୋଗ ହେଉ ବୋଲି।

ଭୁବନାନନ୍ଦ ରାଜଗୁରୁଙ୍କ ତୁଣ୍ଡରୁ ଏକଥା ଶୁଣି ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ। ପିତା ହୋଇ ପୁତ୍ରକୁ ଅଭିଶାପ ଦେଇଥିଲେ !! ସେ ଅଭିଶାପ ପୁଣି କୁଷ୍ଠ ରୋଗ ହେଉ ବୋଲି !!

ଭୁବନାନନ୍ଦ ରାଜଗୁରୁ କହିଲେ, ଆପଣମାନଙ୍କ ମଧ୍ୟରୁ ଅନେକ ଜାଣିଥିବେ ଏହି କଥା। ତଥାପି ମହାରାଣୀ ଅନୁସୂୟା ଦେବୀଙ୍କ ଅନୁରୋଧରେ ମୁଁ ଆପଣମାନଙ୍କୁ ସେ କଥା ଶୁଣାଉଛି।

'ଶ୍ରୀକୃଷ୍ଣଙ୍କର ଅନ୍ୟତମ ପାଟରାଣୀ ଜମ୍ବୁବତୀଙ୍କର ପୁତ୍ର ହେଉଛନ୍ତି ଶାମ୍ବ। ସେ ରୂପରେ କନ୍ଦର୍ପ ଭଳି। ଶ୍ରୀକୃଷ୍ଣଙ୍କର ସମସ୍ତ ପୁତ୍ରଙ୍କ ମଧ୍ୟରେ ଏପରି ସୌନ୍ଦର୍ଯ୍ୟବାନ୍ ଆଉ କେହି ନଥିଲେ। ସୁପୁରୁଷ ଶାମ୍ବ ନିଜର ରୂପ ପାଇଁ ବହୁତ ଗର୍ବ ଅନୁଭବ କରୁଥିଲେ। ଶ୍ରୀକୃଷ୍ଣ ହେଉଛନ୍ତି ଦ୍ୱାପର ଯୁଗର ଅବତାରୀ ପୁରୁଷ। ଯେ କି ମହାଭାରତ ଯୁଦ୍ଧର କେବଳ ନିୟାମକ ନଥିଲେ, ପୃଥିବୀରେ ଧର୍ମର ରକ୍ଷା ପାଇଁ ତାଙ୍କୁ ସମସ୍ତେ ସମ୍ମାନ ପ୍ରଦର୍ଶନ କରୁଥିଲେ। ମୁନି, ଋଷି, ଦେବତା, ମାନବ, ଦାନବ ସମସ୍ତେ ତାଙ୍କୁ ପୂଜା କରୁଥିଲେ। ମହାମୁନି ନାରଦ ଥିଲେ ତାଙ୍କର ପରମ ଭକ୍ତ। ନାରଦ କେବଳ ଜଣେ ତ୍ରିକାଳଦର୍ଶୀ ମୁନି ନଥିଲେ, ଥିଲେ ଶ୍ରୀକୃଷ୍ଣଙ୍କର ପରମ ଶ୍ରଦ୍ଧାର ପାତ୍ର। ବୁଲି ବୁଲି ବ୍ରହ୍ମାଣ୍ଡର ଖବର ପାଳନ-କର୍ତ୍ତା-ଶ୍ରୀକୃଷ୍ଣଙ୍କୁ ସେ ଜଣାଉଥିଲେ।

ସେ ଯେତେବେଳେ ଦ୍ୱାରକାରେ ଶ୍ରୀକୃଷ୍ଣଙ୍କ ଦରବାରକୁ ଆସୁଥିଲେ, ତାଙ୍କ ପାଇଁ ସ୍ୱତନ୍ତ୍ର ଆସନର ବ୍ୟବସ୍ଥାକରିବାର ନିର୍ଦ୍ଦେଶ ଦେଇଥିଲେ ଶ୍ରୀକୃଷ୍ଣ, ଦ୍ୱାରିକା ଅଧିପତି। କେବଳ ସେତିକି ନୁହେଁ, ଦରବାରରେ ଉପସ୍ଥିତ ସମସ୍ତ ସଭାସଦ୍ ବୃନ୍ଦ ତାଙ୍କୁ ନିଜ ନିଜ ଆସନରୁ ଛିଡା ହୋଇ ମଧ୍ୟ ସମ୍ମାନ ପ୍ରଦର୍ଶନ କରୁଥିଲେ। କାରଣ ସେ ଥିଲେ ପରମ ବ୍ରହ୍ମଜ୍ଞାନୀ।

ଏକଦା ସେହି ନାରଦ ଶ୍ରୀକୃଷ୍ଣଙ୍କ ଦରବାରରେ ଆସି ପହଞ୍ଚିଲେ। ପାତ୍ର, ମନ୍ତ୍ରୀ, ପାରିଷଦବର୍ଗ, ଉପସ୍ଥିତ ସଭାସଦ୍‌ବୃନ୍ଦ ଦଣ୍ଡାୟମାନ ହୋଇ ତାଙ୍କୁ ସମ୍ମାନ ପ୍ରଦର୍ଶନ କଲେ। ସ୍ୱୟଂ ଶ୍ରୀକୃଷ୍ଣ ମଧ୍ୟ ସିଂହାସନରୁ ଛିଡା ହୋଇ ସମ୍ମାନ ପ୍ରଦର୍ଶନ କଲେ। ଶ୍ରୀକୃଷ୍ଣ ନାରଦଙ୍କୁ ତାଙ୍କ ପାଇଁ ଉଦ୍ଦିଷ୍ଟ ଥିବା ଆସନ ଅଳଙ୍କୃତ କରିବାକୁ ଅନୁରୋଧ କଲେ। ମହାମୁନି ନାରଦ ମଧ୍ୟ ପ୍ରଭୁ ଶ୍ରୀକୃଷ୍ଣଙ୍କୁ ପ୍ରଣାମ କରିବାକୁ ଭୁଲି ନଥିଲେ।

ସଭାସଦ୍ ବୃନ୍ଦ ଶ୍ରୀକୃଷ୍ଣ ସମେତ ସମସ୍ତେ ଯେତେବେଳେ ଛିଡ଼ା ହୋଇ ସମ୍ମାନ ପ୍ରଦର୍ଶନ କରୁଥିଲେ, ସେତିକି ବେଳେ, ଜଣେ କେବଳ ନିଜ ଆସନରେ ବସି ରହିଥିଲେ। ସେ ହେଉଛନ୍ତି ଶ୍ରୀକୃଷ୍ଣଙ୍କର ରୂପଗର୍ବୀ-ପୁତ୍ର ଶାମ୍ବ। ସେ ନିଜକୁ ମନେ କରନ୍ତି - ସେ ମର୍ତ୍ତ୍ୟର କାମଦେବ। ତାଙ୍କ ରୂପ ସହିତ କାହାରିର ରୂପର ସୌନ୍ଦର୍ଯ୍ୟ ତୁଳନୀୟ ନୁହେଁ। ଏପରିକି ସ୍ୱୟଂ ପିତା ଶ୍ରୀକୃଷ୍ଣଙ୍କର ରୂପ ମଧ୍ୟ ତୁଳନୀୟ ନୁହେଁ।

ନାରଦ ଦରବାରକୁ ପ୍ରବେଶ କଲାବେଳେ ସମସ୍ତେ ଦଣ୍ଡାୟମାନ ହେଲେ। ମାତ୍ର ଶାମ୍ବ ତାଙ୍କ ଆସନରେ ବସିରହିଲେ। ସେ ମନେ ମନେ ଭାବୁଥିଲେ, ନାରଦ ଛାର ମୁନିଟିଏ। ଢ଼ିଙ୍କିରେ ଚଢ଼ି ଚଉଦ ଭୁବନ ବୁଲୁଛି। ତୁଣ୍ଡରେ ସଦାବେଳେ ନାରାୟଣ, ନାରାୟଣ ନାମ ଧରୁଛି। ଦେଖିବାକୁ ଆଦୌ ସୁନ୍ଦର ନୁହେଁ। କ'ଣ ଯେ ତାର ଏମିତି ଭିତରେ ଗୁଣ ଅଛି - ତାକୁ ସମସ୍ତେ ଛିଡା ହୋଇ ସମ୍ମାନ ପ୍ରଦର୍ଶନ କରିବେ ? ଯିଏ ଯାହା କହୁନା କାହିଁକି, ମୁଁ ତାକୁ ଛିଡା ହୋଇ ସମ୍ମାନ ପ୍ରଦର୍ଶନ କରିବି ନାହିଁ। କେଉଁ ବଡ଼ଯୋଗୀ ଯେ ସେ ? ଏକଥା ନାରଦଙ୍କ ଦୃଷ୍ଟି ଏଡ଼ି ନଥିଲା। ସେ ନିଜ ଆସନ ଗ୍ରହଣ କରିବା ପୂର୍ବରୁ ଦେଖି ଦେଇଥିଲେ, ଶାମ୍ବ କେବଳ ଛିଡା ହୋଇନାହିଁ।

ନାରଦ ହେଉଛନ୍ତି ଜଣେ ଭିନ୍ନ ପ୍ରକୃତିର ଭକ୍ତ ଓ ସାଧକ ଯୋଗୀ। ତାଙ୍କର କାମ ହେଲା ଯିଏ ଗର୍ବୀ, ଅହଂକାରୀ ଓ କ୍ଷମତାନ୍ଧ, କୃଷ୍ଣଙ୍କ ଦ୍ୱାରା ତାକୁ ଶାସନ କରିବା। ପ୍ରଭୁ ଶ୍ରୀକୃଷ୍ଣଙ୍କୁ ଗର୍ବଗଂଜନ ନରହରି ବୋଲି କୁହାଯାଏ। ମାତ୍ର ନାରଦଙ୍କର ପ୍ରକୃତି ହେଉଛି ଖଳ ଭିଆଇବା। ସେ ପ୍ରକୃତି ପଛରେ ଥାଏ ବିଶ୍ୱ କଲ୍ୟାଣର ଭାବନା। ଅହଂକାରୀର ଅହଂକାର ଦଳନ। ପରାକ୍ରମୀ ପାପୀମାନଙ୍କର ପତନ। ସର୍ବୋପରି ଗର୍ବୀର ଗର୍ବ ଗଂଜନ।

ସେଦିନ ସେହି ନାରଦ ଗର୍ବୀ ଶାମ୍ବର ଏତାଦୃଶ ବ୍ୟବହାର ଦେଖି ମନେ ମନେ କହୁଥିଲେ, ଆରେ ପୁଅ, ତୋତେ ମୁଁ ପାନେ ଦେଉଛି। ନାରଦଙ୍କ ମନ ଭିତରେ ଯାହା ଥାଏ, ତାହାକୁ ସେ କାର୍ଯ୍ୟକାରୀ କରନ୍ତି।

ବେଶିଦିନ ଅତିବାହିତ ହୋଇନାହିଁ। ଏକଦା ପ୍ରଭାତରେ ନାରଦ ଶ୍ରୀକୃଷ୍ଣଙ୍କ ସହିତ ଯମୁନା ତୀରକୁ ଯାଇଥିଲେ ପ୍ରାତଃ ଭ୍ରମଣରେ। ପ୍ରାତଃକାଳ ଦିଗ୍‌ବଳୟରେ ସୂର୍ଯ୍ୟୋଦୟର ସୂଚନା। ଆକାଶ ଲୋହିତ ଛଟାରେ ରଂଜିତ। ତାର ଆଭା ବିଂଚି ପଡିଛି ଯମୁନାର ନୀଳଜଳରେ। ଯମୁନା ପୁଳିନ ବର୍ଣ୍ଣବିଭାରେ ଝଟକୁଛି। ପକ୍ଷୀର କଳ କାକଳିରେ ତଟଦେଶ ମୁଖରିତ। ଯମୁନାର ନୀଳ ଜଳରେ ସ୍ନାନରତା ଯଦୁବଂଶର ଲଳନାମାନେ। ଏହି ଲଳନାମାନଙ୍କ ପାଇଁ ସ୍ୱତନ୍ତ୍ର ଏହି ସ୍ନାନଘାଟ। ସେହି ଘାଟରେ ପୁରୁଷଙ୍କ ସ୍ନାନ ନିଷେଧ। ତଟରେ ମଧ୍ୟ ଯିବା ନିଷେଧ। କେବଳ ସେତିକି ନୁହେଁ, ସେହି ଘାଟ ସନ୍ନିକଟରେ ଯମୁନା ପାଣିରେ କେହି ସ୍ନାନ ମଧ୍ୟ କରିପାରିବେ ନାହିଁ। ବୋଧହୁଏ କିଶୋର ଅବସ୍ଥାରେ ନଟଖଟ କୃଷ୍ଣ ଯେତେବେଳେ ଗୋପୀମାନଙ୍କୁ ଯମୁନା ଜଳରେ ସ୍ନାନକାଳରେ ହଟହଟା କରୁଥିଲେ ସେତେ ଦିନରୁ ସେ ଜାଣିଥିଲେ ନାରୀମାନଙ୍କର ମର୍ଯ୍ୟାଦାର ଏଥିରେ ହାନୀ

ଘଟୁଛି। ଏଥିପାଇଁ ସେ କଟକଣା ଜାରି କରିଥିଲେ - କେହି ପୁରୁଷ ନାରୀମାନଙ୍କ ପାଇଁ ଉଦ୍ଦିଷ୍ଟ ଘାଟ ସନ୍ନିକଟରେ ସ୍ନାନ କରି ପାରିବେ ନାହିଁ।

ନିଜ ଉପରେ ପଡ଼ିଲେ, ଜଗତରେ ଜଗି କାର୍ଯ୍ୟ କରନ୍ତି ସମସ୍ତେ। ଦଣ୍ଡ ପାଇବା ଭୟରେ ସେହି ଘାଟ ସନ୍ନିକଟରେ ଦୁଇ ପାର୍ଶ୍ୱକୁ ଲାଗି ଘାଟରେ କେହି ପୁରୁଷ ସ୍ନାନ କରନ୍ତି ନାହିଁ। ହେଲେ ମତ୍ତଗର୍ବୀ ଶାମ୍ବ ସେ କଟକଣାକୁ ମାନନ୍ତି ନାହିଁ। ନିଜର ସୌନ୍ଦର୍ଯ୍ୟ ସମସ୍ତଙ୍କୁ ଦେଖାଇବା ପାଇଁ ନାରୀମାନଙ୍କ ପାଇଁ ଉଦ୍ଦିଷ୍ଟ ଘାଟର ପାର୍ଶ୍ୱକୁ ଲାଗି ଉପରମୁଣ୍ଡରେ ସେ ସ୍ନାନ କରନ୍ତି। ଶାମ୍ବର ମନକୁ କେବେ ଆସିନାହିଁ - ସ୍ନାନରତା ସେହି ନାରୀମାନଙ୍କ ମଧ୍ୟରେ ଶ୍ରୀକୃଷ୍ଣଙ୍କର ରାଣୀମାନେ, ନିଜର ଜନନୀମାନେ ଅଛନ୍ତି। ଭଗିନୀମାନେ ମଧ୍ୟ ଅଛନ୍ତି।

ନାରଦ ସହିତ ଶ୍ରୀକୃଷ୍ଣ ଚାଲିଛନ୍ତି ଯମୁନା ତଟ ରାସ୍ତାରେ। ନାରୀମାନଙ୍କ ପାଇଁ ଉଦ୍ଦିଷ୍ଟ ଥିବା ଘାଟ ସନ୍ନିକଟ ହୁଅନ୍ତେ - ନାରଦ ଶ୍ରୀକୃଷ୍ଣଙ୍କୁ ଇଙ୍ଗିତ ଦେଲେ-ବୃକ୍ଷର ଆଡୁଆଳରେ ଛପି ଯାଇ ସ୍ନାନରତା ନାରୀମାନଙ୍କର କଥୋପକଥନ ଶୁଣିବା ପାଇଁ। କହିଲେ, ପ୍ରଭୁ ଏହି ବୃକ୍ଷର ଆଡୁଆଳରୁ ଶୁଣନ୍ତୁ, ସ୍ନାନରତା, ନାରୀମାନଙ୍କର ପରସ୍ପର ମଧ୍ୟରେ କଥୋପକଥନ। ଆଉ ଦେଖନ୍ତୁ, ସନ୍ନିକଟରେ ପାର୍ଶ୍ୱକୁ ଲାଗି ନିଷିଦ୍ଧ କରାଯାଇଥିବା ଘାଟରେ ଆପଣଙ୍କ ପୁତ୍ର ଶିରୋମଣି କେମିତି ସଂକ୍ଷିପ୍ତ ବସ୍ତ୍ରରେ ସ୍ନାନ କରୁଛନ୍ତି - ନିଜ ଶରୀରର ସୌନ୍ଦର୍ଯ୍ୟ ପସରା ମେଲି ଦେଇ।

ନାରଦଙ୍କ ଇଙ୍ଗିତାନୁସାରେ ଶ୍ରୀକୃଷ୍ଣ ବୃକ୍ଷର ଆଡୁଆଳରୁ କାନ ଡେରି ଶୁଣିଲେ। ତାଙ୍କର ରାଣୀମାନେ ବି ପରସ୍ପର ଭିତରେ କଥୋପକଥନ ହେଉଛନ୍ତି, ନିକଟରେ ସ୍ନାନ କରୁଥିବା ଶାମ୍ବଙ୍କୁ ଆଡକୁ ଲକ୍ଷ୍ୟ କରି। ନାନୀ ହେଇ ଦେଖୁଛୁ କେମିତି ସୁପୁରୁଷଟିଏ ଆମ ଶାମ୍ବ। କେଉଁ ନାରୀର ମନ ନହେବ ଏପରି ସୁନ୍ଦର ସୁପୁରୁଷଟିର ସଙ୍ଗଲାଭ କରିବା ପାଇଁ। କେହି କହୁଛି, ଏପରି ସୁପୁରୁଷଟିର ଶଯ୍ୟା ସଙ୍ଗିନୀଟି ହେଉଛି ଏକ ଭାଗ୍ୟବତୀ ନାରୀ। କିଏ ବା କହୁଛି - କେଉଁ ବିଧାତା ଏପରି ରୂପ ଦେଇଛି ଆମ ଶାମ୍ବକୁ। ରତୀ ଦେବୀ ବି କେତେବେଳେ ଭୁଲ କରି ବସିବେ କାମଦେବ ଭାବି। ନାରୀମାନଙ୍କ ଭିତରେ ସ୍ନାନରତ ଶାମ୍ବକୁ ଦେଖି ଏପରି ବାର୍ତ୍ତାଳାପ ଶୁଣି, ଶ୍ରୀକୃଷ୍ଣ ମନରେ ପୁତ୍ର ଶାମ୍ବପ୍ରତି ଘୃଣାଭାବ ଜାତ ହେଲା। ପୁତ୍ର ହୋଇ ମାତାମାନଙ୍କୁ ନିଜ ଶରୀରର ସୌନ୍ଦର୍ଯ୍ୟରେ ସେ ପ୍ରଲୁବ୍ଧ କରୁଛି। ଏହି କଥା ଭାବି କ୍ରୋଧରେ ଜର୍ଜରିତ ହୋଇ ସେ ଶାମ୍ବକୁ ଅଭିଶାପ ପ୍ରଦାନ

କଲେ। ତାଙ୍କ ମୁହଁରୁ ବାହାରି ଆସିଲା, ରେ ଅସଭ୍ୟ, ଯେଉଁ ସୌନ୍ଦର୍ଯ୍ୟ ପାଇଁ ତୁ ଗର୍ବ କରୁଛୁ ଏବଂ ତୋର ମାତା ସଦୃଶା ରମଣୀମାନଙ୍କୁ ତୁ ପ୍ରଲୁବ୍ଧ କରୁଛୁ - ସେହି ସୌନ୍ଦର୍ଯ୍ୟର ଗର୍ବ ତୋର ଖର୍ବ ହେବ। ତୋ ଶରୀର-କଦାକାର ହୋଇ ଯିବ କୁଷ୍ଠ ରୋଗରେ। ମୁଁ ଆଜି ତୋତେ ଏହି ଅଭିଶାପ ଦେଉଛି।

ନାରଦ ଯାହା ଚାହୁଁଥିଲେ ତାହାହିଁ ହେଲା। ଶାମ୍ବ ସ୍ନାନ ସାରି ଉଠିଲାବେଳକୁ ତାଙ୍କର ସମସ୍ତ ଶରୀର କୁଷ୍ଠ ରୋଗାକ୍ରାନ୍ତ ହୋଇ ଯାଇଛି।

ଶାମ୍ବ ଜାଣି ପାରିଲେ ନାହିଁ - କାହିଁକି ହଠାତ୍ ଏପରି ଘଟିଲା ବୋଲି। ବ୍ୟଥିତ, ଭୟଭୀତ ହୋଇ କାନ୍ଦି କାନ୍ଦି ସେ ମାଆ ଜମ୍ବୁବତୀଙ୍କ ପାଖରେ ପହଞ୍ଚିଲେ। ମାତା ଜମ୍ବୁବତୀ ପୁତ୍ରର ଏପରି ଦୁର୍ଦ୍ଦଶା ଦେଖି ଆତଙ୍କିତ ହୋଇ ଉଠିଲେ। ଜାଣି ପାରିଲେ ନାହିଁ, କାହିଁକି ପୁତ୍ରର ଏ ଦୁର୍ଦ୍ଦଶା ଘଟିଛି। ଏହାର ଆରୋଗ୍ୟ ଲାଭପାଇଁ ପ୍ରତିକାର କ'ଣ କରାଯିବ ?

ସେ ଅନନ୍ୟୋପାୟ ହୋଇ ସ୍ୱାମୀ ଶ୍ରୀକୃଷ୍ଣଙ୍କ ପାଖରେ ପୁତ୍ରକୁ ନେଇ ପହଞ୍ଚିଲେ। ସେ ପୁତ୍ର ଶାମ୍ବକୁ ସ୍ୱାମୀଙ୍କ ପାଦତଳେ ପଡ଼ିବାର ନିର୍ଦ୍ଦେଶ ଦେଇ ନିଜେ ତାଙ୍କର ପାଦ ଦୁଇଟିକୁ ଧରି କରୁଣ କ୍ରନ୍ଦନ କଲେ। କହିଲେ, ପ୍ରଭୁ ମୋର ପୁତ୍ରକୁ ଏ ଦୁର୍ଦ୍ଦଶାରୁ ଉଦ୍ଧାର କରନ୍ତୁ। ଜାଣେ ନାହିଁ କେଉଁ ଅଭିଶାପରୁ ତାର ଏପରି ଦୁର୍ଦ୍ଦଶା ଘଟିଛି। କୃଷ୍ଣ ବିଚଳିତ ହୋଇ କହିଲେ, ମୁଁ ବଡ଼ ଭୁଲ କରିଛି ରାଣୀ। ମୁଁ ହିଁ ପୁତ୍ରର ଏ ଦୁର୍ଦ୍ଦଶା ପାଇଁ ଦାୟୀ। ମୁଁ ତାକୁ ଅଭିଶାପ ଦେଇଛି - ତାର ଶରୀର କୁଷ୍ଠରୋଗାକ୍ରାନ୍ତ ହେଉ ବୋଲି।

କାନ୍ଦି କାନ୍ଦି ଜମ୍ବୁବତୀ କହିଲେ, ପିତା ହୋଇ ପୁତ୍ର ପ୍ରତି ଏପରି ଅଭିଶାପ ଦେଲେ କେମିତି ? କେଉଁଥିପାଇଁ ? ବରଂ ନିଜ ହସ୍ତରେ ତାକୁ ମୃତ୍ୟୁଦଣ୍ଡ ଦେବା ଭଲ ହୋଇଥାନ୍ତା। ଆଉ ପୁତ୍ରର ଏ ଦୁର୍ଦ୍ଦଶା ଦେଖିବା ଅପେକ୍ଷା ମୋର ମୃତ୍ୟୁ ହୋଇଯିବା ଭଲ। ମାଆ ହୋଇ ପୁତ୍ରର ଏ ଦୁର୍ଦ୍ଦଶା ମୁଁ କେମିତି ସହ୍ୟ କରିପାରିବି ? ପ୍ରଭୁ, ଆପଣ ମୋର ପୁତ୍ରକୁ ତୁରନ୍ତ ଆରୋଗ୍ୟ କରି ଦିଅନ୍ତୁ - ନହେଲେ ଆସନ୍ତା ପ୍ରଭାତ ପୂର୍ବରୁ ମୋର ମୃତଶରୀର ଦେଖିବାକୁ ପାଇବେ। ଶ୍ରୀକୃଷ୍ଣଙ୍କ ରାଣୀମାନଙ୍କ ମଧ୍ୟରେ ଜମ୍ବୁବତୀ ଅପୂର୍ବ ସୁନ୍ଦରୀ। ଯେଉଁଥିପାଇଁ ମଧ୍ୟ ଶାମ୍ବର ରୂପ ଏଡ଼େ ସୁନ୍ଦର। ଜମ୍ବୁବତୀଙ୍କୁ ଶ୍ରୀକୃଷ୍ଣ ମଧ୍ୟ ପ୍ରାଣ ଭରି ଭଲ ପାଉଥିଲେ। ଜମ୍ବୁବତୀଙ୍କର ଏତାଦୃଶ ବାକ୍ୟରେ ସେ ବ୍ୟଥିତ ହୋଇ ପଡ଼ିଲେ ଏବଂ ସାନ୍ତ୍ୱନା ଦେବାକୁ ଯାଇ କହିଲେ, ମୋର ଦିଅତଃ ଅଭିଶାପ ମୁଁ ଫେରାଇ ନେଇ ପାରିବି ନାହିଁ ରାଣୀ। ମୁଁ କେବଳ ଉପାୟ ବତାଇ ଦେଉଛି, ଶାମ୍ବ କେମିତି ସତ୍ୱର ଆରୋଗ୍ୟ ଲାଭ କରି ପାରିବ।

ଜମ୍ବୁବତୀ କହିଲେ ପ୍ରଭୁ, ଆପଣ ଚାହିଁଲେ ସବୁ ସମ୍ଭବ ହୋଇପାରିବ। ଆପଣ ମୋ ସହିତ ଛଳ କପଟ କରନ୍ତୁ ନାହିଁ।

ଶ୍ରୀକୃଷ୍ଣ କହିଲେ, ଶାମ୍ବ ଚାହିଁଲେ ତୁରନ୍ତ ଆରୋଗ୍ୟ ଲାଭ କରି ପାରିବ। ସେ ଚନ୍ଦ୍ରଭାଗା ତୀରରେ ସୂର୍ଯ୍ୟୋଦୟରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଦୈନିକ ସୂର୍ଯ୍ୟୋପାସନା କରୁ। ସୂର୍ଯ୍ୟ ଦେବତାଙ୍କ କୃପା ହେଲେ, ସେ କୁଷ୍ଠ ରୋଗରୁ ମୁକ୍ତ ହେବ ଏବଂ ତାର ପୂର୍ବର ସୌନ୍ଦର୍ଯ୍ୟ ସେ ଫେରିପାଇବ।

ଆରୋଗ୍ୟ ଲାଭ କରିବାର କ୍ଷୀଣ ଆଶାର ଆଲୋକ ସଞ୍ଚାରିତ ହେଲା ମାତା ପୁତ୍ରଙ୍କ ହୃଦୟରେ। ଚନ୍ଦ୍ରଭାଗା ତୀରରେ ଶାମ୍ବ ଆରମ୍ଭ କଲେ କଠୋର ସୂର୍ଯ୍ୟସାଧନା। ନିର୍ଜ୍ଜଳା ଉପବାସରେ ରହି ଗୋଟିଏ ଗୋଡ଼ରେ ଛିଡା ହୋଇ ଆରମ୍ଭ କଲେ ସୂର୍ଯ୍ୟଙ୍କର ନାମ ଜପ। ଶାମ୍ବର ଏପରି କଠୋର ତପସ୍ୟାରେ ସନ୍ତୁଷ୍ଟ ହୋଇ ସୂର୍ଯ୍ୟଦେବ ଶାମ୍ବକୁ ଦର୍ଶନ ଦେଲେ। ତାଙ୍କର କୃପାରୁ ଶରୀରର କୁଷ୍ଠ ରୋଗର ସଂପୂର୍ଣ୍ଣ ଭାବରେ ନିରାମୟ ଘଟିଲା। ଶାମ୍ବ ଆରୋଗ୍ୟ ଲାଭପରେ, ଆନନ୍ଦରେ ଅଧିର ହୋଇ ଏକ ସୂର୍ଯ୍ୟ ମନ୍ଦିରର ନିର୍ମାଣ ପାଇଁ ସଂକଳ୍ପ ନେଲେ। ସେ ବିଶ୍ୱକର୍ମାଙ୍କୁ ଅନୁରୋଧ କଲେ, ଚନ୍ଦ୍ରଭାଗା ତୀରରେ ସୂର୍ଯ୍ୟ ମନ୍ଦିରଟିଏ ନିର୍ମାଣ କରିବାକୁ। ବିଶ୍ୱକର୍ମା ଶାମ୍ବଙ୍କ ଅନୁରୋଧ ରକ୍ଷା କରି ମନ୍ଦିରଟିଏ ନିର୍ମାଣ କରିଦେଲେ।

ସେହି ସୂର୍ଯ୍ୟଦେବ ହେଉଛନ୍ତି ସୃଷ୍ଟିର ମୂଳାଧାର। ତାଙ୍କୁ ଉପାସନା କଲେ, ସକଳ କାମନା ପୂର୍ଣ୍ଣ ହୁଏ। ମହାରାଜା ମଧ ନିରୋଗ ଜୀବନ ଯାପନ କରିବେ। ତାଙ୍କର ନିମ୍ନଦେଶର ବର୍ଦ୍ଧିତ ମେରୁ ହାଡ଼ଟି ମଧ ଠିକ୍ ହୋଇଯିବ।

ସମସ୍ତେ ମନ୍ତ୍ରମୁଗ୍ଧ ହୋଇ ଭୁବନାନନ୍ଦ ରାଜଗୁରୁଙ୍କର କଥା ଶୁଣୁଥିଲେ। ସମସ୍ତେ ସମର୍ଥନ କଲେ, ଯେଉଁ ବିଶ୍ୱ ବିଖ୍ୟାତ ମନ୍ଦିରଟିଏ ନିର୍ମିତ ହେବ, ତାହା ସୂର୍ଯ୍ୟଦେବଙ୍କ ପୂଜା ଉଦ୍ଦେଶ୍ୟରେ ମଧ ଉଦ୍ଦିଷ୍ଟ ହେବ।

ସଦାଶିବ ସାମନ୍ତରାୟ କହିଲେ, ଏହି ମନ୍ଦିର ସେଇଠି ନିର୍ମିତ ହେବ, ଯେଉଁଠି ପ୍ରଥମେ ସୂର୍ଯ୍ୟୋଦୟ ଘଟିଲେ, ସୂର୍ଯ୍ୟ ଦେବତାଙ୍କୁ ଦର୍ଶନ କରି ପୂଜାର୍ଚ୍ଚନା କରାଯାଇ ପାରିବ।

ମହାରାଣୀ ଅନୁସୂୟା କହିଲେ, ଯେଉଁଠି ସୂର୍ଯ୍ୟଦେବଙ୍କ ବିଗ୍ରହ ଉପରେ ସୂର୍ଯ୍ୟଦେବଙ୍କର କିରଣ ମଧ ଝଟକିବ, ସେଭଳି ଏକ ସ୍ଥାନ ନିରୁପଣ କରାଯାଉ।

ମହାରାଜା ମୁଖ୍ୟ ସ୍ଥପତି ସଦାଶିବ ସାମନ୍ତରାଙ୍କ ଆଡକୁ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲେ। ସଦାଶିବ ସାମନ୍ତରା ତାଙ୍କର ଏ ବିଷୟରେ ମତାମତ ଦିଅନ୍ତୁ।

ସଦାଶିବ ସାମନ୍ତରା କହିଲେ, ଚନ୍ଦ୍ରଭାଗା ମୁହାଣ ନିକଟରେ ପଦ୍ମତୋଳା ଗଣ୍ଡହିଁ ଉପଯୁକ୍ତ ସ୍ଥାନ ହେବ। ସେହି ଗଣ୍ଡକୁ ଭର୍ତ୍ତି କରି ଏହି ମନ୍ଦିରକୁ ନିର୍ମାଣ କଲେ - ମନ୍ଦିରରେ ସୂର୍ଯ୍ୟଦେବଙ୍କ ବିକିରଣ ସମଗ୍ର ଦିନମାନ ରହିପାରିବ। ସୂର୍ଯ୍ୟଦେବଙ୍କୁ ମନ୍ଦିରରେ ଦିନମାନ ସମସ୍ତେ ଦର୍ଶନ କରିପାରିବେ।

ସୂର୍ଯ୍ୟୋଦୟରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଏହି ମନ୍ଦିରରେ ସୂର୍ଯ୍ୟଦେବଙ୍କ ମୂର୍ତ୍ତିରେ ଦିବ୍ୟ କିରଣ ଜାଳ ପ୍ରତିଭାତ ହେବ, କହିଲେ କାର୍ଯ୍ୟକାରୀ ସ୍ଥପତି ଗଦାଧର ମହାପାତ୍ର।

ଉପସ୍ଥିତ ସମସ୍ତ ମୁଖ୍ୟମାନେ ଏହି ପ୍ରସ୍ତାବକୁ ସମର୍ଥନ କଲେ।

ମହାରାଜା କହିଲେ, ହେଲେ ଏପରି ଏକ ମନ୍ଦିରର ପରିକଳ୍ପନା ହେବ, ଯାହା ସମଗ୍ର ବିଶ୍ୱରେ ହେବ ଅନନ୍ୟ ଏକକ। ଯାହା ହେବ ଉତ୍କଳୀୟ ଶିଳ୍ପଙ୍କର କାଳଜୟୀ କଳାର ଅପରୂପ ଆଲେଖ୍ୟ।

ଏହାପରେ ବଂଧୁରଥଙ୍କ ଆଡକୁ ଅଙ୍ଗୁଳି ନିର୍ଦ୍ଦେଶ କରି ମହାରାଜା କହିଲେ, କହନ୍ତୁ ଶିଳ୍ପ ଶାସ୍ତ୍ରର ଉପଦେଷ୍ଟା। ଆପଣ ହିଁ ଶିଳ୍ପଶାସ୍ତ୍ର ବିଶାରଦ। ଆମ ରାଜ୍ୟରେ ଏପରି ଏକ ବିସ୍ମୟକର ମନ୍ଦିରର ପରିକଳ୍ପନା କିଏ କରିପାରିବ ?

ବଂଧୁରଥ କହିଲେ, ଏ ଉତ୍କଳ ରାଜ୍ୟରେ ମୋ ମତରେ ଜଣେ ହିଁ ଶିଳ୍ପୀ ଯାହାଙ୍କ ଘର ଶିଳ୍ପଶାସ୍ତ୍ରର ଗନ୍ତାଘର। ଯେ କି ନୂତନ ନୂତନ ପରିକଳ୍ପନା, ଏହି ଶାସ୍ତ୍ରମାନ ଅଧ୍ୟୟନ କରି କରୁଛନ୍ତି। ସେ ଆଉ କେହି ନୁହଁନ୍ତି ଯୁବ ଶିଳ୍ପୀ ବିଶୁ ମହାରଣା। ମହାରାଜାଙ୍କ ନିର୍ଦ୍ଦେଶ ହେଲେ, ସେ ନୂତନ ପରିକଳ୍ପନା ମହାରାଜାଙ୍କ ସମକ୍ଷରେ ଉପସ୍ଥାପନ କରିବେ। ଛୋଟ ବଡ଼ ବିଭିନ୍ନ ଧରଣର କେତେ ମନ୍ଦିର ନିର୍ମାଣ କରି ସେ ରାଜ୍ୟରେ ସର୍ବସାଧାରଣରେ ସମାଦୃତ। ଯୁବ ଶିଳ୍ପୀ ଭାବରେ ତାଙ୍କୁ ମହାରାଜା ମଧ୍ୟ ସୁନ୍ଦର ତୋରଣ ନିର୍ମାଣରେ ପୁରସ୍କୃତ କରିଛନ୍ତି।

ମାହାରାଜାଙ୍କ ଆଖି ଆଗରେ ଭାସି ଉଠିଲା ଯୁବଶିଳ୍ପୀ ବିଶୁ ମହାରଣାର ଚେହେରା। ନୂତନ ଭାବରେ ଚନ୍ଦ୍ରଭାଗା ତୀରରେ ଯେଉଁ ପ୍ରାସାଦଟିଏ ନିର୍ମାଣ କରିଥିଲେ - ତାହାର କାରୁକଳା ଖଚିତ ତୋରଣ ନିର୍ମାଣ କରିଥିଲେ ଏହି ଯୁବଶିଳ୍ପୀ ବିଶୁ ମହାରଣା। ଖୁସୀ ହୋଇ ସେ ନିଜେ ତାଙ୍କୁ ପୁରସ୍କୃତ କରିଥିଲେ।

ନରସିଂହ ଦେବ କହିଲେ, ଆପଣ ତାଙ୍କୁ ନେଇ ଆସନ୍ତା କାଲି ଆସନ୍ତୁ ଆମର ମନ୍ତ୍ରଣା କକ୍ଷକୁ। ଆପଣଙ୍କ ଉପସ୍ଥିତିରେ ମୁଁ ଯେମିତି ମନ୍ଦିରଟିଏ ନିର୍ମାଣ କରିବାକୁ ଚାହେଁ ତାର ପରିକ୍ଳ୍ପନା ସମ୍ବନ୍ଧରେ ଯୁବଶିଳ୍ପୀ ବିଶୁ ମହାରଣା ସହିତ ଆଲୋଚନା କରାଯିବ। କେତେ ପ୍ରକାରର ନୂତନ ମନ୍ଦିର ପରିକଳ୍ପନା ତାଙ୍କ ପାଖରେ ଅଛି - ସେହି ଅନୁସାରେ ସର୍ବଶ୍ରେଷ୍ଠ ପରିକଳ୍ପନାଟିକୁ ଗ୍ରହଣ କରି ମନ୍ଦିର ନିର୍ମାଣ କରାଯିବ। ହଁ ମନେ ରଖନ୍ତୁ ବନ୍ଧୁ ରଥ, ପ୍ରଭୁ ଜଗନ୍ନାଥଙ୍କ ମନ୍ଦିର ସର୍ବ ସାଧାରଣଙ୍କ ଚକ୍ଷୁରେ କେବଳ ବିଶାଳ ନୁହେଁ - ସୌନ୍ଦର୍ଯ୍ୟରେ ମଧ ଅତୁଳନୀୟ। ସେହି ମନ୍ଦିରର ନିର୍ମାଣର ପରିକଳ୍ପନା ଓ କୌଶଳଠାରୁ ଏହି ମନ୍ଦିର ହେବ ଭିନ୍ନ ଏବଂ ଏକ ନୂତନତ୍ୱର ପରିପ୍ରକାଶ। ଏହି ମନ୍ଦିରର ପରିକଳ୍ପନା ସହିତ ଖର୍ଚ୍ଚର ମଧ ଅଟକଳ କରନ୍ତୁ। ଏଥିପାଇଁ ବିଧିବଦ୍ଧ ଯୋଜନା ପ୍ରସ୍ତୁତ ହେଉ। ପ୍ରଥମେ ପଦ୍ମତୋଳା ଗଣ୍ଡକୁ ଭର୍ତ୍ତି କରାଯାଉ। ଗଣ୍ଡଟି ଭର୍ତ୍ତି ହେଲାପରେ ଶୁଭ ଦିବସରେ ମନ୍ଦିରର ମୂଳଦୁଆ ସ୍ଥାପନ କରାଯାଉ। ଆସନ୍ତାକାଲି ଯୁବ ଶିଳ୍ପୀ ବିଶୁ ମହାରଣା ସହିତ ସବିଶେଷ ଆଲୋଚନା ପରେ ସମସ୍ତ ବ୍ୟବସ୍ଥା ତୁରନ୍ତ ଗ୍ରହଣ କରିବାକୁ ପଡ଼ିବ।



# (୮)

ତହିଁ ପରଦିନ ମନ୍ତ୍ରଣା କକ୍ଷରେ ମହାରାଜା, ମହାରାଣୀ, ସଦାଶିବ ସାମନ୍ତରା, ବିଶୁ ମହାରଣା, ବଂଧୁରଥ ଏବଂ ବିଦ୍ୟାଧର ମହାପାତ୍ର ଉପସ୍ଥିତ। ବିଶୁ ମହାରଣା ବିଶ୍ୱର ଏକ ଅପୂର୍ବ ମନ୍ଦିରର ପରିକଳ୍ପନା ବାଢ଼ିବା ପାଇଁ ପ୍ରସ୍ତୁତ ହୋଇ ଆସିଛନ୍ତି। ଶିଳ୍ପ ପୁରାଣରେ କେତେ କେତେ ମନ୍ଦିର, କେତେ ସେତୁ, କେତେ ଦୁର୍ଗ ନିର୍ମାଣର କୌଶଳ ବର୍ଣ୍ଣନା ରହିଛି। ତାହା ସେ ଅନୁଧ୍ୟାନ କରି ଆସିଛନ୍ତି। ରାମାୟଣରେ ରାବଣର ଶ୍ୱଶୁର ମୟଦାନବ ନିର୍ମାଣ କରିଥିବା ସ୍ୱର୍ଣ୍ଣପୁରୀ ଲଙ୍କାଗଡ଼ ଓ ଲଙ୍କେଶ୍ୱର ମନ୍ଦିରର ନିର୍ମାଣ ସହିତ, ମହାଭାରତର ଯୁଧିଷ୍ଠିରଙ୍କ ରାଜଧାନୀ ଇନ୍ଦ୍ରପ୍ରସ୍ଥ ଗଡ଼ର ନିର୍ମାଣ, ଶ୍ରୀକୃଷ୍ଣଙ୍କର ଦ୍ୱାରକାପୁରୀ ନିର୍ମାଣ ଆଦି କେତେ କେତେ ମନ୍ଦିର ନିର୍ମାଣ କରିଥିବା କୌଶଳ ତାଙ୍କୁ ଜଣାଅଛି। କେବଳ ସେତିକି ନୁହେଁ କୃଷ୍ଣଙ୍କ ପୁତ୍ର ଶାମ୍ବଙ୍କ ଅନୁରୋଧରେ ବିଶ୍ୱକର୍ମାଙ୍କ ନିର୍ମିତ ଚନ୍ଦ୍ରଭାଗା ତୀରରେ ସୂର୍ଯ୍ୟ ମନ୍ଦିରର ନିର୍ମାଣ କୌଶଳ ସେ ଶିଳ୍ପ ଶାସ୍ତ୍ରରୁ ମଧ୍ୟ ପଢ଼ି ଜାଣିଛନ୍ତି।

ସେ ଜାଣିଛନ୍ତି - ପ୍ରାୟ ସବୁ ମନ୍ଦିରର ନିର୍ମାଣ କୌଶଳ ଏକାପରି। ସେଥିପାଇଁ କେଉଁ ନୂତନ ପରିକଳ୍ପନା ସେ ରାଜାଙ୍କ ଆଗରେ ବାଢ଼ିବେ, ରାତ୍ରିରେ ଏକାନ୍ତରେ ଚିନ୍ତା କରିଥିଲେ। ଡାକିଥିଲେ ଭକ୍ତିରେ ତାଙ୍କ ଘରେ ଥିବା ବେଣୁଧରଙ୍କୁ। ସତେ ଯେମିତି ସେ ବେଣୁଧରଙ୍କ ଆଶୀର୍ବାଦ ପ୍ରାପ୍ତ ହେଲେ। ତାଙ୍କ ମନକୁ ଆସିଲା ସୂର୍ଯ୍ୟ ହେଉଛନ୍ତି ଗତିଶୀଳ ଦେବତା। ପୁରାଣରୁ ପଢ଼ିଛନ୍ତି ସୂର୍ଯ୍ୟ ସପ୍ତଅଶ୍ୱଦ୍ୱାରା ଚାଳିତ ରଥରେ ପରିକ୍ରମା କରନ୍ତି। ଯେଉଁ ରଥର ସାରଥୀ ଅରୁଣ। ଯେଉଁ ମନ୍ଦିର ଗଢ଼ା ହେବ - ସେ ମନ୍ଦିର ଯେମିତି ଜଣା ପଡିବ ଏକ ଗତିଶୀଳ ମନ୍ଦିର। ସେଥିପାଇଁ ଭାବିଲେ, ମନ୍ଦିର ପାଦ ଦେଶ ସହିତ ଚକଗୁଡ଼ିକ ସଂଯୋଗ କଲେ, ତାହା ଦେଖାଯିବ ଚଳଚଞ୍ଚଳ। ତେଣୁ ମନ୍ଦିର ହେବ ଏକ ରଥ। ଯେଉଁଥିରେ ସମ୍ମୁଖରେ ଯୋଚା ହେବ ସୂର୍ଯ୍ୟଙ୍କର ରଥର ସପ୍ତାଶ୍ୱ ଭଳି ସାତୋଟି ଅଶ୍ୱ।

ମନେ ମନେ ପରିକଳ୍ପନା କରିଥିବା ଏମିତି ଏକ ରଥ ଉପରେ ମନ୍ଦିର ନିର୍ମାଣ କଥା, ପତ୍ନୀ ପଦ୍ମାଳୟଙ୍କୁ ସେ କହିଥିଲେ। ପଦ୍ମାଳୟା ପତିଙ୍କର ଏହି ପରିକଳ୍ପନାକୁ ଶୁଣି ଆନନ୍ଦରେ ତାଙ୍କୁ ଆଲିଙ୍ଗନ କରି କହିଥିଲେ, ସବୁ ଆମର ଏହି ବେଣୁଧରଙ୍କ କରୁଣା। ତା ନହେଲେ ତୁମ ମନକୁ ଏମିତି ଏକ ବିଚିତ୍ର ପରିକଳ୍ପନା ଆସିଲା କେମିତି ?

ମହାରାଜା ନରସିଂହ ଦେବଙ୍କର ସୂର୍ଯ୍ୟ ମନ୍ଦିର ନିର୍ମାଣ କରିବାର ଡାକରା ସେଦିନ ଯେତେବେଳେ ତାଙ୍କ ପାଖରେ ପହଞ୍ଚିଲା, ସେ ଆନନ୍ଦରେ ଯେତେ ବିଭୋର ହେଲେ - ଚିନ୍ତିତ ମଧ୍ୟ ତାଠାରୁ ଅଧିର ହୋଇପଡ଼ିଲେ। ଜାଣିଥିଲେ ମହାରାଜା ମନ୍ତ୍ରଣାକକ୍ଷକୁ କାହିଁକି ତାଙ୍କୁ ଡାକିଛନ୍ତି। ସଦାଶିବ ସାମନ୍ତରା ନିଜେ ଆସିଥିଲେ। ତାଙ୍କୁ କହି ଯାଇଥିଲେ ଏ ମନ୍ଦିର ହେବ ସୂର୍ଯ୍ୟ ମନ୍ଦିର; ଅନନ୍ୟ ଏକକ। ସମଗ୍ର ବିଶ୍ୱରେ ଉତ୍କଳୀୟ ଶିଳ୍ପୀଙ୍କର କଳା ଓ କୀର୍ତ୍ତିର ସ୍ମାରକୀ। ସେଇଠୁ ତାଙ୍କୁ ଏ ଚିନ୍ତା ଘାରିଥିଲା - ଏମିତି ମନ୍ଦିର କେଉଁଠି କେହି ଦେଖି ନଥିବ ବା ଶୁଣି ନଥିବ। ସେମିତି ମନ୍ଦିରଟିଏ ନିର୍ମାଣ କରାଯିବ। ପ୍ରଭୁଙ୍କ ଆଶୀର୍ବାଦ ନହେଲେ କିଛି କରିବା ଅସମ୍ଭବ। ସେହି ପ୍ରଭୁ ବେଣୁଧରଙ୍କ ଭିତରେ ସେ ଜଗତର ନାଥ ଜଗନ୍ନାଥଙ୍କୁ ଦର୍ଶନ କରି ପୂଜାର୍ଚ୍ଚନା କରନ୍ତି, ଆଶୀର୍ବାଦ ଭିକ୍ଷା କରନ୍ତି।

ପୂଜାର୍ଚ୍ଚନା କରିବା ପତ୍ନୀ ପଦ୍ମାଳୟଙ୍କର ନିତ୍ୟନୈମିତ୍ତିକ କର୍ମ। କଳା ମୁଗୁନି ପଥରର ବେଣୁଧର। ନିହଣ ମୁଗୁର ଧରି ମୁଗୁନି ପଥରକୁ କାଟି ଗଢ଼ିଥିବା ଏକ ଜୀବନ୍ତ ମୂର୍ତ୍ତିଟିଏ। ପ୍ରାଣପ୍ରିୟା ପଦ୍ମାଳୟାଙ୍କୁ ଅର୍ପଣ କରିଥିଲେ ଯୁବଶିଳ୍ପୀ ବିଶୁ। ସେହି ପତ୍ନୀଙ୍କର ଅନୁରୋଧରେ ଠାକୁର ବେଣୁଧରଙ୍କ ପାଇଁ ତୋଳି ଦେଇଥିଲେ ଅପୂର୍ବ କାରୁକାର୍ଯ୍ୟ ଖଚିତ ଛୋଟ ମନ୍ଦିରଟିଏ। ନିଜକ୍ଷୁଦ୍ର ଗାଆଁ ପାଖରେ ବିଶାଳ ବରୁଣାଇ ପାହାଡ଼। ପଥରର ଅଭାବ ନାହିଁ। ଖୁସି ହୋଇ ଯାଇଥିଲେ ପଦ୍ମାଳୟା। ନିଷ୍ଠାର ସହ ଆରମ୍ଭ କରିଥିଲେ ବେଣୁଧରଙ୍କର ମନ୍ଦିର ପ୍ରତିଷ୍ଠା ଉତ୍ସବ। ଗାଁର ଭାଇ ଓ ବନ୍ଧୁମାନଙ୍କୁ ଆମନ୍ତ୍ରଣ କରିଥିଲେ ପ୍ରଥମ ପୂଜା ଉତ୍ସବକୁ। ପତି ପତ୍ନୀଙ୍କ ମତରେ ବେଣୁଧର ସେମାନଙ୍କ କଥା ଶୁଣନ୍ତି। କେବଳ ତାଙ୍କୁ ଭକ୍ତିରେ ଡାକିଲେ ହେଲା।- ସଂଧ୍ୟା ଆଳତି ବେଳେ ବେଣୁଧରଙ୍କ ଗଳାରେ ଗୁନ୍ଥିଥିବା ରଜନୀଗନ୍ଧାର ମହ ମହ ବାସ୍ନାୟିତ ମାଳଟି ପିନ୍ଧଇ ଦେଇ ଧୂପ, ଝୁଣା ଦେଇ ଯେତେ ବେଳେ ଘିଅର ସଳିତା ଜାଳି ପୂଜା କଲେ - ସେତେବେଳେ ହାତ ଦୁଇଟି ଯୋଡ଼ି ସାମ୍ନାରେ ଆଖି ମେଲି ବସିଥିଲେ - ବିଶୁ। ତାଙ୍କ ଆଖି ଆଗରେ ବେଣୁଧରଙ୍କ ମୂର୍ତ୍ତି ଯେମିତି ଜୀବନ୍ତ ହୋଇ ଉଠିଲା। ବିମଳ ଅଭୟ ମୁଦ୍ରାରେ ତାଙ୍କୁ ଆଶୀର୍ବାଦ ଦେଲେ।

ସେ ଦିନ ମନ୍ତ୍ରଣା କକ୍ଷରେ ଯେତେବେଳେ ବିଶୁ ମହାରଣା ବାଢ଼ି ବସିଲେ - ତାଙ୍କର ମନ୍ଦିରର ପରିକଳ୍ପନା - ତାହା ଶୁଣି ସ୍ତମ୍ଭୀଭୂତ ହୋଇଗଲେ ମହାରାଜା, ମହାରାଣୀ ଓ ଉପସ୍ଥିତ ମୁଖ୍ୟବୃନ୍ଦ। ମନ୍ଦିର ହେବ ସୂର୍ଯ୍ୟଦେବଙ୍କ ରଥ। ଯେଉଁ ରଥରେ ସୂର୍ଯ୍ୟଦେବ ସ୍ୱୟଂ ଆରୋହଣ କରିଥିବେ। ସେହି ରଥର ସାରଥୀ ହେବେ ଅରୁଣ ଦେବ। ରଥଟିକୁ ଟାଣୁଥିବେ ସାତଟି ବଳିଷ୍ଠ ଅଶ୍ୱ। ଏହି ଅଶ୍ୱଗୁଡ଼ିକ ଯେମିତି କଦମ ପକାଇ ରଥଟିକୁ ଟାଣି ନେଉଥିବେ।

ସୂର୍ଯ୍ୟ ହେଉଛନ୍ତି ସମୟର ଦେବତା। ସାତଟି ଅଶ୍ୱ ସାତଟି ବାରର ପ୍ରତୀକ। ରଥର ଦୁଇ ପାର୍ଶ୍ୱରେ ଲାଗିବ ବାରଟି କରି ଚକ। ଘଣ୍ଟା ଘଣ୍ଟା ବାର ଘଣ୍ଟା ଉପରେ ଦିନଟି ରହିବ। ପ୍ରତ୍ୟେକ ଚକ ଆଠଟି ଅଖକୁ ନେଇ ତିଆରି ହେବ। ଯାହା ବୁଝାଇବ ଆଠଦଣ୍ଡ। କାରୁକାର୍ଯ୍ୟରେ ରୂପାୟିତ ହେବ ଏହିଗୁଡ଼ିକ।

ମହାରାଣୀ ଅନୁସୂୟା ଆଗ୍ରହର ସହିତ କହିଲେ, କୁହ କୁହ ଶିଳ୍ପୀଶ୍ରେଷ୍ଠ ମନ୍ଦିରର ପରିକଳ୍ପନା। ବିଶୁ ଆରମ୍ଭ କଲେ, ଚକ ଏବଂ ଅଶ୍ୱର ନିର୍ମାଣର ସ୍ତର ଉପରେ ରହିବ ସୂର୍ଯ୍ୟମନ୍ଦିର। ଏହା ହେବ ତିନିଭାଗରେ ବିଭକ୍ତ। ଏହା ହେବ ଶିଳ୍ପ ଶାସ୍ତ୍ରାନୁସାରେ ଏକ ରେଖ ଦେଉଳ। ପ୍ରଥମ ଭାଗ ହେବ ବାଡ଼। ଦ୍ୱିତୀୟ ଭାଗ ହେବ ଗଣ୍ଡି ଓ ଶେଷ ଭାଗଟି ହେବ ମସ୍ତକ। ଯାହା ଉପରେ ଲାଗିବ କଳସଚୂଡ଼ା।

ମହାରାଜା ନରସିଂହ ଦେବ କହିଲେ, ହେ ଯୁବଶିଳ୍ପୀ ବିଶୁ! ତୁମେ ଯେଉଁ ପରିକଳ୍ପନା କରିଛ- ସେପରି ଏକ ମନ୍ଦିର ନିର୍ମାଣ କରାଯାଇ ପାରିବ ତ? ବିନୀତ ଭାବରେ ବିଶୁ କହିଲେ, ପ୍ରଭୁ ଜଗନ୍ନାଥଙ୍କ କୃପା ହେଲେ ଏପରି ମନ୍ଦିରଟିଏ ନିର୍ମିତ ହୋଇ ପାରିବ।

ନରସିଂହ ଦେବ କହିଲେ, ସଦାଶିବ ସାମନ୍ତରାୟ। ତୁମେ ଏହି ମନ୍ଦିରର ଯୋଜନା ଏବଂ ଅଟକଳ ବଂଧୁ ରଥ ଓ ଏହି ବିଶୁ ମହାରଣାଙ୍କୁ ବସେଇ ପ୍ରସ୍ତୁତ କରିବ। ଆବଶ୍ୟକ ଖର୍ଚ୍ଚର ଅଟକଳ କରିବାକୁ କୁଣ୍ଠାବୋଧ କରିବ ନାହିଁ। ଆମ ରାଜକୋଷରେ ପ୍ରଚୁର ଧନରତ୍ନ ଗଚ୍ଛିତ ରହିଛି। ମାତ୍ର ଏହି ମନ୍ଦିର ସଂପୂର୍ଣ୍ଣ ହେବା ପାଇଁ କେତେ ସମୟ ଲାଗିବ, କେତେ ଜଣ ଶିଳ୍ପୀ ଓ ଶ୍ରମିକ ମୁତୟନ କରାଯିବ, ତାହାର ମଧ୍ୟ ଏକ ଅଟକଳ ପ୍ରସ୍ତୁତ ହେବା ଆବଶ୍ୟକ। ବାରବର୍ଷରୁ ଅଧିକ ସମୟ ଅତିବାହିତ ହେବା ବାଞ୍ଛନୀୟ ନୁହେଁ। ପୁରୋହିତ ଭୁବନାନନ୍ଦ ରାଜଗୁରୁ, ଏହି ଅଳ୍ପଦିନ ମଧ୍ୟରେ ଭିତ୍ତି ପ୍ରସ୍ତର ସ୍ଥାପନର ଶୁଭଦିନ ଧାର୍ଯ୍ୟ କରନ୍ତୁ।

ମହାରାଣୀ ଅନୁସୂୟା ଦେବୀ ସବୁକଥା ଶୁଣି ସାରିଲାପରେ କହିଲେ, ମୋର ମହାରାଜାଙ୍କୁ ଯେଉଁ ଅନୁରୋଧ ଥିଲା, ସେ ବିଷୟରେ ମଧ୍ୟ ଶିଳ୍ପୀ ଶ୍ରେଷ୍ଠ ବିଶୁ ମହାରଣା ଶୁଣନ୍ତୁ। ମନ୍ଦିର ବେଢ଼ା ମଧ୍ୟରେ ପ୍ରଥମେ ନିର୍ମିତ ହେବ ମାୟାଦେବୀ ମନ୍ଦିର। ଯେଉଁ ମନ୍ଦିରରେ ଶକ୍ତି ସ୍ୱରୂପିଣୀ ମାଆ ଚଣ୍ଡୀଦେବୀଙ୍କର ପୂଜାର୍ଚ୍ଚନା ହେବ।

ରାଣୀଙ୍କ କଥା ଶେଷ କରିବାକୁ ନଦେଇ ନରସିଂହ ଦେବ କହିଲେ, ଏହି ମନ୍ଦିରଟି ନିର୍ମାଣର ସଂକଳ୍ପ କେବଳ ମହାରାଣୀଙ୍କର ନଥିଲା। ଏହା ମଧ୍ୟ ଥିଲା ମୋର ସଂକଳ୍ପ। ଗୋଟିଏ ଦିନରେ ଦୁଇଟି ମନ୍ଦିରର ଭିତ୍ତି ପ୍ରସ୍ତର ସ୍ଥାପନ କରିବେ ମହାରାଣୀ। ସମସ୍ତେ ସର୍ବାନ୍ତ କରଣରେ ସମର୍ଥନ ଜଣାଇଲେ ମହାରାଜାଙ୍କ ପ୍ରସ୍ତାବକୁ। ପଦ୍ମତୋଳା ଗଣ୍ଡକୁ ଭର୍ତ୍ତି କରି ମନ୍ଦିର ଦୁଇଟିର ମୂଳଦୁଆ ପଡ଼ିବ। ପ୍ରଥମେ ପଦ୍ମତୋଳା ଗଣ୍ଡଟି ଭର୍ତ୍ତି ହୋଇ କ୍ଷେତ୍ର ପ୍ରସ୍ତୁତ ହେବା ଆବଶ୍ୟକ। ଯାହାକୁ ନେଇ ଯୋଜନାର ନକ୍ସା ଏବଂ ଅଟକଳ କରାଯିବ। ତା ଆଗରୁ ଭିତ୍ତି ପ୍ରସ୍ତର ସ୍ଥାପନର ଶୁଭ ଦିଆଯିବ ବା କେମିତି ?

ମହାରାଜା ଦାୟିତ୍ୱ ଦେଲେ ମନ୍ତ୍ରୀ ତଥା ମୁଖ୍ୟ ସ୍ଥପତି ସଦାଶିବ ସାମନ୍ତରାଙ୍କ ଉପରେ।

ମହାରାଜା କହିଲେ, ଏଥିପାଇଁ ଧାର୍ଯ୍ୟ ସମୟ କେତେ ରହିବ। କହନ୍ତୁ ସାମନ୍ତରା। ସାମନ୍ତରା କହିଲେ, ମୁଖ୍ୟ ଯୋଗାଣକାରୀ ବିଶ୍ୱାନଥ ପ୍ରଧାନ, ଏକଧାର୍ଯ୍ୟ ସମୟ ନିର୍ଦ୍ଧାରଣ କରନ୍ତୁ। ଯେତେ ଅଧିକ ସଂଖ୍ୟାରେ ଶ୍ରମିକ ଲାଗିବେ, ଯେତେ ଆବଶ୍ୟକ ପଥର ପାହାଡ଼ ଓ ନଦୀଶଯ୍ୟା ମାନଙ୍କରୁ କଟା ହୋଇ ଆସିବ, ସେତେ ସଅଳ କ୍ଷେତ୍ର ପ୍ରସ୍ତୁତ କାର୍ଯ୍ୟ ସମାପ୍ତ ହୋଇପାରିବ।

ଏହି ଗଣ୍ଡକୁ ଭର୍ତ୍ତି କରିବା କାର୍ଯ୍ୟ ଏଡ଼େ ସହଜ ନୁହେଁ। ଠିକ୍ ତାହାହିଁ ହେଲା। ପଥର ଆସିଲା ଖୋର୍ଦ୍ଧାର ବରୁଣେଇ ପାହାଡ଼ରୁ। ମହାନଦୀ ଶଯ୍ୟାରେ ସାତକୋଶିଆରୁ କୁଶଭଦ୍ରାର ପଥର ଗଣ୍ଡରୁ। ବ୍ରାହ୍ମଣୀନଦୀର ତୀର ପାହାଡ଼ରୁ। ଏମିତି ନିକଟ ଅଦୂରରେ ଥିବା ବିଭିନ୍ନ ନଦୀ ଶଯ୍ୟା ଓ ପାହାଡ଼ମାନଙ୍କରୁ। ଏହା ସହିତ ମଧ୍ୟ ମୂର୍ତ୍ତି ଓ ମନ୍ଦିର ନିର୍ମାଣ ନିମିତ୍ତ ମୟୂରଭଞ୍ଜର ଖୀଚିଂ, ନୀଳଗିରି, ଗଞ୍ଜାମ ଆଦି ଦୂରସ୍ଥାନରୁ ବିଭିନ୍ନ କିସମର ପଥର ଆଣିବାର ବ୍ୟବସ୍ଥା ହେଲା। ହାତୀମାନଙ୍କ ଦ୍ୱାରା, ନଦୀରେ ଭେଳା ସାହାଯ୍ୟରେ, ବଳଦଗାଡ଼ି ଆଦିରେ ବଡ଼ ବଡ଼ ପଥର ମଧ୍ୟ ଆଣିବାର ବ୍ୟବସ୍ଥା ହେଲା।

ପଦ୍ମତୋଳା ଗଣ୍ଡ ଭର୍ତ୍ତି କରିବାରେ ବିଳମ୍ବ ଘଟିଲା। ପଥରଗୁଡ଼ିକ ପ୍ରଖର ସ୍ରୁଅରେ ଗଡ଼ିଯିବା ଓ ବିକ୍ଷିପ୍ତ ହୋଇ ପଡ଼ିବା ଏହାର ଅନ୍ୟତମ କାରଣ। ନିର୍ଦ୍ଦିଷ୍ଟ ସମୟରେ କାଳେ ପଦ୍ମତେଳା ଗଣ୍ଡ ଭର୍ତ୍ତି ହୋଇ ଭିତ୍ତି ପ୍ରସ୍ତର ସ୍ଥାପିତ ହୋଇପାରିବ ନାହିଁ, ଏଥିପାଇଁ ସଦାଶିବ ସାମନ୍ତରାୟ ବିଶେଷ ଚିନ୍ତିତ ହୋଇପଡ଼ିଲେ। ଅଟକଳ କରିଥିବା ପଥର ଖଣ୍ଡଠାରୁ ଅଧିକ ପଥର ପଦ୍ମତେଳା ଗଣ୍ଡ ସନ୍ନିକଟରେ ଜମା ହୋଇ ଗଣ୍ଡ ଗର୍ଭରେ ପଡ଼ିଲା। ଗଣ୍ଡ ଭର୍ତ୍ତି ହେଲା ନାହିଁ। କାହିଁକି ପଦ୍ମତୋଳା ଗଣ୍ଡକୁ ମନ୍ଦିର ମୂଳଦୁଆର ସ୍ଥାନ ଭାବରେ ଗ୍ରହଣ କରାଗଲା ? ସେହି ପ୍ରଶ୍ନ ଉଠାଇଥିଲେ ପୁରୋହିତ ଭୁବନାନନ୍ଦ ରାଜଗୁରୁ। ତାହାର ଉତ୍ତର ଦେଇଥିଲେ ଶିଳ୍ପ ଶାସ୍ତ୍ରୀ ବିଶାରଦ ବନ୍ଧୁରଥ। ସେ କହିଥିଲେ, ମୂଳଦୁଆ ଯେତେ ଗଭୀର ହେବ, ମନ୍ଦିରଟି ସେତେ ସୁଦୃଢ଼ ହେବ। ଅନ୍ୟତ୍ର ସେତେ ସୁଦୃଢ଼ ହେବ ନାହିଁ। ସଦାଶିବ ସାମନ୍ତରାଙ୍କ ସମ୍ମୁଖରେ ମୁଖ୍ୟ ସମସ୍ୟା - ସୁଦୃଢ଼ ଭିତ୍ତି ପ୍ରସ୍ତର ସ୍ଥାପନ। ମହାରାଜା କାଳେ ଜାଣିବେ ସେ ଏ କାର୍ଯ୍ୟ କରିବାରେ ବିଫଳ, ତାହାଲେ ତାଙ୍କର ଅବସ୍ଥା କ'ଣ ହେବ ? କେଉଁ ଦଣ୍ଡ ମହାରାଜା ଦେବେ - ତାଙ୍କୁ ହିଁ ଜଣା। ବ୍ୟର୍ଥତାର ଗ୍ଲାନି ନେଇ ସେ କେମିତି ମହାରାଜାଙ୍କଠାରେ ମୁହଁ ଦେଖାଇବେ। ମାତ୍ର ପଥର ପଡୁଥିଲା ବିକ୍ଷିପ୍ତ ଭାବରେ। ପଥରର ଫାଙ୍କ ଦେଇ ସମୁଦ୍ର ଓ ନଦୀ ଜୁଆରର ଢେଉ ପଥର ଗୁଡ଼ିକୁ ତାର ସ୍ରୋତରେ ଟାଣି ନେଉଥିଲା।

ବିଚକ୍ଷଣ ଲୋକକୁ ବେଳେ ବେଳେ ବୁଦ୍ଧି ଦିଶେ ନାହିଁ। ସଦାଶିବ ସାମନ୍ତରାଙ୍କ ମୁଣ୍ଡକୁ ମଧ ସେ ଭଳି ବୁଦ୍ଧି ଆସିଲା ନାହିଁ। କାଳେ ମହାରାଜା ତାଙ୍କ ଉପରେ ବିରକ୍ତ ହୋଇ ତାଙ୍କୁ ବନ୍ଦୀ କରିବେ। ସେ ଭୟ, ମନ୍ତ୍ରୀ ତଥା ମୁଖ୍ୟ ସ୍ଥପତିଙ୍କ ମୁଣ୍ଡକୁ ଛୁଇଁଲା। ସେ ଘୋଡ଼ାରେ ଚଢ଼ି ବଣକୁ ପଳାଇଲେ ଆତ୍ମଗୋପନ କରିବା ପାଇଁ। କେତେ କାଳ ବା ଆତ୍ମଗୋପନ କରିବେ ସେ ? ଚାରିଆଡ଼େ ଚହଳ ପଡ଼ିଗଲା ତାଙ୍କର ଅନ୍ତର୍ଦ୍ଧାନ କଥା। ସମସ୍ତେ, ବିଶେଷ କରି ମହାରାଜା ଓ ମହାରାଣୀ ଚିନ୍ତିତ ହୋଇ ପଡ଼ିଲେ।

ସୁନ୍ଦର ଅଟ୍ଟାଳିକାରେ ବାସ କରୁଥିବା, ବିଳାସ ବ୍ୟସନରେ ଜୀବନ ବିତାଉଥିବା ରାଜ୍ୟର ମନ୍ତ୍ରୀ, ମୁଖ୍ୟ ସ୍ଥପତି ବଣରେ ଦୁଇ ତିନି ଦିନରେ ମଧ ଆହାର ନିଦ୍ରା ବିନା ଅସ୍ଥିର ହୋଇ ପଡ଼ିଲେ।

ଘୋଡ଼ାଟିକୁ ନେଇ କେତେବେଳେ ଝରଣାର ପାଣି ପିଆଇ ଓ ନିଜେ ପିଇ ତୃଷ୍ଣା ନିବାରଣ କରୁଥିଲେ। ଘୋଡ଼ାକୁ କେତେବେଳେ ଚାରଣ ଭୂମି ଦେଖି ଚରାଉଥିଲେ। ହେଲେ, ଭୋକରେ ସେ ଏହି କେଇଦିନ ମଧ୍ୟରେ ଦୁର୍ବଳ ହୋଇ ପଡ଼ିଲେ। ସେ ମନେ ମନେ ମହାପ୍ରଭୁ ଜଗନ୍ନାଥଙ୍କୁ ସ୍ମରଣ କଲେ। ଦୁଃଖ ପଡ଼ିଲେ ମଣିଷ ହରିଙ୍କୁ ସ୍ମରଣ କରେ। ସୁଖରେ ମଣିଷ ହରିଙ୍କୁ ଭଜନା କରିବା ପାଇଁ ଭୁଲିଯାଏ। ମାତ୍ର ଜଗତରେ ଯିଏ ସୁଖରେ ବି ହରିକୁ ଭଜେ, ତାର ଦୁଃଖ କେଉଁଠୁ ଆସିବ ? ଭକ୍ତର ଭଗବାନ, ସଦାଶିବ ସାମନ୍ତରାଙ୍କ କଥା ଶୁଣିଲେ। ହାଲିଆ ହୋଇ ନିଛାଟିଆ ନିକାଞ୍ଚନ ଜଙ୍ଗଲରେ ବୁଲୁଥିବା ସମୟରେ ନିକଟରେ ଏକ କୁଡ଼ିଆରୁ ଉପରକୁ ଧୂଆଁ ବାହାରୁ ଥିବାର ଦେଖିଲେ। ତାଙ୍କ ନିରାଶ ହୃଦୟରେ ଆଶା ସଞ୍ଚାର ହେଲା। ସେ ସେହି କୁଡ଼ିଆରେ ଯାଇ ପହଞ୍ଚିଲେ। ତାଙ୍କ ପାଦ ଶବ୍ଦ ଶୁଣି କୁଡ଼ିଆ ଭିତରୁ ଜଣେ ବୃଦ୍ଧା ବାହାରି ଆସିଲେ। ତାଙ୍କୁ ସଦାଶିବ ସାମନ୍ତରା ପ୍ରଣାମ କଲେ ଏବଂ କହିଲେ, ମାଉସୀ ବଡ଼ ଭୋକ। କିଛି ଖାଇବାକୁ ମିଳିବ ? ବୃଦ୍ଧା ଜଣକ ତାଙ୍କୁ କହିଲେ, ଟିକିଏ ପିଣ୍ଡାରେ ବସିପଡ଼। ଏହା କହି ଚଟେଇଟିଏ ମେଲାଇ ଦେଲେ। ତାପରେ ପଚାରିଲେ, ତୁ କ'ଣ ମୋ ରାନ୍ଧିଥିବା ଜାଉ ଟିକିଏ ଖାଇବୁ ? ଭୋକରେ ସଦାଶିବଙ୍କର ପେଟ ଜଳୁଥିଲା। କହିଲେ, ଯାହା ଦେଲେ ମୁଁ ଖାଇବି। ବୁଢ଼ୀ ଜଣକ ଗୋଟିଏ ଢ଼ାଳରେ ପାଣି ଭିତରୁ ନେଇ ଆସିଲେ ଏବଂ କହିଲେ ହାତ ମୁହଁ ଧୋଇ ପକା ପୁଅ। ମୁଁ ଥାଳିଆରେ ଜାଉ ବାଢ଼ି ନେଇ ଆସେ। ଏହା କହି ବୁଢ଼ୀ ଭିତରକୁ ଚାଲିଗଲେ। ସଦାଶିବ ସାମନ୍ତାରା ହାତ ମୁହଁ ଧୋଇ ପକାଇଲେ। ବୁଢ଼ୀ ଥାଳିରେ ଧୂଆଁ ଉଠୁଥିବା ଗରମ ଜାଉ ନେଇ ଆସିଲେ। ସଦାଶିବ ସାମନ୍ତରାଙ୍କୁ ତର ସହିଲା ନାହିଁ। ଏକାଥରେ ଥାଳିଆ ମଧ୍ୟରେ ଜାଉ ଉଠାଇବାକୁ ହାତ ପୁରାଇ ଦେଲେ। ଗରମ ଜାଉ ଉଠାଇବେ କ'ଣ, ଉହୁ ଉହୁ କହି ହାତ ବାହାର କରି ଆଣି, ଢ଼ାଳରେ ଥିବା ପାଣିରେ ଅସହ୍ୟ ଯନ୍ତ୍ରଣା ହେଉଥିବା ହାତଟିକୁ ଧୋଇ ପକାଇଲେ ଏବଂ କଷ୍ଟରେ ବୁଢ଼ୀଙ୍କ ମୁହଁକୁ ଚାହିଁ ରହିଲେ। ବୁଢ଼ୀ କହିଲେ, ଏ କ'ଣ କଲୁରେ ପୁଅ ? ଗରମ ଜାଉ-ଥାଳିଆ ମଝିରେ କେହି ହାତ ପୁରାଏ ? ହାତରେ ଫୋଟକା ହେବ ନାହିଁ ? ତୋ ବୁଦ୍ଧି ନାହିଁ ପୁଅ। ଗରମ ଜାଉ ଖାଇବାକୁ ହେଲେ, ଥାଳିଆ ପାଖରୁ କାଟି କାଟି ଜାଉ ଖାଇବାକୁ ହେବ। ଗୋଟିଏ କଡ଼ରୁ ନେଲେ କିଛି ଅସୁବିଧା ହେବ ନାହିଁ।

ହଠାତ୍ ଯେମିତି ସଦାଶିବଙ୍କ ମୁଣ୍ଡରେ ସୁବୁଦ୍ଧି ପଶିଗଲା । ସେ ଆନନ୍ଦରେ ଚିତ୍କାର କଲେ –ପାଇଗଲି, ପାଇଗଲି । ଆରେ ପଦ୍ମତୋଳା ଗଣ୍ଡର କୂଳରୁ ଯଦି ଗୋଟିଏ ପାଖରୁ କେବଳ ପଥର ପରେ ପଥର ବସାଇ ଥାନ୍ତି - ଏତେ ବେଳକୁ ଗଣ୍ଡଟି ଭର୍ତ୍ତି ହୋଇ ସାରନ୍ତାଣି । ବୁଢ଼ୀ ବଲ ବଲ କରି ତାଙ୍କ ଆଡ଼କୁ ଅନେଇ କହିଲେ, କ'ଣ କହୁଛୁରେ ପୁଅ ?

ସଦାଶିବ ଜାଉ ଖାଇବା ଛାଡ଼ି ତରତରରେ ବାହାରି ଆସି ନିକଟରେ ବନ୍ଧା ହୋଇଥିବା ଅଶ୍ୱରେ ଚଢ଼ି ଚନ୍ଦ୍ରଭାଗା ତୀରକୁ ଧାବମାନ ହେଲେ । ଚନ୍ଦ୍ରଭାଗାର ପଦ୍ମତୋଳା ଗଣ୍ଡ କିଛିଦିନ ପଥର ପଡିବାରୁ ଭର୍ତ୍ତି ହୋଇଗଲା ।

ସଦାଶିବଙ୍କର ମନେ ପଡ଼ିଗଲା ବୁଢ଼ୀ କଥା । ସେ କୃତଜ୍ଞତା ଜଣାଇବା ପାଇଁ ଏକଦା ଅଶ୍ୱରେ ଚଢ଼ି ଯେଉଁ ରାସ୍ତାରେ ବଣରୁ ବୁଢ଼ୀର କୁଡ଼ିଆର ପିଣ୍ଡାରୁ ଫେରିଥିଲେ, ସେ ରାସ୍ତାରେ ଧାବମାନ ହେଲେ । ଆଶ୍ଚର୍ଯ୍ୟ ହୋଇଗଲେ - ସେଠାରେ ସେ ବୁଢ଼ୀ ନାହିଁ କି, କୁଡ଼ିଆଟିଏ ମଧ୍ୟ ନାହିଁ । ଅଛି କେବଳ ସାକ୍ଷୀ ସ୍ୱରୂପ ସେହି ଶାଳବୃକ୍ଷଟି । ଯେଉଁ ବୃକ୍ଷରେ ବାନ୍ଧିଥିଲେ ତାଙ୍କର ଅଶ୍ୱଟିକୁ । ଫେରି ଆସିଲେ ମନେ ମନେ ସେହି ବୁଢ଼ୀକୁ ପ୍ରଣାମ ଜଣାଇ । ସେହି ବୁଢ଼ୀ ଆଉ କେହି ନୁହନ୍ତି - ଦେବୀ 'ରାମଚଣ୍ଡୀ' ।






ପୂର୍ଣ୍ଣାବୟବ କୋଣାର୍କ ମନ୍ଦିର ନକ୍ସା



ନବଗ୍ରହ ମୂର୍ତ୍ତି ମଧ୍ୟରୁ ତିନି ମୂର୍ତ୍ତି




କୋଣାର୍କ ମନ୍ଦିରର ନମୁନା



କୋଣାର୍କ ମନ୍ଦିରର ନମୁନା ଓ ଗଜସିଂହର ସ୍ଥାନ ନିରୂପଣ




କୋଣାର୍କ ମନ୍ଦିର ନକ୍ସା

# (୯)

ମନ୍ଦିରର ଭିତ୍ତି ପ୍ରସ୍ତର ସ୍ଥାପନର ଶୁଭଦିନ ଧାର୍ଯ୍ୟ କରିଥିଲେ ପୁରୋହିତ ଭୁବନାନନ୍ଦ ରାଜଗୁରୁ। ତାଙ୍କରି ପରାମର୍ଶ ଅନୁସାରେ ଭୂମି ପୂଜା ପାଇଁ ସମସ୍ତ ଆୟୋଜନ କରିଥିଲେ ସଦାଶିବ ସାମନ୍ତରା। ପୂଜାପାଠ, ଆହୂତି କୁଣ୍ଡ ପ୍ରସ୍ତୁତିର ଆୟୋଜନ କରାଯାଇଥିଲା। ଯାଜପୁର ଓ ପୁରୀ ଆଦି ସ୍ଥାନରୁ ଆର୍ତ୍ତେୟ ବ୍ରାହ୍ମଣମାନଙ୍କୁ ଅଣା ଯାଇଥିଲା। ସେହି ମାନଙ୍କର ତାଲିକା ଅନୁସାରେ ପୂଜା ଏବଂ ହୋମାହୂତି ପାଇଁ ସମସ୍ତ ଦ୍ରବ୍ୟ ଅଣାଯାଇଥିଲା। ତା ସହିତ ରାଜାରାଣୀଙ୍କର ବସିବା ପାଇଁ, ପୁରୋହିତଙ୍କ ସହିତ ପୂଜକ ବ୍ରାହ୍ମଣମାନଙ୍କର ଆସନ ମଞ୍ଚ, ପିଣ୍ଡିଭଳି ନିର୍ମାଣ କରାଯାଇଥିଲା।

ଆମନ୍ତ୍ରିତ ଅତିଥି ମାନଙ୍କ ପାଇଁ ସ୍ୱତନ୍ତ୍ର ଆସନ ମାନ ମଞ୍ଚରେ ରଖା ଯାଇଥିଲା। ସାଧାରଣ ଦର୍ଶକ ବୃନ୍ଦଙ୍କ ପାଇଁ ମଧ ସ୍ୱତନ୍ତ ମଞ୍ଚ ପ୍ରସ୍ତୁତ କରାଯାଇଥିଲା। କେବଳ ସେତିକି ନୁହେଁ, ବିଶିଷ୍ଟ ବାଦ୍ୟକାରମାନଙ୍କ ପାଇଁ ମଧ ମଞ୍ଚ ପ୍ରସ୍ତୁତ କରାଯାଇଥିଲା। ଏହି ଉତ୍ସବରେ ଯୋଗ ଦେବାକୁ ଆସୁଥିବା, ଅତିଥି ଅଭ୍ୟାଗତ ଓ ସର୍ବ ସାଧାରଣଙ୍କ ପାଇଁ ମଧ ଭୋଗରାଗ ଭୋଜନର ବ୍ୟବସ୍ଥା ହୋଇଥିଲା। କ୍ଷେତ୍ରଟିକୁ ସଜା ଯାଇଥିଲା ଅପୂର୍ବ ତୋରଣ ସହ କାରୁକାର୍ଯ୍ୟଖଚିତ ସୁଦୃଶ୍ୟ ଚାନ୍ଦୁଆ ଏବଂ ପତାକାମାଳାରେ। ମହା ଆଡମ୍ବରରେ ହୋଇଥିଲା ସାଜସଜ୍ଜା।

ତିଥିବାର ଗଣନା କରି ଭୁବନାନନ୍ଦ ରାଜଗୁରୁ ମାଘମାସ ଶୁକ୍ଳପକ୍ଷ ସପ୍ତମୀ ତିଥିର ରବିବାର ଦିନଟିକୁ ଧାର୍ଯ୍ୟ କରିଥିଲେ। ସେହି ଦିନ ଭୂମି ପୂଜା ଯଥାରୀତି ସମାପନ ହୋଇଥିଲା। ତାହା ପୂର୍ବରୁ ବିଶୁ ମହାରଣା, ବଂଧୁରଥ ଓ ସଦାଶିବ ସାମନ୍ତରା ସେହି କ୍ଷେତ୍ରଟିକୁ ଜରିବ କରି ନକ୍ସାଟିଏ ପ୍ରସ୍ତୁତ କରିଥିଲେ। ଗଦା ହୋଇଥିବା ବଳକା ପଥରତକ ଦୂରକୁ ଘୁଞ୍ଚାଇ ଦିଆଯାଇଥିଲା। ସେମାନେ କ୍ଷେତ୍ରଟିକୁ ଚତୁଷ୍କୋଣ ଏକ ବର୍ଗ କ୍ଷେତ୍ରଭାବରେ ନେଇ ନକ୍ସା ପ୍ରସ୍ତୁତ କରିଥିଲେ। ପ୍ରଥମେ ବିଶୁ ମହାରଣା ସୂର୍ଯ୍ୟଙ୍କ ପାଇ ବଡ଼ ଦେଉଳ

କେଉଁଠି ତୋଳା ହେବ, ଶାସ୍ତ୍ର ଶିଳ୍ପ ଅନୁସାରେ ସେହି ଦେଉଳର ଉଚ୍ଚତାନୁସାରେ ତାର ପରିଧି କେତେ ହେବ ଆଲୋଚନା କରିଥିଲେ। ସେହିପରି ମୁଖଶାଳା, ନାଟ ମନ୍ଦିର ମଧ କେଉଁଠି କେଉଁଠି ତୋଳା ହେବ ଏବଂ ତା ପୂର୍ବରୁ ମାୟା ଦେବୀ ଶକ୍ତି ମନ୍ଦିର ବା ଚଣ୍ଡୀ ମନ୍ଦିର କେଉଁଠି ନିର୍ମିତ ହେବ - ସେହି ନକ୍ସାରେ ସ୍ଥାନିତ କରିବା ପାଇଁ ମୁଖ୍ୟ ସ୍ଥପତି ତଥା ମନ୍ତ୍ରୀ ସଦାଶିବ ସାମନ୍ତରାଙ୍କୁ କହିଥିଲେ। ଏହି ପୀଠ ସ୍ଥାନକୁ ଘେରିବା ପାଇଁ ମେଘନାଦ ପାଚେରୀ ନିର୍ମାଣ କରିବାର ପ୍ରସ୍ତାବ ମଧ ଦେଇଥିଲେ। ଅବଶ୍ୟ ମନ୍ଦିରର ନିର୍ମାଣ କାର୍ଯ୍ୟ ସମାପ୍ତ ହେଲା ପରେ ଏହି ମେଘନାଦ ପାଚେରୀ ନିର୍ମାଣ କରାଯିବ। ଏହି ପାଚେରୀ ହେବ ମନ୍ଦିର ସୁରକ୍ଷାର ପାଚେରୀ। ଏହାର ଦେହରେ ନିର୍ମିତ ହେବ ପୂର୍ବ ଦିଗରେ ସିଂହଦ୍ୱାର। ଦକ୍ଷିଣ, ଉତ୍ତରକୁ ମଧ ପ୍ରବେଶ ପାହାଚ ରହିବ। କଳ୍ପନା ଅନୁସାରେ ମୁଖ୍ୟ ସ୍ଥପତି ସଦାଶିବ ସାମନ୍ତରା ଓ ବିଶୁ ମହାରଣା ଗୋଟିଏ ଆଦର୍ଶ ଯୋଜନାଟିଏ ତିଆରି କରି ପୁଣି ମହାରାଜାଙ୍କ ଦରବାରକୁ ଯାଇଥିଲେ।

ସେଦିନ ଦରବାରରେ ସଦାଶିବ ସାମନ୍ତରା ଯୋଜନାଟିକୁ ନେଇ ବିଶୁ ମହାରଣାଙ୍କ ସହିତ ମହାରାଜାଙ୍କ ଆଗରେ ଉପସ୍ଥାପନ କରିଥିଲେ। ମହାରାଜା କହିଲେ, କୁହ ଶିଳ୍ପୀ ଶ୍ରେଷ୍ଠ, ଏ ଯେଉଁ ମନ୍ଦିର ବେଢ଼ା ଓ ତା ଭିତରେ ମନ୍ଦିର ଓ ମୁଖଶାଳା, ନାଟ ମନ୍ଦିର ସମୂହର ପରିକଳ୍ପନା କରିଛ - କେତେ ଦିନ ଲାଗିବ ଏ ମନ୍ଦିର ନିର୍ମାଣ ପାଇଁ ?

ବିଶୁ ମହାରଣା କହିଲେ - କେତେ ଜଣ ଶିଳ୍ପୀ ମୁତୟନ ହେବେ ଏବଂ ମନ୍ଦିରର ଉଚ୍ଚତା ଉପରେ ତାହା ନିର୍ଭର କରେ। ଗୋଟିଏ ମନ୍ଦିରର ସ୍ଥାୟୀତ୍ୱ ତାର ଦୀର୍ଘ ସମୟ ନିର୍ମାଣ ଉପରେ ମଧ ନିର୍ଭର କରେ। ଯେତେ ଦୀର୍ଘ ସମୟ ଧରି କାର୍ଯ୍ୟ ଚାଲିବ, ତାର ଦୋଷତ୍ରୁଟି ତା ସାଥିରେ ସୁଧାରାଯାଇ ପାରିବ। ଦୁଇଶହ ଫୁଟରୁ ଅଧିକ ଉଚ୍ଚତାର ମନ୍ଦିରଟିଏ ବାରଶହ ବଢ଼େଇଙ୍କୁ ନିର୍ମାଣ କରିବାକୁ ଅନ୍ୟୁନ ବାରବର୍ଷ ଲାଗିଯିବ। ସଦାଶିବ ସାମନ୍ତରା କହିଲେ, ଏ ବାବଦରେ ପ୍ରାୟ ୩୫ଲକ୍ଷ ମାଢ଼ ସୁନା ବା ୧୭.୫ ଲକ୍ଷ ତୋଳା ସୁନା ଖର୍ଚ୍ଚ ହେବ। ପାଖରେ ତ ସହଜରେ ପଥର ମିଳୁ ନାହିଁ। ମନ୍ଦିରଟିର ଦେହ ନିର୍ମିତ ହେବ ଖଣ୍ଡୁଆ ଓ ସାଧାରଣ ପଥରେ। ଯାହା ସହଜରେ କୁଶଭଦ୍ରା ନଦୀର ବେଦପୁରଠାରେ ପଥରଗଣ୍ଡ ଓ ମହାନଦୀ ଶଯ୍ୟାରୁ ମିଳିବ। ଖଞ୍ଜିବା ପାଇଁ ମୂର୍ତ୍ତିଗୁଡ଼ିକୁ ତିଆରି କରିବାକୁ ପଡ଼ିବ ନୀଳଗିରି, ଖିଚିଂ, ମେଘାସନ, ବରୁଣେଇ ଇତ୍ୟାଦି ସ୍ଥାନମାନଙ୍କରୁ ଆସୁଥିବା ଭଲ ପଥରରେ। ମହାରାଜା ସଦାଶିବ ସାମନ୍ତରାଙ୍କୁ କହିଲେ, ଢ଼େଙ୍ଗୁରା ଦେଇ ଜଣାଇ

ଦିଅ ଆମ ରାଜ୍ୟରେ ଯେତେ ଶିଳ୍ପୀ ଅଛନ୍ତି ସେମାନଙ୍କୁ ସାତଦିନ ମଧ୍ୟରେ କାର୍ଯ୍ୟରେ ଯୋଗ ଦେବା ପାଇଁ ।

x x x x

ରାଜ୍ୟର ପ୍ରଜାବୃନ୍ଦ ରାଜାଙ୍କୁ ଦେବତା ବୋଲି କେବଳ ଯେ ମାନ୍ୟ କରନ୍ତି ତାହା ନୁହେଁ, ରାଜାଙ୍କର ଆଦେଶକୁ ବେଦର ଗାର ବୋଲି ମାନନ୍ତି । ସେଥିପାଇଁ ତ ଯୁଦ୍ଧର ଡାକରା ପଡ଼ିଲେ ଘର ଦ୍ୱାର, ପତ୍ନୀ, ପୁତ୍ର, କନ୍ୟା, ଆତ୍ମୀୟଙ୍କୁ ଛାଡ଼ି ପାଇକମାନେ ତରବାରୀ ଧରି ଧାବମାନ ହୁଅନ୍ତି ଯୁଦ୍ଧ କ୍ଷେତ୍ରକୁ । ଦୁର୍ଗ ବା ମନ୍ଦିର ନିର୍ମାଣର ଡାକରା ଆସିଲେ ଧାଇଁ ଯାଆନ୍ତି ଶିଳ୍ପୀବୃନ୍ଦ ସମସ୍ତ ଆତ୍ମୀୟ ସ୍ୱଜନଙ୍କୁ ଛାଡ଼ି । ବର୍ଷ ବର୍ଷ ଧରି ଫେରନ୍ତି ନାହିଁ ଗୃହକୁ । ଡେଙ୍ଗୁରା ଶୁଣି ଚାରି ଆଡ଼େ ଚହଳ ପଡ଼ିଗଲା । ଯୁଦ୍ଧକୁ ଯିବା ପାଇଁ ଯେମିତି ଖଣ୍ଡା ତରବାରୀ ପଝେଇ ବାହାରି ପଡ଼ନ୍ତି ପାଇକମାନେ, ଏହି ମନ୍ଦିର ଗଢ଼ିବାକୁ ଯିବା ପାଇଁ ନିହାଣ ପଝେଇ, ମୁଗୁର ସଜାଡ଼ି ଶିଳ୍ପୀମାନେ ବାହାରି ଆସନ୍ତି । କେତେଦିନ ପରେ ଘରକୁ ଫେରିବେ ସେମାନଙ୍କୁ ଜଣା ନଥାଏ । ତେଣୁ ଆତ୍ମୀୟ ସ୍ୱଜନଠାରୁ ବିଦାୟ ନେବାର ପର୍ବ ଆରମ୍ଭ ହୋଇଯାଏ । ସ୍ତ୍ରୀ, ସଜାଡ଼ି ଦିଏ ସ୍ୱାମୀ ପାଇଁ ସଫା ପରିଧାନ ସହିତ ଚୂଡ଼ାଗୁଡ଼, ନଡ଼ିଆ ବା ବିଭିନ୍ନ କିସମର ଖାଦ୍ୟ । ମାଆ ସଜାଡ଼ି ଦିଏ ମଧ ପୁତ୍ର ପାଇଁ, ହାତ ତିଆରି ନାନା ସୁଆଦିଆ ମିଠା, ଖଇ, ନଡ଼ିଆମାନ । ଘରେ ଯୁବତୀ ସ୍ତ୍ରୀ ମନରୁ ମରିଯାଏ ସରସତା ।

x x x x

ପତି ବିଶୁ ଯାଇଛନ୍ତି ରାଜାଙ୍କର ଡାକରା ପାଇ। ଫେରିବା ପଥକୁ ଚାତକ ପରି ଅନେଇ ବସିଛନ୍ତି ପଦ୍ମାଳୟା । ମନରେ ଆଶଙ୍କା, କାଳେ ସେ ମନ୍ଦିର ନିର୍ମଣ ପାଇଁ ସେଠାରେ ଆଉ ରହିଯିବେନି ତ ? ସେ ସ୍ୱାମୀ ଦେବତାଙ୍କୁ ଭଲଭାବରେ ଚିହ୍ନିଛନ୍ତି । ମନ୍ଦିର ନିର୍ମାଣ କଥା ଶୁଣିଲେ ତାଙ୍କୁ ଅଟକାଇ ରଖିବା କଷ୍ଟ । ବେଳ ରତରତ ହେଲାଣି । ଆଉ ଟିକିଏ ପରେ ସଞ୍ଜ ନଇଁ ଆସିବ । ପଦ୍ମାବତୀ ପିଣ୍ଡାଟାରେ ସପଟିଏ ପାରି ଏକୁଟିଆ ବସିଛନ୍ତି । ପ୍ରବେଶ କଲେ ମିତଣୀ ଇନ୍ଦୁମତୀ । ଇନ୍ଦୁମତୀ ପଡୋଶୀ ଘରର ବୋହୂ । ସମବୟସୀ, ଦୁହେଁ ମିତ ବାନ୍ଧିଛନ୍ତି । ସାଥୀ ହୋଇ ବାଂଫିରୁ ପାଣି ଆଣିବାକୁ, ଗାଁ ମାଳଣାକୁ ଗାଧୋଇବାକୁ ନିତି ଯାଆନ୍ତି ଦିହେଁ । ଦୁହେଁ କେବଳ ବାଂଫିମୂଳ ବା ଗାଧୁଆ ତୁଠର ସାଥୀ ନୁହନ୍ତି । ଉଭୟଙ୍କ ରୋଷେଇ ଶାଳ, ପିଣ୍ଡା ସେମାନଙ୍କର କଥାବାର୍ତ୍ତାର ଆସର । ସର୍ବୋପରି ବେଣୁଧରଙ୍କ ପୂଜା ପାଇଁ ଫୁଲ ତୋଳିବା, ପୂଜା ଆଳତିରେ ମଧ ସାଥୀ ହେବା ଇନ୍ଦୁମତୀଙ୍କର ମଧ ନିତ୍ୟ

ନୈମିତ୍ତିକ କାର୍ଯ୍ୟ। ଯେମିତି ଦୁଇଟି ପରିବାର ନୁହେଁ - ଗୋଟିଏ ପରିବାର, ଦୁଇଟି ଘର। ଇନ୍ଦୁମତୀ କହିଲେ, କ'ଣ ଭଉଣୀ ଏମିତି ଉଦାସିଆ ହୋଇ ବସିଛ କାହିଁକି। ପଦ୍ମାଳୟା କହିଲେ, ସେଇ ଯେ କାଲି ଅନ୍ଧାରରୁ ସେ ଯାଇଛନ୍ତି ଏ ପର୍ଯ୍ୟନ୍ତ ଫେରିନାହାନ୍ତି।

ଏହି ସମୟରେ ବଳଦଗାଡ଼ିର ଆସିବାର ଶବ୍ଦ ଶୁଣାଗଲା। ଇନ୍ଦୁମତୀ କହିଲେ, ଅପା ଏଇ ଆସିଗଲେ ତୁମ ମନର ମଣିଷ। ମୁଁ ଯାଏଁ, ସେ ଆଡ଼େ ସଞ୍ଜବତୀ ସଜାଡ଼ିବି - ଏହା କହି ତରତରରେ ସେ ଉଠିଗଲେ। ଇନ୍ଦୁମତୀଙ୍କ ଯିବା ପଥକୁ ଅନେଇ ଥିଲେ ପଦ୍ମାଳୟା। ଗାଡ଼ି ଶବ୍ଦ ପାଖେଇ ଆସୁଛି। ଗୋରୁଗାଡ଼ିରୁ ହାଲିଆ ହୋଇ ଓହ୍ଲାଇବେ ପତି ପରମ ଦେବତା। ଆଗରୁ ପିଣ୍ଡା କଡକୁ ସଜାଡି ରଖିଛନ୍ତି ପାଣି ଭର୍ତ୍ତି ଢ଼ାଳଟିଏ। କଦଳୀ ବାହୁଙ୍ଗାରେ ତିଆରି ଆସନଟିଏ ପାରି ଦେଇଛନ୍ତି ପାଖରେ। ଗାମୁଛାଟିଏ ପାଦ ପ୍ରକ୍ଷାଳନ ପରେ ପୋଛିବା ପାଇଁ ଥୋଇ ଦେଇଛନ୍ତି ସେ, ଆସନଟି ଉପରେ। ବେଣୁଧରଙ୍କ ପାଖରେ ସଂଧ୍ୟା ଆଳତି ଦେଲାପରେ ପୂଜା ଭୋଗ ବାଢ଼ି ଦେବେ ଭୋକିଲା ପତି ପରମଦେବତାଙ୍କୁ। ସେ ପାଖରେ ଥିଲେ ତାଙ୍କର କୌଣସି ଚିନ୍ତା ନଥାଏ।

ବାରବର୍ଷ ବୟସରେ ସେ ବିଶୁ ମହାରଣାଙ୍କ ହାତଧରି ଆସିଥିଲେ ଏ ଘରକୁ। ସେତେବେଳେ ବିଶୁ ମହାରଣାଙ୍କ ବୟସ ହୋଇଥିଲା କୋଡ଼ିଏ ବର୍ଷ। ବଳିଷ୍ଠ ଭେଣ୍ଡିଆ ଟୋକା। ନାରୀ ମନ ମୋହିଲା ଭଳି ସୁନ୍ଦର ସୁପୁରୁଷ। ଆଉ ପଦ୍ମାବତୀ ? ପଦ୍ମାବତୀ ମଧ ଗୋଟିଏ ଚାଉଳରେ ଗଢ଼ା। ଅପୂର୍ବ ସୁନ୍ଦରୀ ଝିଅରୁ ସେ ଏବେ ଯୌବନବତୀ ଯୁବତୀଟିଏ। ଲାବଣ୍ୟର ଲାଳିତ୍ୟ ଶରୀର ସାରା ଭରପୁର। ଏବେ ସଦ୍ୟ ସେ ହୋଇଛନ୍ତି ଅନ୍ତସତ୍ତା। ଦୀର୍ଘ କେଇବର୍ଷ କାଳ ତାଙ୍କ ମନରେ ଦୁଃଖଟିଏ ରହି ଯାଇଥିଲା। ଶିଶୁଟିଏ ଶୋଇ ନଥିଲା ତାଙ୍କ ପିଣ୍ଡାରେ, ତାଙ୍କ କୋଳରେ। ଏବେ ସ୍ୱାମୀ ସୋହାଗିନୀ, ବେଣୁଧରଙ୍କ କୃପା ଲାଭ କରିଛନ୍ତି। ବର୍ଷେ ତଳେ ସ୍ୱାମୀ ଦେବତା ଛୋଟ ପଥରର ମନ୍ଦିରଟିଏ ନିର୍ମାଣ କରିଛନ୍ତି ଘର ସମ୍ମୁଖ ଡାହାଣ କଡ଼କୁ। ଆଉ ଜଗତର ଠାକୁର ବେଣୁଧରଙ୍କର ଏକ ମୂର୍ତ୍ତି ମୁଗୁନି ପଥରରେ ତିଆରି କରି ସ୍ଥାପନ କରିଛନ୍ତି ସେହି ମନ୍ଦିରର ଆସ୍ଥାନରେ। ଯାହାଙ୍କୁ ପୂଜାର୍ଚ୍ଚନା କରି ସେ ମାତୃତ୍ୱ ଲାଭ କରିବାକୁ ଯାଉଛନ୍ତି। ମନର ପରିବର୍ତ୍ତନ ସହିତ ଶରୀରର ପରିବର୍ତ୍ତନ ମଧ ଆସିଛି ପଦ୍ମାଳୟାଙ୍କର।

ସେ ଦିନ ସଂଜବତୀ ଦେବାବେଳେ ସ୍ୱାମୀ ଥିଲେ ସାଥିରେ। ସଂଜବତୀ ଦେଇ କହିଥିଲେ ଏହି ଠାକୁର ବେଣୁଧରଙ୍କ କୃପାରୁ ଆମ ଅଗଣା ଆଉ କେତେ ମାସ ପରେ

ହସି ଉଠିବ । ବୁଝି ପାରି ନଥିଲେ ବିଶୁ, ପତ୍ନୀ ପଦ୍ମାଳୟାଙ୍କର ଏ ବାକ୍ୟର ଅର୍ଥ । ଅନେଇ ରହିଥିଲେ ପଦ୍ମାଳୟାଙ୍କ ପଦ୍ମ ସଦୃଶ ସୁନ୍ଦର ମୁଖମଣ୍ଡଳକୁ । ଯେଉଁ ମୁଖମଣ୍ଡଳରେ ପଦ୍ମାଳୟାଙ୍କର ଆଖି ଯୋଡ଼ିକ ସନ୍ଧ୍ୟା ଦୀପାଲୋକରେ ଚିକ୍ ଚିକ୍ କରୁଥିଲା । ପଦ୍ମାଳୟା କହିଲେ, ମୁଁ ମାଆ ହେବାକୁ ଯାଉଛି । ସେ ଦିନ ଠାକୁରଙ୍କ ଆଗରେ ଆଗପଛ ଭୁଲି ଯାଇ ଆନନ୍ଦର ଅତିଶଯ୍ୟାରେ ପଦ୍ମାଳୟଙ୍କୁ ଆଲିଙ୍ଗନ ବଦ୍ଧ କରିଥିଲେ ବିଶୁ । ବେଣୁଧରଙ୍କ କୃପାରୁ ତାଙ୍କର ବହୁଦିନର ଦୁଃଖ ଲାଘବ ହେବାକୁ ଯାଉଛି ।

ଆଜି ଫେରିଛନ୍ତି ବିଶୁ । ଚିନ୍ତାର ବୁଢ଼ୀଆଣି ଜାଲ ତାଙ୍କ ମନକୁ ଆଚ୍ଛନ୍ନ କରିଛି । ସୂର୍ଯ୍ୟମନ୍ଦିର ନିର୍ମାଣ ହେବ । ତାଙ୍କ ଉପରେ ସମସ୍ତ ଦାୟିତ୍ୱ । କେତେବର୍ଷ ମନ୍ଦିର ନିର୍ମାଣରେ କଟିବ, କିଏ ଜାଣେ । ଅତି କମ୍‌ରେ ତ ବାରବର୍ଷ । ଏହି ବାରବର୍ଷ କାଳ ତାଙ୍କୁ ଛାଡ଼ି ଯିବାକୁ ହେବ ତାଙ୍କର ପ୍ରାଣର ପଦ୍ମାଳୟାଙ୍କୁ । ଯାହାଙ୍କ ଜରାୟୁରେ ତାଙ୍କର ରକ୍ତର ସ୍ୱାକ୍ଷର । ଏହି ଅବସ୍ଥାରେ ପଦ୍ମାଳୟାକୁ ଏକୁଟିଆ ଛାଡ଼ି ଦେଇ.....ଏହି ଭାବନା ତାଙ୍କୁ ଅସ୍ଥିର କରୁଥିଲା ।

ଯେତେବେଳେ ଘର ପିଣ୍ଡାକୁ ଉଠିଲେ ବିଶୁ । ପଦ୍ମାଳୟାଙ୍କ ମୁଖ ମଣ୍ଡଳ ଆନନ୍ଦର ଆଭାରେ ଝଲସି ଉଠିଲା । ସେ କିନ୍ତୁ ଲକ୍ଷ୍ୟ କରୁଥିଲେ ସ୍ୱାମୀଙ୍କ ମୁଖମଣ୍ଡଳକୁ । ସତେ ଯେମିତି ସମସ୍ତ ସରସତା ବିଶୁଙ୍କ ମୁଖମଣ୍ଡଳରୁ ହଜି ଯାଇଛି । ସ୍ୱାମୀଙ୍କର ପାଦ ପ୍ରକ୍ଷାଳନ କରି ଗାମୁଛାରେ ପୋଛି ଦେଲେ ପଦ୍ମାଳୟା । ବିଶୁଙ୍କର ପାଦକୁ ପୋଛିଲାବେଳେ ଉପରକୁ ଅନେଇ ପଦ୍ମାଳୟା କହିଲେ, କ'ଣ ହୋଇଛି ତୁମର - ଦିହ ଭଲ ନାହିଁ । ତୁମ ମୁଖମଣ୍ଡଳ ଶୁଖିଲା ଶୁଖିଲା ଦେଖାଯାଉଛି ।

ବିଶୁ ପଦ୍ମାଳୟାର ମୃଣାଳନିନ୍ଦି ବାହୁ ଦୁଇଟିକୁ ଧରି ଛିଡ଼ା କରାଇ ଆଦରରେ କହିଲେ, ମୁଁ ତ କିଛି ଜାଣି ପାରୁନାହିଁ ମୋ ଦିହ କଥା । ତୁମେ କେମିତି ଜାଣିଲ ? ପଦ୍ମାଳୟା ବିଶୁଙ୍କ ଛାତିରେ ମୁଣ୍ଡରଖି କହିଲେ, ତୁମେ ତୁମ ମୁହଁ ଦେଖିବ କେମିତି ? ଆଇନା ବ୍ୟତୀତ ନିଜ ମୁହଁକୁ କେହି କେବେ ଦେଖିପାରିବେ ନାହିଁ । କେବଳ ପାରିବେ ଅପର ଆଖିରେ । ଏହା କହି ପଦ୍ମାଳୟା ଚାଲିଗଲେ ପ୍ରଭୁ ବେଣୁଧରଙ୍କ ଠାରେ ସଂଜବତୀ ଦେଇ ଆଳତି କରିବା ପାଇଁ । ସଂଜବତୀ ଦେଇ ଶଙ୍ଖ ଫୁଙ୍କି ବିଶୁଙ୍କର ମଙ୍ଗଳ କାମନା କରୁଥିଲେ ପଦ୍ମାବତୀ । ବିଶୁ ଯାଇ ପାଖରେ ଛିଡ଼ା ହୋଇ ଅନେଇ ରହିଥିଲେ, ସଂଜବତୀର ଆଲୁଅରେ ଝଟକୁ ଥିବା ବେଣୁଧରଙ୍କର କମନୀୟ ମୁଖମଣ୍ଡଳ ଆଡକୁ ।

କେତେଦୂରରୁ ଆସି ବୋଧହୁଏ ଭୋକ ଉପାସରେ ହାଲିଆ ହୋଇ ପଡିଥିବେ ପତି ପରମ ଦେବତା। ସେଥିପାଇଁ ଚୂଡା ଭଜା ଗଣ୍ଡାକ ସହିତ ଖଜୁରୀ ଗୁଡ଼ ଖଣ୍ଡକ ବାଢ଼ି ଦେଇଥିଲେ ପାଟିରେ ପକାଇବାକୁ। ଏତିମି ପାଟିରେ ପକାଉ ଥାଅ।

ଦୁଇପ୍ରାଣୀଙ୍କ ପାଇଁ ରାତ୍ରିଭୋଜନର ବ୍ୟବସ୍ଥା ପାଇଁ ରୋଷେଇ ଶାଳକୁ ଚାଲିଗଲେ ପଦ୍ମାଳୟା।

ବଖରାଏ ଶୋଇବା ଘର। ଖଣ୍ଡିଏ ରୋଷେଇଶାଳ। ଆଉ ଆଗରେ ପିଣ୍ଡା। ଖଣ୍ଡିଏ ଅଗଣାର ଡାହାଣକୁ ବେଣୁଧରଙ୍କ ଛୋଟମନ୍ଦିର। ସାମନାରେ ତୁଳସୀ ଚଉରା। ପାଖକୁ ଲାଗି ମଲ୍ଲୀ, ସେବତୀ, ରଜନୀଗନ୍ଧା, ତରାଟ ଓ ଟଗର ଫୁଲଗଛ। ପିଣ୍ଡାରେ ପଡ଼ିଥିବା ସପରେ ବସି କେତେ କଥା ଭାବୁଥିଲେ ବିଶୁ। ପିଣ୍ଡା ଚାଳ ତଳ ଦେଇ ଚାହିଁ ରହିଥିଲେ ଦୂର ଆକାଶରେ ମିଟି ମିଟି ହେଉଥିବା ତାରାଗୁଡ଼ିକୁ।

ପିଲାର ପିତା ନଥିବ, ପଦ୍ମାଳୟାଙ୍କ କୋଳକୁ ଆସିବ ପେଟର ପିଲାଟି। କିଏ ଯତ୍ନ ନେବ ତାଙ୍କର? ରାଜାଙ୍କର ମନ୍ଦିର ନିର୍ମାଣର ଗୁରୁ ଦାୟିତ୍ୱ ଏହି ପିତାଟି ଉପରେ। ସେ ଯେଉଁ ସ୍ୱପ୍ନ ଦେଖୁଥିଲେ- ବେଣୁଧରଙ୍କ କୃପାରୁ ତାହା ଫଳବତୀ ହେବାକୁ ଯାଉଛି। ପିଲାଟି ପଦ୍ମାଳୟାଙ୍କ କୋଳକୁ ଆସିବ। ପିଲାଟି ଦିନରୁ ତାଙ୍କର ଆଉ ଗୋଟିଏ ସ୍ୱପ୍ନ ଥିଲା - ଦିନେ ସେ ଗୋଟିଏ ବିଶ୍ୱବିଖ୍ୟାତ ମନ୍ଦିର ନିର୍ମାଣ କରିବେ। ବାପା ଦାଦାଙ୍କ ଅମଳର କାରୁକଳାକୁ ସେ ବିଶ୍ୱ ଦରବାରରେ ନେଇ ଥୋଇବେ। ବଢ଼େଇ ଘରର ପୁଅ ସେ। ନିହାଣ ମୁଗୁର ନେଇ ପଥର କାଟିବା ପେଶା ତାଙ୍କର। ତାଙ୍କ ଘରେ ସାଇତା ଥିବା ତାଳପତ୍ର ପୋଥିରୁ ନିର୍ମାଣ କୌଶଳ ଶିକ୍ଷା ସହିତ ବାପା ଦାଦାଙ୍କ ସହିତ ନିର୍ମାଣ କାର୍ଯ୍ୟ କରି ସେ ସୁନାମ ଅର୍ଜନ କରିଛନ୍ତି। ସେ ଜନ୍ମ ହେବାର ଦୁଇବର୍ଷ ପରେ ମାଆଙ୍କୁ ହରାଇଥିଲେ। ବାପା ତାଙ୍କର ବିଶୁଙ୍କ ବିବାହର ଠିକ୍ ପରେ ପରେ ହଇଜାରେ ପ୍ରାଣ ହରାଇଥିଲେ। ସେ ଏବେ ସାଜିଛନ୍ତି ବଢ଼େଇ ମାନଙ୍କର ନେତାଟିଏ। ତାଙ୍କର ପରିକଳ୍ପନା ଓ ନିର୍ମାଣ କୌଶଳ ତାଙ୍କୁ ବଡ଼ କାରିଗର କରି ତୋଳିଛି। ସେ ରାଜ ଦରବାରରେ ରାଜାଙ୍କ ଆଗରେ ଯେଉଁ ସୂର୍ଯ୍ୟମନ୍ଦିର ନିର୍ମାଣ କରିବାର ପରିକଳ୍ପନା ପ୍ରକାଶ କରିଛନ୍ତି, ତାହା ଏକ ଅଭିନବ ପରିକଳ୍ପନା। ସେହି ପରିକଳ୍ପନାକୁ ସେ କେମିତି କାର୍ଯ୍ୟକାରୀ କରିବେ। ରାଜାଙ୍କୁ ସିନା ସେ ସୂଚନା ଦେଇ ଆସିଲେ, ହେଲେ, ପ୍ରକୃତରେ ମନ୍ଦିରର ନିର୍ମାଣ କାର୍ଯ୍ୟ କେତେ ବର୍ଷ ଲାଗିବ କିଏ କହିବ? ଦୁଇଦିନ ପରେ ଘରଛାଡ଼ି ମନ୍ଦିର

ନିର୍ମାଣ କ୍ଷେତ୍ର ଚନ୍ଦ୍ରଭାଗା ତୀରକୁ ଯିବାକୁ ପଡିବ। ଘରେ ଛାଡ଼ି ଯିବାକୁ ହେବ ଆସନ୍ନ ପ୍ରସବା ପ୍ରାଣର ପ୍ରେୟସୀ ପଦ୍ମାଳୟାଙ୍କୁ। କିଏ ଆସିବ ତାଙ୍କ କୋଳକୁ ? ପୁତ୍ର ନା କନ୍ୟା ? ଯିଏ ଆସୁନା କାହିଁକି ସେଥିରେ ତାଙ୍କର ଯାଏ ଆସେ ନାହିଁ। ପୁତ୍ର ଆସିଲେ ପିତୃ ପୁରୁଷମାନଙ୍କ ପନ୍ଥା ଅନୁସରଣ କରିବ। କନ୍ୟା ଆସିଲେ ସ୍ୱାମୀ ଘରକୁ ଯିବା ପର୍ଯ୍ୟନ୍ତ ପଦ୍ମାଳୟାଙ୍କ ପାଖେପାଖେ ରହିବ। ପଦ୍ମାଳୟାଙ୍କ ପରି ସୁନ୍ଦରୀଟିଏ ସେ ହେବ ନିଶ୍ଚୟ। ଏମିତି କେତେ କଥାମାନ ଚିନ୍ତାକରି ଭାବନା ରାଜ୍ୟରେ ବୁଡ଼ି ଯାଇଥିଲେ ବିଶୁ। ପଦ୍ମାଳୟା ଆସି ରାତ୍ରି ଭୋଜନ ପାଇଁ ତାକୁ ଡ଼ାକିଲେ। ହଠାତ୍ ତାଙ୍କର ଭାବନାର ଖିଅଟି ଛିଣ୍ଡିଗଲା। ସ୍ୱାମୀ ସ୍ତ୍ରୀ ରାତ୍ରିଭୋଜନ ଶେଷ କରି ଶୋଇବାକୁ ଗଲେ। ସବୁ ଭାବନାକୁ ଭୁଲାଇବା ପାଇଁ ନିଦ୍ରାହିଁ କେବଳ ପ୍ରଲେପ। ହେଲେ ସେ ଦିନ ବିଶୁଙ୍କ ଆଖିରୁ ଯେମିତି ନିଦ ହଜି ଯାଇଛି। ଆଉ ସେ ବି ପଦ୍ମାଳୟାଙ୍କ ଆଖିରୁ ନିଦ ହଜାଇ ଦେଇଥିଲେ। ପଦ୍ମାଳୟଙ୍କୁ ଆଦର କରି କହୁଥିଲେ, ମୁଁ ଫେରିଲାବେଳେ, ମୋତେ ଦେଖି କହୁଥିଲ ନା ମୋ ମୁହଁରେ ସରସତା ନାହିଁ। ମୁଁ ତୁମକୁ କହିନାହିଁ କାହିଁକି ମୋ ମନରୁ ସରସତା ହଜି ଯାଇଛି। ବିଶୁଙ୍କ ବାହୁ ଉପରେ ମଥାରଖି ଶୋଇଥିଲେ ପଦ୍ମାଳୟା।

ସେ କଥା ତ ମୋତେ କାହିଁ କହି ନାହଁ।

ବିଶୁ କହିଲେ, ଚନ୍ଦ୍ରଭାଗା ତୀରରେ ଯେଉଁ ବିଶାଳମନ୍ଦିରଟି ନିର୍ମିତ ହେବ ତାହାର ନିର୍ମାଣର ଗୁରୁଦାୟିତ୍ୱ, ମହାରାଜା ଦେଇଛନ୍ତି ମୋ ଉପରେ।

ପଦ୍ମାଳୟା କହିଲେ, ଏହାଠାରୁ ବଳି ଆଉ କି ସୁଖବର ଅଛି ? ଏ ଖବରରେ ତ ମନରେ ଦୁଃଖ ଆସିବାର ନାହିଁ। ବରଂ ଆନନ୍ଦ ଅନୁଭବ କରିବା କଥା।

ବିଶୁ କହିଲେ, ଆରେ ବାବା, ଦାୟିତ୍ୱଟି ଠିକ୍ ଠିକ୍ ତୁଲାଇ ପାରିଲେ ତ ?

ତୁମେ ଠିକ୍ ତୁଲାଇ ପାରିବ। ବେଣୁଧର ଆମର ଅଛନ୍ତି। ଏଥିପାଇଁ ଚିନ୍ତା କାହିଁକି, କହିଲେ ପଦ୍ମାଳୟା।

ବିଶୁ କହିଲେ, ସେଥିପାଇଁ ଚିନ୍ତା ନାହିଁ। ହେଲେ, ଗୋଟିଏ ଚିନ୍ତା ପାଇଁ ମୁଁ ବିବ୍ରତ। ସେ ଚିନ୍ତା ତୁମରି ଚିନ୍ତା। ମୋ ଚିନ୍ତା ? ମୋ ପାଖରେ ବେଣୁଧର ଅଛନ୍ତି। ତୁମ ଭଳି ସ୍ୱାମୀ ଥାଉଁ ଥାଉଁ ମୋର ଅସୁବିଧା କ'ଣ ?

ଅସୁବିଧା ସେଇଠି। ମୁଁ ଏକୁଟିଆ ଏଠାରେ ତୁମକୁ ଛାଡି ବିଦେଶରେ ରହିବି। ପିଲାଟି ଭୂମିଷ୍ଠ ହେବ। ସେତେବେଳେ ମୁଁ ପାଖରେ ନଥିବି।

ଏଇ କଥା ଚିନ୍ତା କରି ମନମରା ତୁମେ ? ମୁଁ ପରା ଓଡ଼ିଆ ଘରର ବୋହୂ। ଆଉ ତୁମେ ପରା ଶିଖାଇଛ ବେଣୁଧର ଆମର ଅଛନ୍ତି। ସ୍ୱପ୍ନରେ ବେଣୁଧରଙ୍କୁ ଦେଖି ତୁମରି ନିହାଣ ମୁନରେ ଗଢ଼ିଛ ତାଙ୍କୁ। ସେ ଥାଉଁ ଥାଉଁ ଭୟ କ'ଣ ? ହେଲେ, ମୋର ତୁମ ପ୍ରତି ଭୟ। ବିଦେଶରେ ତୁମେ ତୁମର ଦେହର ଯତ୍ନ ନେବ କିପରି ? ତୁମେ ଯେ ନିଜ ଭୁଲା ମଣିଷ। କାମ କରୁ କରୁ ନିଜକୁ ମଧ୍ୟ ଭୁଲିଯାଅ।

ଏମିତି ସ୍ୱାମୀ ସ୍ତ୍ରୀଙ୍କର କଥାବାର୍ତ୍ତା ଭିତରେ କେତେବେଳେ ନିଦରେ ପଦ୍ମାଳୟାଙ୍କ ଆଖି ବୁଜି ଯାଇଛି, ବିଶୁ ଜାଣି ପାରିଲେ ନାହିଁ। ଯେତେବେଳେ ସେ ଜାଣିଲେ, ନିଦ୍ରା ଯିବାକୁ ଚେଷ୍ଟା କଲେ। ହେଲେ ତାଙ୍କ ଆଖିକୁ ନିଦ ଆସିଲା ନାହିଁ। ବିଛଣାରୁ ଉଠିଯାଇ ବେଣୁଧରଙ୍କ ମନ୍ଦିର ଚତ୍ୱରରେ ବସିଲେ। ମନେ ମନେ ହେଜି ହେଲେ ବେଣୁଧରଙ୍କୁ।

ପାହାନ୍ତିଆ ପ୍ରହରର ନିଦରେ ତାଙ୍କର ଆଖି ବୁଜି ଆସିଲା। ମନ୍ଦିର କାନ୍ଥକୁ ଆଉଜି ସେ ଢୁଳେଇ ପଡ଼ିଲେ। କାଉ ରାବିଲା, ରାତି ପାହିଲା। ଆକାଶରେ ମିଟି ମିଟି କରୁଥିବା ତାରାଗୁଡ଼ିକ ଫିକା ପଡ଼ିଗଲେଣି। ପଦ୍ମାଳୟା ଉଠି ଦେଖିଲେ, ଆଗରୁ ସ୍ୱାମୀ ବିଛଣା ଛାଡ଼ି ଉଠିଯାଇଛନ୍ତି। ବାସୀପାଇଟି କରିବାକୁ ଯାଇ ଦେଖିଲେ ସ୍ୱାମୀ ଠାକୁର ମନ୍ଦିର କାନ୍ଥକୁ ଆଉଜି ଢୁଳେଇ ପଡ଼ିଛନ୍ତି। ତାଙ୍କୁ ନିଦରୁ ଉଠାଇ କହିଲେ, ଯାଅ, ଖଟ ଉପରେ ବିଛଣାରେ ଟିକିଏ ଶୋଇପଡ। ଶୋଇବି ଆଉ କ'ଣ ? ସୁଦର୍ଶନକୁ ଯାଇ ଉଠାଇବି। ଆଉ କିଛି ସମୟ ପରେ ଆମ୍ଭମାନଙ୍କୁ ବାହାରିବାକୁ ପଡ଼ିବ।



## (୧୦)

ସେ ଦିନ ଥିଲା ପବିତ୍ର ମାଘ-ସପ୍ତମୀ। ଚନ୍ଦ୍ରଭାଗା ମୁହାଣ ଲୋକାରଣ୍ୟ। ବସିଛି ବିଭିନ୍ନ କିସମର ଦୋକାନ ବଜାର। ହଜାର ହଜାର ଯାତ୍ରୀ ଆସିଛନ୍ତି ସମୁଦ୍ରରେ ବୁଡ଼ ପକାଇବା ସହିତ, ସୂର୍ଯ୍ୟ ମନ୍ଦିରର ଶୁଭ ଶିଳାନ୍ୟାସ ଉତ୍ସବ ଦେଖିବା ପାଇଁ। ଆଖିରେ ଦେଖିବେ ସ୍ୱୟଂ ମହାରାଜା, ମହାରାଣୀଙ୍କୁ। ଦୂର ଦୂରାନ୍ତରରୁ ଶହ ଶହ ଶିଳ୍ପୀ ଆସି ସମବେତ ହୋଇଛନ୍ତି। ସେମାନଙ୍କ ପାଇଁ ନଦୀ ତୀର ଏବଂ ସମୁଦ୍ର ଉପକୂଳରେ ତିଆରି ହୋଇଛି ଅସଂଖ୍ୟ ଶିବିର। ମନ୍ଦିର ନିର୍ମାଣ କାର୍ଯ୍ୟ ସମାପ୍ତ ହେବା ପର୍ଯ୍ୟନ୍ତ ସେହି ଶିବିର ଗୁଡ଼ିକ ଶିଳ୍ପୀମାନଙ୍କର ଆଶ୍ରୟସ୍ଥଳ। ତିଆରି ହୋଇଛି ଭୋଜନାଳୟ ଓ ଅବସର ବିନୋଦନ କେନ୍ଦ୍ର। ଶ୍ରମିକମାନଙ୍କ ପାଇଁ ମଧ୍ୟ ତିଆରି ହୋଇଛି ସ୍ୱତନ୍ତ୍ର ଶିବିରମାନ। ପଦ୍ମତୋଳା ଗଣ୍ଡ ସନ୍ନିକଟରେ ନିର୍ମାଣ କରାଯାଇଛି ନିର୍ମାଣ ଭବନ। ଯେଉଁଠି ନିର୍ମାଣ କାର୍ଯ୍ୟର ସମସ୍ତ ପରିଚାଳନାର ଦପ୍ତର ମାନ ଖୋଲା ଯାଇଛି।

ଏହି ଚନ୍ଦ୍ରଭାଗା ମୁହାଣରେ ପ୍ରତିବର୍ଷ ଏହି ପବିତ୍ର ମାଘ-ସପ୍ତମୀରେ ହଜାର ହଜାର ଯାତ୍ରୀ ଆସନ୍ତି ସମୁଦ୍ରରେ ବୁଡ଼ ପକାଇବା ପାଇଁ। ପ୍ରଭାତରୁ ପ୍ରତୀକ୍ଷା କରିଥାନ୍ତି ସୂର୍ଯ୍ୟୋଦୟ ଦେଖିବା ପାଇଁ। କେମିତି ବାଳସୂର୍ଯ୍ୟ ଲୋହିତ କନ୍ଦୁକଟିଏ ସାଜି ମାଆ କୋଳରୁ ଡେଇଁ ପଡ଼ନ୍ତି ଦିଗ୍‌ବଳୟକୁ। ଯେଉଁଠି ସମୁଦ୍ର ଓ ଆକାଶ ଗୋଟିଏ ରେଖାରେ ମିଶିଯାଇଛି। ସମ୍ପୂର୍ଣ୍ଣ ରୂପେ ଲୋହିତ କନ୍ଦୁକଟିଏ ଅବା ଆତ୍ମପ୍ରକାଶ କରି ଧୀରେ ଧୀରେ ଉଠୁଛି ଉପରକୁ। ବଦଳି ଯାଉଛି ଅନନ୍ତ ଆକାଶର ଚିତ୍ରପଟ। ଲୋହିତ-ସୁବର୍ଣ୍ଣ ରଙ୍ଗରେ ଝଟକି ଉଠୁଛି ଛିଣ୍ଡା ଛିଣ୍ଡା ମେଘମାଳା କେତୋଟି। ନୀଳ ଆକାଶରେ ଲୋହିତ ଛଟା। କିଏ ଯେମିତି ଆଡୁଆଳରେ ରହି ଏହି ବିଚିତ୍ର ରଙ୍ଗବଦଳ ଚିତ୍ର ଆଙ୍କୁଛନ୍ତି। ସେତେବେଳେ ଅନୁଭବ କରିହୁଏ - କ୍ଷଣ କ୍ଷଣକୁ ଏହି ଚିତ୍ର ପରିବର୍ତ୍ତନର ଲୀଳାଖେଳା। କେବଳ ସେହି ମୁହୂର୍ତ୍ତଟା ଚାଲିଗଲେ, ସେଭଳି ଅନୁଭବ ଆଉ ଆସେ ନାହିଁ। ଆସେ ପୁଣି କେବଳ ସେହି

ସୂର୍ଯ୍ୟଦେବ ଯେତେବେଳେ ଅସ୍ତାଚଳଗାମୀ ହୁଅନ୍ତି। ଏହି ଦୁଇ ମୁହୂର୍ତ୍ତରେ ଯେମିତି ସମୁଦ୍ରର ଜଳରାଶି ଓ ତାର ଉର୍ମିମାଳା ଉପରେ ସୂର୍ଯ୍ୟର ନାଲିକିରଣ ପଡ଼ି ମୁଠା ମୁଠା କିଏ ଯେମିତି ଅବିର ବୋଲି ଦେଇଯାଇଛି ବୋଲି ପ୍ରତୀୟମାନ ହୁଏ।

ସୂର୍ଯ୍ୟୋଦୟର ମୁହୂର୍ତ୍ତରୁ ଆରମ୍ଭ ହୋଇ ଯାଇଛି ସମୁଦ୍ର ସ୍ନାନ। ହଜାର ହଜାର ନରନାରୀ ଘୋ ଘୋ ଗର୍ଜନ କରୁଥିବା ଢ଼େଉରେ ପଶି ସ୍ନାନ କରୁଛନ୍ତି। ଆର୍ଦ୍ର ବସନରେ ଉଠି ଯାଉଛନ୍ତି କୂଳକୁ, ଯେଉଁଠି ସେମନେ ରଖି ଦେଇ ଆସିଛନ୍ତି ସେମାନଙ୍କର ଶୁଖିଲା ସୁନ୍ଦର ବେଶ ପୋଷାକ। ଆଜି ଏ ପବିତ୍ର ଦିବସରେ ପବିତ୍ର ମନ ନେଇ ଧର୍ମ ଅର୍ଜନ କରିବାକୁ ଆସିଛନ୍ତି ସେମାନେ। ସ୍ତ୍ରୀ ସ୍ୱାମୀର ହାତଧରି, ଝିଅଟିଏ ପିତାର ହାତଧରି, ଭଉଣୀଟିଏ ଭାଇର ହାତଧରି ବା ସାଥୀ ଗହଣରେ କେହି କେହି ଆର୍ଦ୍ରବସନରେ ଉଠି ଆସୁଛନ୍ତି ପାଣି ଭିତରୁ। ମନରେ ସଂକୋଚ ନାହିଁ। ସେମାନଙ୍କ ଯୌବନଦୀପ୍ତ ରୂପଶିରୀ ଆର୍ଦ୍ର ବସନ ଭିତରୁ ଫୁଟି ଦେଖା ଯାଉଛି। ପୁରୁଷ ମାନଙ୍କର ଲୋଭାୟିତ ଚକ୍ଷୁରୁ ଲୁଚାଇବା ପାଇଁ ମଧ୍ୟ ସେମନଙ୍କର ନାହିଁ ପ୍ରଚେଷ୍ଟା। ସେହି ଗହଳିରେ ବି ସେମାନେ ବଦଳାଉଛନ୍ତି ସେମାନଙ୍କର ଆର୍ଦ୍ର ବସନ।

ଜମି ଉଠିଛି ବସିଥିବା ଦୋକାନ ଗୁଡ଼ିକରେ ବିକା କିଣା। କେତେ କିସମର ଦୋକାନ। ଖାଇବା ଦୋକାନ। ମନୋହରି ଦୋକାନ, ରସାଲୁ, ରଙ୍ଗାଲୁ, ବରକୋଳି, ଫଳମୂଳର ଦୋକାନ। ଖେଳନା ଦୋକାନ, ହାଣ୍ଡି ମାଠିଆ ଦୋକାନ, ବେତର ପାଛିଆ, ବେତର ଗଣା, ବେତର ବସିବା ପାଇଁ ମୋଡ଼ାର ଦୋକାନ। ତାଳ ବରଡ଼ାର ପଙ୍ଖା, କାଇଁଚର ଡାଲା, କମାରମାନଙ୍କର ଦା, ହାତୁଡ଼ି, ନିହାଣ, ମୁଗୁର, ଗୁଡ଼ିଆ, ପନ୍‌ଖି ଆଦି ଦୋକାନ। କୁମ୍ଭାର ମାନଙ୍କର ଘଟ, କଳସୀ, ସୁରା ଏବଂ ମାଟିର ହାତୀ, ଘୋଡା, ବିଭିନ ମୂର୍ତ୍ତିର ଦୋକାନ। ବଢ଼େଇ ମାନଙ୍କର କାଠର ଜଗନ୍ନାଥ ମୂର୍ତ୍ତି, ଖଟୁଳି, ଲକ୍ଷ୍ମୀମୂର୍ତ୍ତି, ବିଭିନ୍ନ ଖେଳନା। ଏହିସବୁ ବିଭିନ୍ନ କିସମର ଦୋକାନ ସହିତ ବାଉଁଶର ବଇଁଶୀ, ସୁସୁରି, ପଙ୍ଖା, ତାଳପତ୍ରର ଚଟେଇ, ନାଲିଫିତା, ମାଳ ପଇଁଚି ଆଦି। ବର୍ଷକର ଘର କରଣା ଜିନିଷ ଏହିଠାରୁ କିଣି ନେଇ ଯାଆନ୍ତି ନାରୀମାନେ। ଆଜି ବିଶେଷ କରି ପିଲାଛୁଆ ଧରି ବହୁ ସଂଖ୍ୟାରେ ସେମାନେ ଆସିଛନ୍ତି ପଦ୍ମତୋଳା ଗଣ୍ଡ ଉପରେ ତୋଳା ହେବାକୁ ଯାଉଥିବା ସୂର୍ଯ୍ୟମନ୍ଦିରର ଶିଳାନ୍ୟାସ ଉତ୍ସବ ଦେଖିବା ପାଇଁ। ଦେଖିବେ ମହାରାଜା ମହାରାଣୀଙ୍କୁ ଓ ପରମ ସୌଭାଗ୍ୟ ଅର୍ଜନ କରିବେ। ନିର୍ଦ୍ଧାରିତ ସମୟରେ ମହାରାଜା, ମହାରାଣୀ ହାତୀରେ ଚଢ଼ି ପାତ୍ର ମନ୍ତ୍ରୀଙ୍କ ଗହଣରେ ଆସି ପହଞ୍ଚିବେ। ନିର୍ଜନ ବେଳାଭୂମିଟି ଅପୂର୍ବ ରୂପ ଧାରଣ

କରିଛି । ଚନ୍ଦ୍ରାତପ ତଳେ ରାଜାରାଣୀ ପାତ୍ର ମନ୍ତ୍ରୀଙ୍କର ଆସନକୁ ଘେରି ସ୍ନାନ ସାରି ଫେରିଥିବା ଯାତ୍ରୀମାନେ ବେଢ଼ି ରହିଛନ୍ତି । ସମ୍ମୁଖରେ ପୂଜକବୃନ୍ଦ ପୂଜାପାଠ ଆରମ୍ଭ କରିଛନ୍ତି । ସେମାନଙ୍କର ଓଁକାର ବେଦମନ୍ତ୍ର ସଙ୍ଗକୁ ଟମକ-ମହୁରୀ-ଢ଼ୋଲ ମୃଦଙ୍ଗ ଓ ଝାଞ୍ଜ ଏବଂ ଘଣ୍ଟା ବାଦ୍ୟରେ ମୁଖରିତ ସାଗର ସୈକତ । ମହକିତ ଧୂଣା ଧୂପର ସୁଗନ୍ଧରେ ।

ଦୂରରୁ ଶୁଭିଲା କାହାଳି ଶବ୍ଦ । ମହାରାଣୀଙ୍କ ସହିତ ହସ୍ତୀରେ ବିଜେ ହେଉଛନ୍ତି ମହାରାଜା । ପଛକୁ ପଛ ହାତୀ ଘୋଡ଼ାରେ ସୈନ୍ୟସାମନ୍ତ । ଏକ ବିରାଟ ପଟୁଆର । ଶୁଭୁଛି ମହାରାଜା ଲାଙ୍ଗୁଳା ନରସିଂହ ଦେବଙ୍କ ଜୟଧ୍ୱନି । ପ୍ରତୀକ୍ଷାରେ ହଜାର ହଜାର ଦର୍ଶକବୃନ୍ଦ । ଆଗେଇ ଆସୁଛି ପଟୁଆର ।

ଅଳ୍ପ ସମୟ ଭିତରେ ସେହି କ୍ଷେତ୍ରରେ ପହଞ୍ଚିଲା ପଟୁଆର । ପୁରୋହିତ ବୃନ୍ଦ ମଙ୍ଗଳାଚରଣ ଗାନ କରି ପୂଜାମଣ୍ଡପ ନିକଟକୁ ପାଛୋଟି ନେଲେ ମହାରାଜା - ମହାରାଣୀଙ୍କୁ । ଆରମ୍ଭ ହୋଇଗଲା ମନ୍ଦିର ଶିଳାନ୍ୟାସର କାର୍ଯ୍ୟକ୍ରମ । ରାଜାରାଣୀଙ୍କୁ ବରଣ କଲେ ପୁରୋହିତ । ଯଜ୍ଞରେ ଆହୂତି ପ୍ରଦାନ କଲାପରେ - ମିଳିତ ଭାବରେ ଶିଳାନ୍ୟାସ କଲେ ସେମାନେ । ମହାରାଜା ସ୍ୱହସ୍ତରେ ବିଶୁ ମହାରଣା ସହିତ ସମସ୍ତ ମୁଖ୍ୟମାନଙ୍କ ମସ୍ତକରେ ପିନ୍ଧାଇ ଦେଲେ ପଗଡ଼ି ଏବଂ ସେମାନଙ୍କ ଗଳାରେ ଲମ୍ବାଇ ଦେଲେ ପୁଷ୍ପମାଲ୍ୟ । ସେହି ମୁଖ୍ୟମାନେ ହେଲେ ମୁଖ୍ୟ ସ୍ଥପତି ସଦାଶିବ ସାମନ୍ତରା, କାର୍ଯ୍ୟକାରୀ ସ୍ଥପତି ଗଦାଧର ମହାପାତ୍ର, ଶିଳ୍ପଶାସ୍ତ୍ରର ଉପଦେଷ୍ଟା ବନ୍ଧୁରଥ, ମୁଖ୍ୟ ପୁତୁଳା ସ୍ଥପତି ବିଦ୍ୟାଧର ମହାପାତ୍ର, ମୁଖ୍ୟ ପଥର ଖୋଦକ ଅଇଁଠୁ ମହାପାତ୍ର, ମୁଖ୍ୟ ପଲସ୍ତରା ଶିଳ୍ପୀ ବିନ୍ଦୁ ମହାରଣା, ମୁଖ୍ୟ ଲୌହ ଢ଼ଳାଇ ଶିଳ୍ପୀ ପୁରିଆ ମହାପାତ୍ର, ମୁଖ୍ୟ ଭାଡ଼ି ବନ୍ଧାଳୀ ଶିଳ୍ପୀ ରାଜୀବ ମହାରଣା, ମୁଖ୍ୟ ଶ୍ରମିକ ଯୋଗାଣକାରୀ ବିଶ୍ୱନାଥ ପ୍ରଧାନ ଏବଂ ମୁଖ୍ୟ ହିସାବ ରକ୍ଷକ, ଅର୍ଥ କୋଷର ଅଧିକାରୀ ବିଦ୍ୟାଧର ପଟ୍ଟନାୟକ ।

ଏହି ମୁଖ୍ୟ ଶିଳ୍ପୀମାନଙ୍କ ସହିତ ସମସ୍ତ ଶିଳ୍ପୀ, ଶ୍ରମିକ ତଥା ସୈନିକ ବୃନ୍ଦମାନଙ୍କୁ ସମ୍ବୋଧିତ କରି ମହାରାଜା କହିଲେ, ଆଜି ଏ ଶୁଭଦିବସରେ ଶୁଭ ଲଗ୍ନରେ ଶିଳାନ୍ୟାସ ହେଲା ସୂର୍ଯ୍ୟମନ୍ଦିରର । ଏହି ମନ୍ଦିର ବେଢ଼ାରେ ପାର୍ଶ୍ୱ ଦେବତାମାନଙ୍କର ମନ୍ଦିର ନିର୍ମିତ ହେବା ପୂର୍ବରୁ ନିର୍ମିତ ହେବ ମାୟାଦେବୀ ମନ୍ଦିର ଏବଂ ସୂର୍ଯ୍ୟ ମନ୍ଦିର ।

ଆପଣମାନଙ୍କ ଜରିଆରେ ମୁଁ ଆଶା କରୁଛି ଆମ ରାଜ୍ୟର ଶିଳ୍ପୀମାନଙ୍କର ଏହା ହେବ ଏକ ଅକ୍ଷୟକୀର୍ତ୍ତିର ମନ୍ଦିର । ଏପରି ଅପୂର୍ବ କଳା କୌଶଳର କଳାକୃତି ପ୍ରକାଶିତ ହେବ; ଯାହା ବିଶ୍ୱରେ ହେବ ବିରଳ ।

ମହାରାଜା ମହାରାଣୀଙ୍କ ଜୟ ଧ୍ୱନିରେ ଚତୁର୍ଦ୍ଦିଗ ବିକମ୍ପିତ ହେଲା। ଏହାପରେ ମହାରାଜା, ମହାରାଣୀ ବ୍ରାହ୍ମଣମାନଙ୍କୁ ବସ୍ତ୍ର, ଧନରତ୍ନାଦି-ଦାନ ବିତରଣ କଲେ। ଆପ୍ୟାୟିତ ହେଲେ ସମବେତ ହୋଇଥିବା ପ୍ରଜାପାଟକ ଦର୍ଶକ ବୃନ୍ଦ ପ୍ରସାଦ ସେବନରେ। ଭିତ୍ତି ପ୍ରସ୍ତର ସ୍ଥାପନର ପର୍ବ ଶେଷ ହେବାପରେ, ପ୍ରସ୍ଥାନ କଲେ ମହାରାଜା ମହାରାଣୀ। ରାଜ୍ୟରେ ଏପରି ଏକ ଉତ୍ସବ ପୂର୍ବରୁ କେବେ ଅନୁଷ୍ଠିତ ହୋଇ ନଥିଲା, ମହା ଆଡମ୍ବରରେ ମହାଧୂମ ଧାମରେ।

x x x x

ପରଦିନଠାରୁ ଆରମ୍ଭ ହୋଇଗଲା ଦୁଇଟି ମନ୍ଦିରର ନିର୍ମାଣ କାର୍ଯ୍ୟ। ନକ୍ସା ଅନୁସାରେ ପ୍ରଥମେ ମନ୍ଦିର ବେଢ଼ାର କେବଳ ମୂଳଦୁଆ ତିଆରି ହେଲା। ବିଭିନ୍ନ ଶିବିରରେ ଶିଳ୍ପୀମାନେ ଆରମ୍ଭ କରି ଦେଲେ ମୂର୍ତ୍ତି ନିର୍ମାଣ। ମନ୍ଦିର ସବୁ ନିର୍ମାଣ ପରେ ତିଆରି ହେବ ମନ୍ଦିର ବେଢ଼ା।

ବିଶୁ ମହାରଣାଙ୍କ ନିର୍ଦ୍ଦେଶରେ ବିଭିନ୍ନ ଶିବିରରେ ଭିନ୍ନ ଭିନ୍ନ ମୂର୍ତ୍ତି, ଶିଳ୍ପୀମାନେ ଗଢ଼ିବାକୁ ଲାଗିଲେ। ମୂଳଦୁଆ ଉପରେ ହାତୀଖେଦା, ହାତୀପଲର ପିଲା ପାଳନ ଓ ଖେଳ କୌତୁକର ମୂର୍ତ୍ତି ସମୂହ ଲମ୍ବ ଲମ୍ବ ପଥର ଦେହରେ ଖୋଦିତ ହୋଇ ଖଞ୍ଜାଗଲା। ସେ ସବୁ ପଥରର ଉଚ୍ଚତା ମୋଟେ ଏକ ଫୁଟ। ଦେଉଳ ନିର୍ମାଣର କେଉଁ ସ୍ଥାନରେ କେମିତି କେତେ ଉଚ୍ଚତାରେ ମୂର୍ତ୍ତିଗୁଡ଼ିକ ରହିବ, ମନ୍ଦିର କାନ୍ଥର ମୋଟେଇ କେତେ ହେବ, ସମସ୍ତ କିଛି ବିଶୁ ମହାରଣା, ସଦାଶିବ ସାମନ୍ତରା ଓ ବଂଧୁ ରଥଙ୍କ ସହିତ ପରାମର୍ଶ କରି କରୁଥାନ୍ତି।

ସଦାଶିବ ସାମନ୍ତରା ଓ ବଂଧୁରଥ ବିଶୁ ମହାରଣାଙ୍କର ପରିକଳ୍ପନାକୁ ମନେ ମନେ ତାରିଫ କରୁଥାନ୍ତି। ଖ୍ରୀଷ୍ଟ ପୂର୍ବ ଦ୍ୱିତୀୟ ଶତକରେ ଅଜେୟ କଳିଙ୍ଗର ବିରାଟ ହସ୍ତୀବାହିନୀ ଥିଲା। ଏପରି ବିଶାଳ ହସ୍ତୀବାହିନୀ ନେଇ ରାଜା ରାଜ୍ୟ ଜୟ କରୁଥିଲେ। ଭୟଭୀତ ହୋଇ ଶତ୍ରୁ ପକ୍ଷ ଶରଣାପନ୍ନ ହେଉଥିଲେ, ଏପରି ବିଶଳ ହସ୍ତୀର ବାହିନୀକୁ ଦେଖି। କଳିଙ୍ଗର ଗୌରବମୟ ଇତିହାସକୁ ମନ୍ଦିର ପୀଠର ତଳ ପଉନରେ ଥୋଇବାର ଲକ୍ଷ୍ୟ ନେଇ ଏହି ବିଶାଳ ହାତୀଖେଦା ଓ ହସ୍ତୀମାନଙ୍କର ପିଲାପାଳନ ଓ ଖେଳ କୌତୁକର ଦୃଶ୍ୟକୁ ଖୋଦନ କରାଯାଇଛି। ସେଥିପାଇଁ ପୀଠର ତଳ ପଉନରେ ଚତୁର୍ଦ୍ଦିଗରେ ଏକ ଧାଡ଼ିବନ୍ଧା ହାତୀ ମୂର୍ତ୍ତି ଖୋଦିତ ହୋଇଛି। ଏଥିରେ ହାତୀମାନଙ୍କର କାର୍ଯ୍ୟ କଳାପର ମନୋହର ଦୃଶ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ ଓ ମନୋମୁଗ୍ଧକର ହୋଇଛି। ସେମାନଙ୍କର ସନ୍ତାନ ପାଳନଠାରୁ ଆରମ୍ଭ କରି ସେମାନଙ୍କ କୌତୁକପୂର୍ଣ୍ଣ ଖେଳ, ବିଶେଷ କରି ହାତୀମାନଙ୍କର

ପ୍ରାୟ ଦୁଇହଜାର ମୂର୍ତ୍ତି ଏଥିରେ ସ୍ଥାନିତ ହୋଇଛି। କେବଳ ସେତିକି ନୁହେଁ ଉତ୍କଳର ବୀର ସୈନ୍ୟ ବାହିନୀଙ୍କ ଚିତ୍ର ମଧ୍ୟ ଖୋଦନ କରାଯାଇଛି। ହସ୍ତୀବାହିନୀ ମଝିରେ ଅଶ୍ୱବାହିନୀ। ପଦାତିକ ବାହିନୀ, ସବାରିବାହକ, ଭାରବାହକ, ଶଗଡ଼ିଆ ମାନଙ୍କର ପଥପ୍ରାନ୍ତ ରୋଷେଇ, ନାନା ପ୍ରକାରର ଶିକାର, ଯୁଦ୍ଧ ଓ ଲଢ଼େଇର ଦୃଶ୍ୟମାନ ରହିଛି। ତାଲିମ ପ୍ରାପ୍ତ ଶିଳ୍ପୀମାନଙ୍କୁ ବିଶୁ ମହାରଣା ଏ ସବୁ ଦୃଶ୍ୟ ଖୋଦନ କରିବା ପାଇଁ ମୁତୟନ କରିଛନ୍ତି। ନିଜେ ବୁଲି ବୁଲି ସେମାନଙ୍କୁ ଖୋଦନ କରି ମଧ୍ୟ ଶିଖାଇ ଦେଉଛନ୍ତି।

କିଛିଦିନ ତଳେ ମହାରାଜା ମହାରାଣୀ ଆସି ପୀଠର ମୂଳ ପତ୍ତନର କାର୍ଯ୍ୟ ପରିଦର୍ଶନ କରୁଥିଲେ। ଆଠଫୁଟ ଚଉଡ଼ାର କାନ୍ଥର ଦେହରେ ଆରମ୍ଭ ହୋଇଥିବା ଏପରି ଚମତ୍କାର ଚିତ୍ତାକର୍ଷକ ଦୃଶ୍ୟ ଦେଖି ଆନନ୍ଦ ବିଭୋର ହୋଇଥିଲେ। ସେ ଦିନ ସେ ରାଣୀ ଅନୁସୂୟାଙ୍କୁ କହିଥିଲେ --ମୁଁ ଯାଉଛି ଦାକ୍ଷିଣାତ୍ୟ ବିଜୟରେ। ତୁମେ ମହାରାଣୀ ସମୟ କରି କେବେ କେବେ ଆସି ଏହି ମନ୍ଦିର ନିର୍ମାଣ କାର୍ଯ୍ୟର ଅଗ୍ରଗତି ପରିଦର୍ଶନ କରିବ। ମୁଁ ତ ଭାବୁଛି - ଏପରି ଏକ ମନ୍ଦିରର ନିର୍ମାଣ ପରିକଳ୍ପନା ମନ୍ଦିରଟିକୁ ନିଶ୍ଚୟ ବିଶ୍ୱ ଦରବାରରେ ଅନନ୍ୟ ଏକକ କରି ଗଢ଼ି ତୋଳିବ। ଭାରତବର୍ଷର ବିଭିନ୍ନ ସ୍ଥାନରେ ସୂର୍ଯ୍ୟଦେବଙ୍କ ପୂଜା ପାଇଁ ପ୍ରଥମ ଶତାବ୍ଦୀରୁ ଯଦି ଦେଖାଯାଏ, ମନ୍ଦିର ଓ ଗୁମ୍ଫା ମାନ ନିର୍ମାଣ କରି ସେଥିରେ ସୂର୍ଯ୍ୟଦେବଙ୍କ ମୂର୍ତ୍ତିକୁ ସ୍ଥାପନ କରି ପୂଜା କରୁଥିବାର କଥା ବିରଳ ନୁହେଁ। ଦ୍ୱିତୀୟ ଶତାବ୍ଦୀରେ ଭୁବନେଶ୍ୱର ଖଣ୍ଡଗିରିର ଅନନ୍ତ ଗୁମ୍ଫାରେ ଖୋଦିତ ସୂର୍ଯ୍ୟଦେବଙ୍କ ମୂର୍ତ୍ତି ଏବେ ବି ରହିଛି। କେବଳ ସେତିକି ନୁହେଁ ଏବେ ବି ରହିଛି ଷଷ୍ଠ ଶତାବ୍ଦୀରେ ଖୋଦିତ ହୋଇଥିବା ଆମ ରାଜ୍ୟର ଖିଚିଂରେ ସୂର୍ଯ୍ୟଦେବଙ୍କ ମୂର୍ତ୍ତି।

ମହାରାଣୀ ଅନୁସୂୟାକହିଲେ, ଅଷ୍ଟମ ଶତକରେ ମୋ ଜନ୍ମଭୂମି କାଶ୍ମୀର ରାଜ୍ୟରେ ଶ୍ରୀନଗରଠାରୁ ପଚାଶ କିଲୋମିଟର ଦୂର ଅନନ୍ତନାଗ (ଇସଲାମାବାଦ)ଠାରେ କାଶ୍ମୀରର ରାଜା ଲଳିତାଦିତ୍ୟ ବିଖ୍ୟାତ ମାର୍କଣ୍ଡମନ୍ଦିର ନିର୍ମାଣ କରିଥିଲେ।

ମହାରାଜା କହିଲେ କେବଳ ଭାରତବର୍ଷରେ ନୁହେଁ ପୃଥିବୀର କେତେକ ଦେଶରେ ସୂର୍ଯ୍ୟଦେବଙ୍କର ପୂଜା ହୁଏ। ସେହି ଦେଶଗୁଡ଼ିକୁ ବିଶେଷ କରି ଜାପାନ, ଥାଇଲାଣ୍ଡକୁ ସୂର୍ଯ୍ୟୋଦୟର ଦେଶ କୁହାଯାଏ। ମନ୍ଦିର ବେଢ଼ାରେ ଛିଡ଼ା ହୋଇ ଏମିତି କଥୋପକଥନ ହେଉଥିଲେ ସୂର୍ଯ୍ୟାଲୋକରେ, ରାଜା ଓ ରାଣୀ। ଭୁଲି ଯାଇଥିଲେ ତୀର୍ଯ୍ୟକ ସୂର୍ଯ୍ୟାଲୋକ ସେମାନଙ୍କ ଶରୀରକୁ କ୍ଲେଶ ଦେବାରେ ଲାଗିଛି।

ସେଦିନ ଅନୁଭବ ନ କରି ସୂର୍ଯ୍ୟୋତ୍ତାପ, ସେମାନେ ବାହୁଡ଼ି ଆସିଥିଲେ।



# (୧୧)

ଯୁଦ୍ଧ ପାଗଳ ଲାଗୁଥିଲା ନରସିଂହ ଦେବ। ଯୁଦ୍ଧଖୋର ଜାତି ବୀର-ଉତ୍କଳୀୟଙ୍କର ପ୍ରତିନିଧି ସେ। 'କଳିଙ୍ଗାଃ ସାହସିକାଃ' ଙ୍କର ବଂଶଧର ସେ। ଉତ୍ତର ପୂର୍ବ ରାଜ୍ୟ ଜୟ କରିବା ପରେ ସେ ଆରମ୍ଭ କରିଛନ୍ତି ଦାକ୍ଷିଣାତ୍ୟ ଅଭିଯାନ। ବିରାଟ ହସ୍ତୀ ବାହିନୀ ନେଇ ସେ ଗତି କରୁଛନ୍ତି ଦାକ୍ଷିଣାତ୍ୟ। ଆଖି ଆଗରେ ତାଙ୍କର ଭାସି ଉଠୁଛି ଅତୀତ ଜୀବନର ଇତିହାସ। ଯେଉଁ ଜୀବନ ସହିତ ଛନ୍ଦି ହୋଇ ରହିଥିଲା - ଦୁଇଟି ଅମୂଲ୍ୟ ଜୀବନ। ଆଜି ହଜାଇ ବସିଥିବା ସେହି ଦୁଇଟି ଜୀବନର କରୁଣ କାହାଣୀ ଭାସି ଉଠିଛି ତାଙ୍କ ଆଖିଆଗରେ। ଦୁଇଟି ଜୀବନର ମର୍ମନ୍ତୁଦ କାହାଣୀ ସେ ବଂଚିଥିବା ଯାକେ ଜୀବନରେ କେବେ ଭୁଲି ପାରିବେ ନାହିଁ।

ଗୋଟିଏ ଜୀବନ ଥିଲା ପ୍ରାଣଭରି ଭଲ ପାଉଥିବା ପ୍ରିୟତମା ଅପୂର୍ବ ଅନିନ୍ଦ୍ୟ ସୁନ୍ଦରୀ ମାୟାଦେବୀ। ଯାହା ପାଖରେ ସେ ହାରି ଯାଇଛନ୍ତି ସାରାଜୀବନ ପାଇଁ। ଏ ଜୀବନରେ ଚେଷ୍ଟା କଲେ ମଧ ସେ ଶୁଦ୍ଧ-ପ୍ରେମ ପାଖରେ, କେବେ ଜିତି ପାରିବେ ନାହିଁ। ତାଙ୍କୁ ସବୁଦିନ ପାଇଁ ହାରିବା ଭିତରେ ହଜାଇ ଦେଇ ଯାଇଛନ୍ତି ସେ। ପବିତ୍ର ପ୍ରେମ ଆଗରେ ନିଜର ଅମୂଲ୍ୟ ଜୀବନକୁ ତୁଚ୍ଛ କରି ପ୍ରେମର ବୈଜୟନ୍ତୀ ସେ ଉଡାଇ ଯାଇଛନ୍ତି। ପ୍ରମାଣ କରି ଦେଇ ଯାଇଛନ୍ତି, ପ୍ରେମ ହିଁ ସତ୍ୟ, - ଜୀବନ ହିଁ ମିଥ୍ୟା। ଜୀବନ ଆଜି ଅଛି - କାଲି ନଥିବ। ପ୍ରେମ ହିଁ ଚିରନ୍ତନ। ପ୍ରେମରେ ପୂର୍ଣ୍ଣ ଜୀବନର ସାର୍ଥକତା। ପ୍ରେମରେ ହିଁ ରହିଥାଏ ଅମରତ୍ୱର ଆସ୍ୱାଦ। ପ୍ରେମ ଶୂନ୍ୟ ଜୀବନ ଜୀବନ ନୁହେଁ।

ନରସିଂହ ଦେବ ଯେଉଁଠିକୁ ଯାଉଛନ୍ତି, ବିଜୟର ବାନା ଉଡ଼ାଇ ଫେରୁଛନ୍ତି। ଏଇଥିପାଇଁ ତ ତାଙ୍କ ପାଖରେ ଜୀବନର ମୂଲ୍ୟର ହ୍ରାସ ଘଟୁଛି। ବୁଝିଛନ୍ତି ସେ ଜୀବନ ତୁଚ୍ଛ। ଏ କଳିଙ୍ଗ ଭୂଇଁ, ଏ ଉତ୍କଳ ଭୂଖଣ୍ଡ, କାଳେ କାଳେ ଶିକ୍ଷା ଦେଇ ଆସିଛି - ତରବାରୀର ଜୟ, ଜୟ ନୁହେଁ, ହୃଦୟର ଜୟ ହିଁ ଜୀବନର ଜୟ। ବିଜୟର ଆନନ୍ଦ

କ୍ଷଣିକ ପାଇଁ। ହେଲେ ପ୍ରେମର ଆନନ୍ଦ-ସବୁକାଳ ପାଇଁ। ପ୍ରେମରେ କିଛି ହରାଇବାର ନାହିଁ। କେବଳ ଉପଲବ୍ଧ ହୁଏ ଆତ୍ମସନ୍ତୋଷ।

ଅନ୍ୟ ଗୋଟିଏ ଜୀବନ ଥିଲା - ଭଗ୍ନୀପତି, ସେନାପତି ପରମାର୍ଦ୍ଦି ଦେବ। ସେ ଜୀବନ ଥିଲା ଭଲ ପାଇବାର, ପ୍ରେମ କରିବାର। ଯେଉଁ ଭଉଣୀ ଚନ୍ଦ୍ରିକାଙ୍କୁ ସେ ହେତୁ ପାଇଲା ପରେ ଦେଖି ଆସୁଛନ୍ତି କାୟାକୁ ଛାୟାଭଳି ତାଙ୍କ ସହିତ। ତାଙ୍କର ଖେଳସାଥୀ ହେବାଠାରୁ ଆରମ୍ଭ କରି ତାଙ୍କ ଜୀବନକୁ ସରସ ସୁନ୍ଦର କରିବା ପାଇଁ, କେତେ ତ୍ୟାଗ ସ୍ୱୀକାର କରି, ସ୍ନେହ ଶ୍ରଦ୍ଧା ଦେଇ ମମତାମୟୀ ମାଆ ଭଳି ତାଙ୍କ ଉପରେ ସେ ଢ଼ାଳି ଆସିଛନ୍ତି ଆଶୀର୍ବାଦର ବାରିଧାରା। ତାଙ୍କରି ଆଖିରେ ଶୁଖୁ ନାହିଁ ଅଶ୍ରୁର ବାରିଧାରା, ପତି ପରମାର୍ଦ୍ଦି ଦେବଙ୍କୁ ହରାଇ। ସେ ବାରିଧାରାକୁ ବନ୍ଧ ପକାଇ ବନ୍ଦ କରିବା ସମ୍ଭବ କି ? ପ୍ରେମର ବନ୍ଧନରେ ବାନ୍ଧି ହୋଇ ଯାଇଥିଲା ଦୁଇଟି ଜୀବନ। ଗୋଟିଏ ପ୍ରେମ ପାଗଳ ଜୀବନର ଅବସାନ ଘଟିଲା, ସେ ଜୀବନରଥିଲା, ଏ ଉତ୍କଳର ମାଟି ପାଇଁ ଚରମପ୍ରେମ। ଯେଉଁଥିପାଇଁ ସେହି ଓଡ଼ିଆ ଜାତିର ଟେକ ରଖିବାକୁ ଭଗ୍ନିପତି ପରମାର୍ଦ୍ଦି ଦେବ ଯୁଦ୍ଧ କ୍ଷେତ୍ରରେ ପ୍ରାଣ ଦେଇଗଲେ। ସେହି ହିଁ ଥିଲେ ତାଙ୍କର ଅସ୍ତ୍ର-ବିଦ୍ୟାର ଆଦ୍ୟ ଗୁରୁ। ପ୍ରାଣ ଭରି ସେ ଭଲ ପାଉଥିଲେ ତାଙ୍କୁ ଅନୁଜ ଭଳି। ତାଙ୍କର ଅବଦାନ, ଭଉଣୀ ଚନ୍ଦ୍ରିକା ଦେବୀଙ୍କ ଅବଦାନ କଥା ଭାବି ତାଙ୍କର ଅନ୍ତରତମ ପ୍ରଦେଶ ଅଶ୍ରୁରେ ଆର୍ଦ୍ର ହୋଇ ଉଠୁଥିଲା କୃତଜ୍ଞତାରେ। ମନେ ପଡ଼ି ଯାଉଥିଲା ଦିଗ୍‌ବିଜୟରେ ଯାଉଥିବା ମହାରାଜା ନରସିଂହ ଦେବଙ୍କ ଅନ୍ତରରେ ସାଇତା ହୋଇ ରହିଥିବା କଥାଗୁଡ଼ିକ।

ଯେଉଁଦିନ ରାତ୍ରିରେ ତାଙ୍କ ବକ୍ଷ ସଂଲଗ୍ନା ହୋଇ ଅନୁସୂୟା ତାଙ୍କୁ କହିଥିଲେ, ତୁମେ ମାୟାଦେବୀଙ୍କୁ ଭୁଲି ପାରିବ ନାହିଁ। ହେଲେ ସମୟ ପଡ଼ିଲେ ମୋତେ ଭୁଲିଯିବ। ଲାଙ୍ଗୁଳା ନରସିଂହ ଦେବ ତାଙ୍କୁ ଆଦର କରି କହିଥିଲେ, ଶୁଣ ପ୍ରିୟତମା। ମାୟା ମୋତେ ଶିକ୍ଷା ଦେଇଛି - ଜୀବନ ହିଁ ମିଥ୍ୟା, ପ୍ରେମ ହିଁ ସତ୍ୟ।

ଅନୁସୂୟା କହିଲେ, ପ୍ରିୟତମ, ମୁଁ ମଧ୍ୟ ତୁମ ପାଖରେ ସେହି ସତ୍ୟର ପରୀକ୍ଷା ଦେବି। ସେହିମାନଙ୍କର ପ୍ରେମର ସ୍ମାରକୀ ସୂର୍ଯ୍ୟମନ୍ଦିରର ଚୂଳ ନ ମାରିବା ପର୍ଯ୍ୟନ୍ତ ମୋ ପାଇଁ ମୁଁ ତୁମଠାରୁ କିଛି ମାଗିବି ନାହିଁ। ପ୍ରୀତ ହୋଇ ଲାଙ୍ଗୁଳା ନରସିଂହ ଦେବ କହିଥିଲେ, ମୁଁ ମଧ୍ୟ ତୁମ ପାଖରେ କଥା ଦେଉଛି, - ଏ ଜାତିର ଗୌରବଧ୍ୱଜାକୁ କୋଣାର୍କ ଶିଖର ଦେଶରେ ନ ଉଡ଼ାଇଲା ପର୍ଯ୍ୟନ୍ତ ମୁଁ ବ୍ରହ୍ମଚର୍ଯ୍ୟ ଧାରଣ କରିବି। ବ୍ରହ୍ମଚର୍ଯ୍ୟ ହେଉଛି

ଶକ୍ତିର ଉତ୍ସ। ସେହି ଶକ୍ତିରେ ଭୀଷ୍ମଦେବ ହୋଇଥିଲେ ଇଚ୍ଛା ମୃତ୍ୟୁର ଅଧିକାରୀ, ଅପରାଜେୟ। ମୁଁ ସେହି କଠୋର ବ୍ରତ ଧାରଣ କରୁଛି ମହାରାଣୀ। ସେହି କଥାଗୁଡ଼ିକ ମନରେ ପଡ଼େ ମହାରାଜାଙ୍କର। ତାଙ୍କ ପ୍ରାଣରେ ଭରି ଉଠେ ଅପ୍ରମିତ ଶକ୍ତି।

ସେ ଦେଖନ୍ତି ଜନନୀ ଉତ୍କଳମାତାର ମସ୍ତକ ମଣ୍ଡନ କରି ମୁକୁଟ ସଦୃଶ ବିରାଜମାନ୍ କରୁଛି ନୀଳାଚଳ। ବିଜେ କରିଛନ୍ତି ଜଗତର ନାଥ। ଯାହାଙ୍କ କୃପାରୁ ଉତ୍ତର ଭାରତ ଓ ପୂର୍ବଭାରତ ଜୟକରି ଉଡ଼ାଇଛନ୍ତି ବିଜୟଧ୍ୱଜା। ମନେ ପଡ଼ି ଯାଉଛି, ହସ୍ତୀ ଉପରୁ ତାଙ୍କର ପଡ଼ି ଯିବାର ଦୃଶ୍ୟ। ଶ୍ୱେତ ହସ୍ତୀଟି କେମିତି ତାଙ୍କୁ ଯୁଦ୍ଧକ୍ଷେତ୍ରରୁ ନିକାଞ୍ଚନ ବନାନୀ ଅଂଚଳକୁ ଟେକି ନେଇ ଆସିଲା। କେମିତି ସଂଜ୍ଞା ଲାଭ କରି ସେହି ପ୍ରଭୁ ଜଗନ୍ନାଥଙ୍କୁ ସ୍ମରଣ କରି, ସେ ପୁଣି ଫେରି ପାଇଥିଲେ ନିଜ ଭିତରେ ଅପ୍ରମିତ ବଳ। ପୁଣି ଯୁଦ୍ଧକ୍ଷେତ୍ରକୁ ଫେରି ଯାଇ ଯୁଦ୍ଧ କରି ଶତ୍ରୁକୁ ପରାସ୍ତ କରିଛନ୍ତି।

ଏବେ ଆନ୍ଧ୍ରପ୍ରଦେଶ ଜୟ କରି ସୀମାଚଳ ପ୍ରଦେଶରେ ବିଜୟର ସ୍ମାରକୀ ଭାବରେ ପ୍ରଥମେ ନିର୍ମାଣ କରିଛନ୍ତି ଭିନ୍ନ ଏକ ସୂର୍ଯ୍ୟ ମନ୍ଦିର। ମାତ୍ର ଅଧସ୍ତନ ଆନ୍ଧ୍ର ଅଧିପତି ଯେଉଁଠି ସୂର୍ଯ୍ୟଦେବଙ୍କ ମୂର୍ତ୍ତି ବଦଳରେ ଶିଳ୍ପୀ ଦ୍ୱାରା ଗଢ଼ି ଦେଇଛି ତାଙ୍କରି ମୂର୍ତ୍ତିଟିଏ। ସେ ଯେତେବେଳେ ସେହି ମନ୍ଦିର ପରିଦର୍ଶନରେ ଯାଇଛନ୍ତି - ମନେ ପଡ଼ିଯାଇଛି ମହାରାଣୀ ଅନୁସୂୟାଙ୍କ କଥା। ତାଙ୍କ ଅବର୍ତ୍ତମାନରେ ମହାରାଣୀ ପରିଦର୍ଶନ କରୁଥିବେ କୋଣାର୍କ ମନ୍ଦିର ନିର୍ମାଣର କାର୍ଯ୍ୟ। ବାରଶହ ବଢ଼େଇ ଲାଗି ଥିବେ କାର୍ଯ୍ୟରେ। ବିଶାଳମନ୍ଦିର ମୂଳଦୁଆ ଉପରକୁ ଧୀରେ ଧୀରେ ମୁଣ୍ଡଟେକୁଥିବ। ସେଦିନ ସେ ଦେଖି ଆସିଥିଲେ ପାଠୀର ତଳ ପତ୍ତନର କାର୍ଯ୍ୟ ସମାପ୍ତ ହୋଇ ଯାଇଛି। ଆରମ୍ଭ ହୋଇ ଯାଇଥିବ ତଳପୀଠ। ନକ୍ସା ଅନୁସାରେ ବିଶୁ ମହାରଣା କହିଥିଲେ ଏ ପୀଠର ଉଚ୍ଚତା ହେବ ୧୩ଫୁଟ ୩ଇଞ୍ଚ। ସତେ ବିଶୁ ମହାରାଣା ବିଶ୍ୱକର୍ମାଙ୍କର ପ୍ରତିଭୂ। ବୋଧହୁଏ ବିଶ୍ୱକର୍ମା ଉତ୍କଳରେ ବିଶୁ ମହାରଣା ଭାବରେ ଜନ୍ମ ଗ୍ରହଣ କରିଛନ୍ତି। ତାଙ୍କରି ଉପରେ ଅଗାଧ ବିଶ୍ୱାସ ମହାରାଜାଙ୍କର। ସୂର୍ଯ୍ୟ କିରଣ ଲାଗିଲେ ପଦ୍ମ ଫୁଲଟିଏ ଯେମିତି ପାଖୁଡ଼ା ଗୁଡ଼ିକୁ ମେଲିବାକୁ ଆରମ୍ଭ କରେ। ଯେମିତି କୋଣାର୍କ ସୂର୍ଯ୍ୟମନ୍ଦିର - ସୂର୍ଯ୍ୟ କିରଣରେ ଧୀରେ ଧୀରେ ଆତ୍ମପ୍ରକାଶ କରୁଥିବ।

ମହାରାଣୀଙ୍କଠାରୁ ଦୂତ ଆସି ପହଞ୍ଚିବାକୁ ବେଶ୍ କିଛି ଦିନ ଲାଗିଯିବ। ସେତେଦିନ ପର୍ଯ୍ୟନ୍ତ ତାଙ୍କ ସ୍ୱପ୍ନର କୋଣାର୍କର ନିର୍ମାଣ କାର୍ଯ୍ୟର ଅଗ୍ରଗତି ତାଙ୍କ ଆଖି ଆଗରେ ସ୍ୱପ୍ନ ଭଳି ଭାସି ଉଠୁଛି।

ବୀର ବିକ୍ରମରେ ଆନ୍ଧ୍ରପରେ ଦାକ୍ଷିଣାତ୍ୟର କୋଲବର୍ଗ, ବିଦର ଇତ୍ୟାଦି ରାଜ୍ୟ ଜୟ କରି ଚାଲିଲେ ସେ। ସମର କୁଶଳୀ ଉଗ୍ରସେନା ଏବଂ ନରସିଂହ ଦେବଙ୍କ ଶୃଙ୍ଖଳିତ ଯୁଦ୍ଧ ଯୋଜନା, ତାଙ୍କ ବିଜୟର ମଧ୍ୟ କାରଣ ଥିଲା। ବର୍ଷ ପରେ ବର୍ଷ ଅବାରିତ ଭାବରେ ରାଜ୍ୟ ଜୟ ତାଙ୍କୁ ଶାନ୍ତି ଦେଇ ପାରୁନଥିଲା। ତାଙ୍କୁ ବିଚଳିତ କରୁଥିଲା ରାଜ୍ୟରେ ଶାନ୍ତି, ପ୍ରଜାଙ୍କର ଶାନ୍ତି, ସର୍ବୋପରି କୋଣାର୍କରେ ଆରମ୍ଭ ହୋଇଥିବା ସୂର୍ଯ୍ୟ ମନ୍ଦିର ନିର୍ମାଣ କାର୍ଯ୍ୟର ସମାପ୍ତି।

ରାଜ୍ୟ ସୀମାରେ ଅହରହ ମୋଗଲ ଗୋଳର ଆଶଙ୍କା ରହିଥିଲେ ବି, ଢେଙ୍କିଆ ପାଇକମାନେ ଧନୁଶର ଓ ଖଣ୍ଡା ଧରି ରାଜ୍ୟ ଭିତରେ ବହିଃଶତ୍ରୁର ଆକ୍ରମଣର ଆଶଙ୍କାକୁ ଦୂର କରିବାରେ ସଚେଷ୍ଟ। ଆବଶ୍ୟକ ପଡ଼ିଲେ ବଣୁଆ ପାଇକମାନେ ଧନୁତୀର, ଖଣ୍ଡା, ବର୍ଚ୍ଛା ଆଦି ଅସ୍ତ୍ରଶସ୍ତ୍ର ଧରି ରାଜ୍ୟଜୟ କରିଯିବା ପାଇଁ ମଧ୍ୟ ପ୍ରସ୍ତୁତ। ଆହୁରି କିଛି ପାଇକମାନେ ରାଜାଙ୍କଠାରୁ ନିଷ୍କର ଭାବରେ ଜାଗିରୀ ଜମି ଲାଭ କରି ଚାଷ ବାସ କାର୍ଯ୍ୟରେ ବ୍ୟସ୍ତ। ଆବଶ୍ୟକସ୍ଥଳେ ସେମାନେ ମଧ୍ୟ ଯୁଦ୍ଧକୁ ଯିବା ପାଇଁ ଆଗଭର। ଓଡ଼ିଆ ଜାତି ଶାନ୍ତିପ୍ରିୟ ଜାତି। ଦରକାର ପଡ଼ିଲେ ଶତ୍ରୁ ବିରୁଦ୍ଧରେ ଖଣ୍ଡା ଧରିବା ପାଇଁ, ମାତୃଭୂମିର ସୁରକ୍ଷା ପାଇଁ ସେମାନେ ପ୍ରସ୍ତୁତ। ସେଦିନ ଖ୍ରୀଷ୍ଟ ପୂର୍ବ ଦ୍ୱିତୀୟ ଶତକରେ ଏହି ଜାତି ଚଣ୍ଡାଶୋକ ସମ୍ରାଟ ଅଶୋକଙ୍କୁ ସମୁଚିତ ଶିକ୍ଷା ଦେଇଥିଲା। ନିଜର ରକ୍ତ ଓ ପ୍ରାଣ ବିନିମୟରେ ପ୍ରମାଣ କରି ଦେଇଥିଲା ଏ ଜାତି ଅଜେୟ। ଗଙ୍ଗବଂଶର ରାଜତ୍ୱ ଥିଲା ଶାନ୍ତି ସମୃଦ୍ଧିର ଯୁଗ। ବିଶେଷ ଭାବରେ ନରସିଂହ ଦେବଙ୍କ ରାଜୁତି ଥିଲା ଦେଶର ଇତିହାସରେ ସୁବର୍ଣ୍ଣ ଯୁଗ। ଭାସ୍କର୍ଯ୍ୟ, କଳା, ସାହିତ୍ୟ, ସଂସ୍କୃତି, ପରମ୍ପରାର ସୁରକ୍ଷା ଦିଗରେ ତାଙ୍କର ଥିଲା ଅତୁଳନୀୟ ଅବଦାନ।

ଆଜି ଆଠବର୍ଷ ଧରି ଅବିଶ୍ରାନ୍ତ ଭାବରେ ଯୁଦ୍ଧ କରି ବିଜୟର ଧ୍ୱଜା ଉଡାଇ ଯେତେବେଳେ ଦାକ୍ଷିଣାତ୍ୟରୁ ଫେରି ଆସନ୍ତି ମହାରାଜା ନରସିଂହ ଦେବ, ସେତେବେଳେ ତାଙ୍କ ପାଇଁ ମହାରାଣୀ ବିପୁଳ ଭବ୍ୟ ସମ୍ବର୍ଦ୍ଧନାର ଆୟୋଜନ କରିଥାନ୍ତେ କୋଣାର୍କ କଟକରେ।

ସେ ଦିନ କିନ୍ତୁ ବିଜୟୀ ମହାରାଜା ଦାକ୍ଷିଣାତ୍ୟ ବିଜୟ ପରେ ବାର୍ତ୍ତା ପଠାଇଥିଲେ ମହାରାଣୀ ଅନୁସୂୟାଙ୍କୁ। ଯେ ପର୍ଯ୍ୟନ୍ତ କୋଣାର୍କରେ ସୂର୍ଯ୍ୟମନ୍ଦିରର ଚୂଳ ନ ମରିଛି - ସେ ପର୍ଯ୍ୟନ୍ତ କୌଣସି ଭବ୍ୟ ସମ୍ବର୍ଦ୍ଧନା ସେ ଗ୍ରହଣ କରିବେ ନାହିଁ। ସୈନ୍ୟସାମନ୍ତ

ବାରବାଟୀ ଦୁର୍ଗ ଶିବିରକୁ ଫେରିଯିବେ। ସେ ଫେରିବେ - କୋଣାର୍କକୁ ନିରାଡ଼ମ୍ବର ଭାବରେ। ଅକ୍ଷରେ ଅକ୍ଷରେ ଅନୁସୂୟା ପାଳନ କରିଥିଲେ ପତିଙ୍କର ନିର୍ଦ୍ଦେଶନାମାକୁ।

ଫେରି ଆସିଛନ୍ତି ସମର କ୍ଳାନ୍ତ ପତି କୋଣାର୍କର ଉଆସକୁ। ଆଜି ସେ ତାଙ୍କର ଦୀର୍ଘ ଦିନର ଅନୁପସ୍ଥିତି ପାଇଁ ବିବ୍ରତ। ମହାରାଣୀ ଅନୁସୂୟାଙ୍କ ସଙ୍ଗ ଲାଭର ଲାଳସା ପୂର୍ବରୁ ତ ସେ ପରିତ୍ୟାଗ କରିଛନ୍ତି। ଉଭୟେ ପତିପତ୍ନୀ ଶପଥ ନେଇଛନ୍ତି - ବ୍ରହ୍ମଚାରୀ ଓ ବ୍ରହ୍ମଚାରିଣୀର ଜୀବନ ଅତିବାହିତ କରିବେ - ଯେପର୍ଯ୍ୟନ୍ତ କୋଣାର୍କର ସୂର୍ଯ୍ୟମନ୍ଦିରର ଚୂଳି ନ ମରିଛି। ସେ ପର୍ଯ୍ୟନ୍ତ କୌଣସି ବିଳାସ ବ୍ୟସନ ଓ ଉପଭୋଗର ବାସନା ତାଙ୍କ ପ୍ରାଣକୁ ଛୁଇଁ ପାରିବ ନାହିଁ। ରାତ୍ରିଭୋଜନ ପରେ ବିଶ୍ରାମ କରିବାକୁ ଯାଇ ସେ କେତେବେଳେ ଶଯ୍ୟା ତ୍ୟାଗ କରି କୋଣାର୍କର ବେଢ଼ାକୁ ଚାଲି ଯାଇଛନ୍ତି - ଅନୁସୂୟାଙ୍କ ଅଗୋଚରରେ। ତୋଫା ଜହ୍ନ ଆଲୁଅରେ ସେ ଦେଖୁଛନ୍ତି - ଧୀରେ ଧୀରେ କେମିତି ସୂର୍ଯ୍ୟ ମନ୍ଦିର ମୁଣ୍ଡ ଟେକିବାକୁ ଚେଷ୍ଟା କରୁଛି। ଚତୁର୍ଦ୍ଦିଗ ଶୂନ୍‌ଶନ୍। ସମୁଦ୍ରର ଅଶାନ୍ତ ଢ଼େଉ ଗୁଡ଼ିକ ଘୋ ଘୋ ଗର୍ଜନ କରି କୂଳରେ ମୁଣ୍ଡ ପିଟୁଛି। ରାତ୍ରିର ସମୁଦ୍ର ପକ୍ଷୀର କାକଳି ତା ଭିତରେ ଶୁଣା ଯାଉଛି। ସାରା ଦିନ ଶିଳ୍ପୀ ଓ ଶ୍ରମିକମାନେ କାମ କରି ବିଶ୍ରାମ ନେଇଛନ୍ତି ସେମାନଙ୍କ ଶିବିରରେ। ମନ୍ଦିର ବେଢ଼ା ଭିତରର ଜଗୁଆଳିମାନେ ବି କେତେବେଳେ ଶୋଇ ପଡ଼ିଲେଣି।

ମନ୍ଦିରର ତଳ ପୀଠ, ଉପର ପୀଠ - ଯାହାର ନିର୍ମାଣ କାର୍ଯ୍ୟ ବିଶୁ ମହାରଣା ତାଙ୍କୁ ବୁଝାଇ ଦେଇଥିଲେ। ସେ ସବୁର ନିର୍ମାଣ କାର୍ଯ୍ୟ ସମାପ୍ତ ହୋଇଗଲାଣି। ପ୍ରାୟ କୋଡ଼ିଏ ଫୁଟରୁ ଉର୍ଦ୍ଧ୍ୱ ଉଚ୍ଚତା ଯାଏଁ ନିର୍ମାଣ କାର୍ଯ୍ୟ ଆଗେଇ ଯାଇଛି। ସେ ବୁଲି ବୁଲି ଦେଖୁଛନ୍ତି - ଏହି ଉଚ୍ଚତାର ନିର୍ମାଣ କାର୍ଯ୍ୟକୁ ବାଲିରେ ପୋତି ଦିଆଯାଇଛି। ବାଲି ଉପରକୁ ଦିଶୁଛି ତିନି ଚାରିଫୁଟ ଉଚ୍ଚର କାରୁକାର୍ଯ୍ୟ ଶୋଭିତ ପଥରଗୁଡ଼ିକ।

ଯେତେବେଳେ ସେ ମନ୍ଦିର ବେଢ଼ାକୁ ପ୍ରବେଶ କରୁଥିଲେ, ତାଙ୍କୁ ଜଣା ପଡୁଥିଲା ବାଲିର ସ୍ତୁପଟିଏ। ତା ଚାରି ପାଖରେ ବିକ୍ଷିପ୍ତ ହୋଇ ପଡ଼ି ରହିଛି କାରୁକାର୍ଯ୍ୟ ଖଚିତ ପଥରଗୁଡ଼ିକ। ସେଗୁଡ଼ିକ ପୁଣି ଧୀରେ ଧୀରେ ମନ୍ଦିର ତୋଳାରେ ଯୋଡା ହେବ। ବଡ଼ ବଡ଼ ପଥର ଖଣ୍ଡକୁ ଉପରକୁ ନେବା ପାଇଁ ଏପରି ବାଲିପୂର୍ଣ୍ଣ କରିବାର ବ୍ୟବସ୍ଥା କଥା ସେଦିନ ବିଶୁ ମହାରଣା ମହାରାଜଙ୍କୁ ବୁଝାଇ ଦେଇଥିଲେ। ନ ହେଲେ କାରୁକାର୍ଯ୍ୟ ଖୋଦିତ ଶହ ଶହ ମହଣର ପଥର ଉପରକୁ ଟେକି ହେବ ନାହିଁ। ବାଲିର ସ୍ତୁପ ଉପରେ

ଛିଡା ହୋଇ ସେ ପଥର ଦେହରେ ହାତ ବୁଲାଉଥିଲେ। ଯେଉଁ ପଥର ଖଣ୍ଡଗୁଡ଼ିକ ଦେହରେ ଅପରୂପା ନାରୀ ମୂର୍ତ୍ତି ଗୁଡ଼ିକ ବିଭିନ୍ନ ଭଙ୍ଗୀରେ ଛିଡା ହୋଇଛନ୍ତି। ତାହାରି ଭିତରେ ସେ ଖୋଜୁଥିଲେ ଏ ଜୀବନରେ ଯାହାକୁ ସେ ଆଉ ଫେରି ପାଇବେ ନାହିଁ। କାଳେ ହୁଏତ ପାଇଯିବେ ପଥରର ଆତ୍ମା ଭିତରେ ତାଙ୍କ ଖୋଜିବାର ବିଦେହୀ ଆତ୍ମାଟିକୁ। ତାଙ୍କୁ ଲାଗିଲା ସତେଯେମିତି ସେହି ପଥର ଗୁଡ଼ିକ ଭିତରେ ଆତ୍ମାଗୁଡ଼ିକ ଯେମିତି ଆତ୍ମପ୍ରକାଶ କରୁଛନ୍ତି। ସେ ଚାହୁଁଛନ୍ତି ସେହି ପଥରଗୁଡ଼ିକ ସହିତ କଥା ହେବାକୁ। ରାତ୍ରିର ନିସ୍ତବ୍ଧତା ଭିତରେ କିଏ ଯେମିତି ଫିସ୍ ଫିସ୍ କରୁଛି।



# (୧୨)

ମଣିଷମନର ବଳ ହିଁ ତାର ବାହୁରେ ଶକ୍ତି ଯୋଗାଏ। ଶିଳ୍ପୀମାନଙ୍କ ମନରେ ମନ୍ଦିର ଗଢ଼ିବାର ନିଶା ଜାଗିଛି। ସେମାନଙ୍କ ଶକ୍ତିଶାଳୀ ବାହୁ, ନିହାଣ ମୁଗୁର ଧରି ପଥର କାଟୁଛି; ପଥରରେ କଳାର କୀର୍ତ୍ତି ରଚନା କରି ଚାଲିଛନ୍ତି ସେମାନେ। ଉତ୍କଳ ଉନ୍ନତ କଳାର ଦେଶ ବୋଲି ଯେଉଁ ଗୌରବ ଅର୍ଜନ କରିଛି - ସେଥିରେ ଯେମିତି କବେହେଁ କଳଙ୍କର ଦାଗ ନଲାଗୁ।

ପ୍ରଥମେ ପ୍ରଥମେ ସେମାନେ ପରିବାରର ପ୍ରୀତି ଓ ଭଲ ପାଇବା ଭୁଲି ପାରୁନଥିଲେ। ଛାଡ଼ି ଆସିଥିବା ପ୍ରେୟସୀ, ପତ୍ନୀ, ପୁତ୍ର, ପିତାମାତା କନ୍ୟାଙ୍କଠାରୁ ବିଦାୟ ନେଇ ଆସିଥିବା ମୁହୂର୍ତ୍ତର ସଜଳ, ଲୁହଝରା ଆଖି ଗୁଡ଼ିକ ସେମାନଙ୍କ ଅନ୍ତରକୁ ଆନ୍ଦୋଳିତ କରୁଥିଲା। କେଉଁ ଶିଳ୍ପୀ ଛାଡି ଆସିଛି ବୃଦ୍ଧ ପିତାମାତାଙ୍କୁ। କିଏ ଛାଡି ଆସିଛି ତାର ପୁତ୍ର କନ୍ୟାକୁ। କିଏ ବା ଛାଡି ଆସିଛି ପ୍ରିୟତମା ପତ୍ନୀକୁ। କାହାର ଘରୁ ଖବର କେବେକେବେ ଆସୁଛି ତ କାହା ଘରୁ ଖବର ଆସିବାର ନାହିଁ।

ହେଲେ ରାଜାଙ୍କ ନିର୍ଦ୍ଦେଶରେ ଏହି କେତେବର୍ଷ ଧରି ରାଜକୋଷରୁ ସେମାନଙ୍କର ଠିକଣାରେ ପଠାଯାଉଛି ସେମାନଙ୍କର ମାସକୁ ମାସ ମୂଲ। ଯେଉଁ ରାଜ କର୍ମୀମାନେ ଏଥିପାଇଁ ମତୁୟନ ହୋଇଛନ୍ତି - ସେହିମାନଙ୍କ ହାତରେ ଆସୁଛି ଶିଳ୍ପୀମାନଙ୍କ ପାଖକୁ ପରିବାରର ସମାଚାର। କାହା ପରିବାରର ବୃଦ୍ଧପିତାମାତାର ଭଲମନ୍ଦ ବୁଝିବା ପାଇଁ ସେହି ଗାଁର ମୁଖିଆ ଉପରେ ଦାୟିତ୍ୱ ନ୍ୟସ୍ତ କରାଯାଇଛି। ସ୍ଥାନୀୟ ବୈଦ୍ୟ, କବିରାଜମାନଙ୍କୁ ନିର୍ଦ୍ଦେଶ ଦିଆଯାଇଛି - ଶିଳ୍ପୀର ପରିବାରର ସ୍ୱାସ୍ଥ୍ୟ ସେବା ଦେଖିବା ପାଇଁ।

ସବୁ ବ୍ୟବସ୍ଥା ଖଂଜା ଯାଇଥିଲେ ହେଁ - ଗୋଟିଏ ନିଷ୍ଠୁର ନିର୍ଦ୍ଦେଶ ଥିଲା, କେହି ଶିଳ୍ପୀ ମନ୍ଦିର ନିର୍ମାଣ କାର୍ଯ୍ୟ ସଂପୂର୍ଣ୍ଣ ନହେଲା ପର୍ଯ୍ୟନ୍ତ କୋଣାର୍କ ସୂର୍ଯ୍ୟମନ୍ଦିରର ନିର୍ମାଣ

କ୍ଷେତ୍ରରୁ ଯାଇପାରିବେ ନାହିଁ। ଏଥିପାଇଁ ଦୈନିକ ହାଜିରା ନେବାର ମଧ୍ୟ ବ୍ୟବସ୍ଥା କରାଯାଇଥିଲା। କେହି କାର୍ଯ୍ୟକ୍ଷେତ୍ରରେ ଅନୁପସ୍ଥିତ ଥିଲେ - ତାଙ୍କୁ ଖୋଜି ଦଣ୍ଡ ଦିଆଯାଉଥିଲା। ତଥାପି ରାଜଦଣ୍ଡକୁ ଖାତିର ନକରି, କେହି କେହି ଶିଳ୍ପୀ ପରିଶ୍ରମ କରି ଗୋପନରେ ରାତ୍ରିରେ ଯାଇ ପରିବାର ବା ପ୍ରେୟସୀ ସହିତ ମିଳିତ ହୋଇ ପ୍ରଭାତ ପୂର୍ବରୁ ଫେରି ଆସୁଥିଲେ କର୍ମକ୍ଷେତ୍ରକୁ। ଖବର ଯେତେବେଳେ ଆସି ପହଞ୍ଚେ କୌଣସି ଶିଳ୍ପୀ ପରିବାରରୁ ସେହି ଶିଳ୍ପୀ ଜଣକ ସହିତ, ତାର ସାଥୀ ଶିଳ୍ପୀମାନେ ସୁଖ ଦୁଃଖରେ ଭାଗ ନିଅନ୍ତି। କାହାର ପୁତ୍ର କନ୍ୟା ଜନ୍ମ ସମ୍ବାଦ ଆସିଲେ, ସେହିଠାରେ ସେମାନେ ଆନନ୍ଦ ମନାଉ ଥାନ୍ତି। ଏବେ ସେ ଖବର ଆଉ ଆସୁନାହିଁ। ସେମାନେ ସମସ୍ତେ ବ୍ରହ୍ମଚାରୀ ସାଜିଛନ୍ତି। ରାଜ୍ୟର ରାଜା ଯେମିତି ତାର ପ୍ରଜା ସେମିତି। ରାଜାର ସଂକଳ୍ପ ସେମାନଙ୍କର ସଂକଳ୍ପ।

କାହାର ପିତୃ-ମାତୃ ବିୟୋଗ ବା କୌଣସି ଆତ୍ମୀୟର ବିୟୋଗ ଖବର ଆସିଲେ ତାଙ୍କୁ ହିଁ କେବଳ ଗୃହ ଗମନର ଅନୁମତି ମିଳୁଥିଲା। ସେ ପୁଣି ସେହି କେତେଦିନ - ଅନ୍ତ୍ୟେଷ୍ଟି କ୍ରିୟା ସମାପନ ପର୍ଯ୍ୟନ୍ତ। ଧୀରେ ଧୀରେ ଶିଳ୍ପୀମାନେ ଏବେ ସବୁ ଦିହସୁହା କରି ନେଲେଣି। ସେମାନଙ୍କ ମନରେ ଆଉ ସେତେ ଉଚ୍ଚାଟନ ନାହିଁ।

ବିଶୁ ଦିନ ଗଣି ଚାଲିଥିଲେ - ପଦ୍ମାଳୟାଙ୍କଠାରୁ କେଉଁଦିନ ଭୂମିଷ୍ଠ ହେବ ସନ୍ତାନଟିଏ। ଘର ଛାଡ଼ି ଆସିଲା ପରେ ମାସଟିଏ ଯାଇ ନାହିଁ - ବିଶୁ ମହାରଣା ଘରୁ ଖବର ଆସିଥିଲା - ପୁତ୍ର ସନ୍ତାନଟିଏ ଜନ୍ମ ହୋଇଛି। ପଦ୍ମାଳୟା ଓ ପୁତ୍ର ଉଭୟେ ସୁସ୍ଥ ଅଛନ୍ତି। ସେ ଦିନ ବିଶୁର ମନରେ ଆନନ୍ଦର ଉଚ୍ଛ୍ୱାସ ସହିତ ଉଚ୍ଚାଟନ ସୃଷ୍ଟି ହୋଇଥିଲା, ଯାଇ ପୁତ୍ର ମୁଖ ଦେଖିବା ପାଇଁ। ହେଲେ ଗୋଟିଏ ମୁହୂର୍ତ୍ତ ସେ ନିର୍ମାଣ କାର୍ଯ୍ୟ ଛାଡ଼ି ମନ୍ଦିର ବେଢ଼ାରୁ ଅନୁପସ୍ଥିତ ରହିପାରିବେ ନାହିଁ। କେଉଁଠି କେଉଁ କାରୁକଳାର ମୂର୍ତ୍ତିଟିର ପଥର ବସିବ - ସେହି ହିଁ କେବଳ ଜାଣନ୍ତି। ସେ ହିଁ ନିର୍ଣ୍ଣାୟକ।

ସାଥି ଶିଳ୍ପୀମାନେ ତାଙ୍କର ପୁତ୍ର ଲାଭର ଖବର ପାଇ ଯେତେବେଳେ ଆନନ୍ଦ ମନାଇବା ପାଇଁ ତାଙ୍କୁ ବ୍ୟସ୍ତ କରୁଥାନ୍ତି - ସେ ସେମାନଙ୍କୁ ସେଥିରୁ ନିବର୍ତ୍ତାଇବେ ବା କେମିତି ? ସଂଧ୍ୟାରେ ମନୋରଞ୍ଜନ-ଶିବିରରେ ସେହିମାନଙ୍କୁ ନେଇ ସେ ପ୍ରମତ୍ତ ହୋଇଥିଲେ ନୃତ୍ୟଗୀତରେ। ହେଲେ ବିଶ୍ରାମ କାଳରେ ରାତି ସାରା ତାଙ୍କ କ୍ଷୁଦ୍ର ପରିବାରର ଦୃଶ୍ୟ ତାଙ୍କ ଆଖି ଆଗରେ ଭାସି ଉଠୁଥିଲା। ବିଭୋର ବିଶୁ, ବେଣୁଧରଙ୍କୁ ଡାକୁଥିଲେ।

ସେହି ହିଁ କେବଳ ସାହା ହୋଇଥିବେ ପ୍ରାଣପ୍ରିୟା ପଦ୍ମାଳୟାଙ୍କୁ, ଆଉ ତାଙ୍କ କୋଳକୁ ଆସିଥିବା ନବଜାତ ପୁତ୍ରକୁ। ତାଙ୍କରୀ କୃପାରୁ ପଡୋଶୀ ଆତ୍ମୀୟ ସ୍ୱଜନମାନେ ସହାୟତା ପ୍ରଦାନ କରିଥିବେ ପଦ୍ମାଳୟକୁ। ପଡ଼ୋଶୀ ସୁଦର୍ଶନ ମହାରଣାର ପତ୍ନୀ ଇନ୍ଦୁମତୀ ପାଖେ ପାଖେ ଥିବେ ନିଶ୍ଚୟ। ପଦ୍ମାଳୟାଙ୍କ ବାପଘର ଗାଁରୁ ଶାଶୁଙ୍କୁ ତାଙ୍କ ଘରେ ଆସି ରହିବା ପାଇଁ ଖବର ପଠାଇଥିଲେ ସେ।

ବିଶୁ କହି ଆସିଥିଲେ ପ୍ରାଣପ୍ରିୟା ପଦ୍ମାଳୟାଙ୍କୁ; ପୁତ୍ର ହେଲେ ନାମ ଦେବ ଧର୍ମପଦ। ଆଉ କନ୍ୟାଟିଏ ହେଲେ ନାମ ଦେବ ସରସୀ।

ପୁତ୍ରଟିକୁ ବେଣୁଧର ନିରାପଦରେ ରଖନ୍ତୁ। ବେଣୁଧରଙ୍କ ପାଖରେ କେବଳ ସେହି କଥା ସେ ମନାସୁ ନଥିଲେ। ମନାସୁ ଥିଲେ ପଦ୍ମାଳୟାକୁ ମଧ ସୁସ୍ଥ ସବଳ କରି ରଖନ୍ତୁ ପୁତ୍ରଟିର ଯତ୍ନନେବା ପାଇଁ। ଏହି ପଦ୍ମାଳୟାଙ୍କ ମନରେ ସେହି ବେଣୁଧର ତ ଭରି ଦେଇଛନ୍ତି ଅମାପ ବିଶ୍ୱାସର ବଳ। ସେହି ବିଶ୍ୱାସ ନେଇ ସେ ଦିନ ବିଦାୟ ବେଳାରେ କହିଥିଲେ ପଦ୍ମାଳୟା, ବେଣୁଧର ଅଛନ୍ତି - ମୋର କିଛି ଅସୁବିଧା ହେବ ନାହିଁ। ଓଡ଼ିଆ ବୋହୂ, ହସ ହସ ମୁହଁରେ ବିଦେଶକୁ ସ୍ୱାମୀକୁ ପଠାଇ ଦିଏ ବାଣିଜ୍ୟ କରିବାକୁ; ସୈନିକ ସ୍ୱାମୀକୁ ପଠାଇ ଦିଏ ଯୁଦ୍ଧ କରିବାକୁ; ଶିଳ୍ପୀସ୍ୱାମୀକୁ ପଠାଇ ଦିଏ ମନ୍ଦିର ଗଢ଼ିବାକୁ। ତା ଓଠରେ ଉକୁଟାଇବାକୁ ଚେଷ୍ଟା କରେ ହସ। କିନ୍ତୁ ତା ଆଖିରେ ଢ଼ଳ ଢ଼ଳ କରେ ଲୁହ। କେତେବେଳେ ଅମାନିଆ ହୋଇବି ଗଣ୍ଡଦେଶକୁ ଭିଜାଇ ଟପ୍ ଟପ୍ କରି ଖସିପଡ଼େ ବକ୍ଷ ଉପରେ। ପଦ୍ମାଳୟାଙ୍କର ସେ ଦିନ ମଧ ସେହି ଦଶା ହୋଇଥିଲା।

ବିଶୁ ଆଖି ଆଗରେ ଭାସି ଉଠୁଛି - ପଦ୍ମାଳୟାଙ୍କ କୋଳରେ ଫୁଲଟି ପରି ପୁତ୍ର ସନ୍ତାନ ଧରମାର ଦୃଶ୍ୟ। ତହିଁ ପରଦିନ ସେ ନିହାଣ ମୁଗୁର ନେଇ ପଥର ଗାତ୍ରରେ ଗଢ଼ି ବସିଛନ୍ତି ସୁନ୍ଦରୀ ଯୌବନବତୀ ମାତା କାଖରେ ସୁକୋମଳ ଶିଶୁ ପୁତ୍ରଟିର ଛବିଳ ଦୃଶ୍ୟ। ଏପରି ମମତାମୟୀ ମାଆର ଉନ୍ମୁକ୍ତ ବକ୍ଷରୁ ଶିଶୁଟିଏ ପାନ କରୁଛି ଅମୃତ।

ସେହି ପଥରର ନାରୀ ମୂର୍ତ୍ତି ଭିତରେ ସେ ଦେଖୁଛନ୍ତି ପଦ୍ମାଳୟା ଓ ଧର୍ମପଦକୁ। ସାଥୀ ଶିଳ୍ପୀମାନେ ମୁଗ୍ଧ ହୋଇ ଯାଇଛନ୍ତି ଏପରି ନିର୍ମାଣ କୌଶଳକୁ ଦେଖି।

x x x x

ବିଶୁ ଚାଲିଯିବାର କିଛିଦିନ ପରେ ଆସିଥିଲା ସେହି ଦିନଟି। ଗର୍ଭ-ଯନ୍ତ୍ରଣାରେ ଅସ୍ଥିର ହୋଇ ପଡୁଥିଲେ ପଦ୍ମାଳୟା। ଇନ୍ଦୁମତୀ ଆସି ତାଙ୍କର ପାଖେ ପାଖେ ଥିଲେ ଯତ୍ନ

ନେବା ପାଇଁ। ଗାଁର ଧାଇମା, ମଧୁମା'ଙ୍କୁ ଖବର ଦେଇଥିଲେ ଆସିବା ପାଇଁ। ମଧୁ ମାଆ ଆସି ପହଂଚିଲା ପରେ ପିଣ୍ଡାରୁ ପଦ୍ମାଳୟାଙ୍କୁ ନେଇ ଯାଇଥିଲେ ଘର ଭିତରକୁ। ପିଣ୍ଡାରୁ ଘର ଭିତରକୁ ଯିବା ପୂର୍ବରୁ ଯନ୍ତ୍ରଣା କାତରା ପଦ୍ମାଳୟା ବେଣୁଧରଙ୍କ ମନ୍ଦିର ପିଣ୍ଡାକୁ ଯାଇ ଭୂମିଷ୍ଠ ହୋଇ ଭକ୍ତିରେ ପ୍ରଣାମ ଜଣାଇଲେ ବେଣୁଧରଙ୍କୁ। ଗାଁର କିଛି ଝିଅ, ବୋହୂ ବିଶୁ ମହାରଣାଙ୍କ ପିଣ୍ଡାରେ ଆସି ରୁଣ୍ଡ ହୋଇଛନ୍ତି ଜାଣିବା ପାଇଁ - ପୁଅ ହେବ ନା ଝିଅ ହେବ। ସମସ୍ତଙ୍କ ମନରେ ଉତ୍ସୁକ୍ୟ।

କିଛି ସମୟ ପରେ ଇନ୍ଦୁମତୀ ପିଣ୍ଡାକୁ ବାହାରି ଆସି ଖବର ଦେଲେ ପୁଅଟିଏ ଜନ୍ମ ହୋଇଛି। ଇନ୍ଦୁମତୀ ଶଙ୍ଖ ଫୁଙ୍କିଲେ, ଉପସ୍ଥିତ ଥିବା କିଛି ଝିଅ ବୋହୂ ଉଲୁ ଧ୍ୱନି ଦେଲେ। ଶଙ୍ଖ ଶବ୍ଦ ଓ ଉଲୁ ଧ୍ୱନି ଶବ୍ଦ ଶୁଣି ଗାଁ ଯାକର ଲୋକେ ଜାଣିଗଲେ ବିଶୁଙ୍କ ଘରେ ପୁଅଟିଏ ଜନ୍ମ ହୋଇଛି। ସାରା ଗାଆଁଟାରେ ଆନନ୍ଦର ଛାୟା ଖେଳିଗଲା। ବିଶୁ ଯେ ଗାଁର ଗୌରବ। ତାର ପୁଣି ପୁଅଟିଏ ହୋଇଛି - କେତେ ଆନନ୍ଦର କଥା। ଦୁଇ ଦିନ ପରେ ନାହକ ଡ଼କା ହୋଇ ଆସିଲେ ଗଣନା କରିବା ପାଇଁ - ପୁତ୍ରର ଜନ୍ମ କୁଣ୍ଡଳି ତିଆରି କରିବା ପାଇଁ। ଗାଁର କିଛି ବୟସ୍କ ବୃଦ୍ଧ ଲୋକଙ୍କ ଉପସ୍ଥିତିରେ ନାହକ ଗାର କାଟି ଆନୁମାନିକ ସମୟକୁ ବିଚାରକୁ ନେଇ ତିଥିବାର, ନକ୍ଷତ୍ରାନୁସାରେ କହିଲେ ପୁଅ ଦେବଗଣରେ ଜନ୍ମ ହୋଇଛି। ପୁଅ ଶିଳ୍ପ ଶାସ୍ତ୍ରରେ ବିଶ୍ୱକର୍ମା ସଦୃଶ ହେବ। ତାର ସୁନାମ କେବଳ ଗାଁ ଭୂଇଁରେ ରଟିବ ନାହିଁ - ରଟିବ ସାରା ଭୂଖଣ୍ଡରେ - ସମଗ୍ର ବିଶ୍ୱରେ। ସମସ୍ତେ ଆନନ୍ଦରେ ଉଦ୍‌ବେଳିତ ହେଉଥିବା ବେଳେ, ମୃଦୁ ସ୍ୱରରେ ନାହକକହିଲେ - ପୁଅ କିନ୍ତୁ ହେବ ଅଳ୍ପ ଆୟୁଷୀ। ଏ କଥା ଅବଶ୍ୟ ସମସ୍ତେ ଶୁଣି ପାରିଲେ ନାହିଁ। ଏକୋଇଶା ଦିନ ପଦ୍ମାଳୟାଙ୍କ ତରଫରୁ ଇନ୍ଦୁମତୀ ଗାଁରେ ଆବାଳ ବୃଦ୍ଧ ସମସ୍ତଙ୍କୁ ନେଇ ଆନନ୍ଦ ମନାଇଲେ। ବେଣୁଧରଙ୍କ ପାଖରେ ମହା ଧୂମ୍‌ଧାମ୍‌ରେ ପୂଜା ଦେଲେ ଏବଂ ସମସ୍ତଙ୍କୁ ବେଣୁଧରଙ୍କ ଭୋଗ ପ୍ରସାଦରେ ଆପ୍ୟାୟିତ କଲେ। ପୁଅର ପିତା ବିଶୁଙ୍କର କହିଥିବା ଅନୁସାରେ ପଦ୍ମାଳୟା ପୁଅର ନାମ ଦେଲେ ଧର୍ମପଦ। ପତି ପତ୍ନୀଙ୍କ ଧର୍ମ ଅର୍ଜନରୁ ଏ ପୁତ୍ରର ଜନ୍ମ।

ଘରେ ପଦ୍ମାଳୟା ଯେତେବେଳେ ପୁତ୍ରକୁ କୋଳରେ ନେଇ ବସୁଛନ୍ତି - ସେତେବେଳେ ଇନ୍ଦୁମତୀ ପାଖରେ ବସି କହୁଛନ୍ତି, ମିତ, ଦେଖୁଛ କେମିତି ପୁଅ ତୁମର ଜୁଳୁଜୁଳୁ କରି ଚାହୁଁଛି। ଆଖି ଯୋଡିକ ଦେଖିବାକୁ ଯେମିତି ତା ବାପାର ଆଖିପରି।

ପଦ୍ମାଳୟା କହୁଛନ୍ତି - ଆଉ ତାର ନାକ ?

ଇନ୍ଦୁମତୀ କହିଲେ ଆରେ ନାକଟା ବି ତ ତା ବାପର ନାକ ପରି। ବାଳ ବି ତ ବାପାର ବାଳ ପରି କୁଞ୍ଚୁକୁଞ୍ଚିଆ। ମୁହଁଟା, ଅବୟବ ଠିକ୍ ତା ବାପାର ମୁହଁପରି। ପଦ୍ମାଳୟା କହିଲେ, ମୋର କିଛି ତା ପାଖରେ ନାହିଁ? ନାହିଁ କେମିତି – ତୁମରି ପରି ସୁନ୍ଦର ହେବ ପୁଅଟି। ତାର ଓଠ ତୁମରି ଓଠ ପରି। ହସି ହସି ଇନ୍ଦୁମତୀ ପୁଣି କହିଲେ, ମୋର ଯଦି ଝିଅଟିଏ ଜନ୍ମ ହେବ ନା, ସେ ତୁମରି ଏ ପୁଅ ପ୍ରେମରେ ନିଶ୍ଚୟ ଛନ୍ଦି ହୋଇଯିବ। ପଦ୍ମାଳୟା କହିଲେ, ତୁମ ତୁଣ୍ଡ ସତ ହେଉ ମିତ। ଆମ ଦୁଇଟି ପରିବାର ଆମେ ବଂଚିଥିବା ତକେ ଏମିତି ବାନ୍ଧି ହୋଇ ରହୁ।

ଆମେ ଦୁଇଜଣ ପରସ୍ପର ସହିତ ବାନ୍ଧି ହୋଇ ରହିଛୁ ବୋଲି, ସେମାନେ ଦୁହେଁ ଚାଲିଗଲେ ମନ୍ଦିର ଗଢ଼ିବାକୁ। ଆମେ ଦୁଇ ପ୍ରାଣୀ ରହିଗଲୁ....ଅଟକି ଗଲେ ଇନ୍ଦୁମତୀ। ତାଙ୍କରି ପିଲା ପାଳିବା ପାଇଁ, କହିଲେ ପଦ୍ମାଳୟା।

ଦୁହେଁ ହସରେ ଫାଟି ପଡୁଥିଲେ।



## (୧୩)

ସୂର୍ଯ୍ୟଦେବ ଯେବେ ଅସ୍ତାଚଳର ଦିଗବଳୟର ତଳେ ଲୁଚି ଯାଆନ୍ତି, ଯେବେ ସଂଜ ନଇଁ ଆସେ, ସେ ଦିନର ନିର୍ମାଣ କାର୍ଯ୍ୟ ବନ୍ଦ ହୋଇଯାଏ। ଶିଳ୍ପୀମାନଙ୍କର ନିହାଣ ମୁଗୁରର ଠକ୍ ଠକ୍ ଶବ୍ଦ ସଂଧ୍ୟାଳତିର ଶଙ୍ଖ ଘଣ୍ଟା ପୂର୍ବରୁ ହଜି ଯାଇଥାଏ। ଶିଳ୍ପୀ ବୃନ୍ଦ ନିଜର ଘର୍ମାକ୍ତ ଶରୀରକୁ ସଂଧ୍ୟାର ସୁଶୀତଳ ସମୀରଣରେ ଶୀତଳ କରି ନିଅନ୍ତି। ମନକୁ ସ୍ନିଗ୍ଧ କରିବା ପାଇଁ ସେମାନେ ଚାଲନ୍ତି ଅସ୍ଥାୟୀ ନାଟ୍ୟ ମନ୍ଦିରକୁ। ଯେଉଁଠି ନୃତ୍ୟଗୁରୁ ସୌମ୍ୟଶ୍ରୀଦତ୍ତ ସମେତ ସୁଧନ୍ୟା, ଭାନୁମତୀ, ସ୍ୱର୍ଣ୍ଣମୟୀ ଆଦି ବିଭିନ୍ନ ମନ୍ଦିର ଚତ୍ୱରରୁ ବଛା ବଛା ଆସିଥିବା ସୁନ୍ଦରୀ ଦେବଦାସୀବୃନ୍ଦ ଆସିଥାନ୍ତି। ବିଭିନ୍ନ ଭଙ୍ଗୀରେ ସେମାନେ ପରିବେଷଣ କରନ୍ତି ଓଡ଼ଶୀ-ଦେବଦାସୀ ନୃତ୍ୟ। ବିଭିନ୍ନ ପାଇକ ଆଖଡ଼ାରୁ ଆସନ୍ତି ପାଇକ ନୃତ୍ୟର ଶିଳ୍ପୀମାନେ ରଘୁବୀର, ବଳବନ୍ତ, ସୁମନ୍ତ ଆଦି। ଆଉ ମଧ ଆସନ୍ତି କବି, ଗାୟକ ଗାୟିକା ବୃନ୍ଦ।

ରାତ୍ରିଭୋଜନ ପୂର୍ବରୁ ଶିଳ୍ପୀମାନେ ମଜି ଯାଆନ୍ତି - ନିଜକୁ ହଜାଇ ଦେଇ ନୃତ୍ୟ ଓ ସଙ୍ଗୀତ ଉପଭୋଗରେ। ସେହି ରାଜ୍ୟ ହେଉଛି - ନିଜକୁ ହଜାଇଦେବାର ରାଜ୍ୟ - ଯେଉଁଠି ମାନସିକ ଦୁଃଖ ଯାତନା ହଜିଯାଏ। ସୁଖ ଶାନ୍ତିର ବାରିଧାରା ହୃଦୟ କନ୍ଦରକୁ ଆପ୍ଳୁତ କରେ। ବିରହ ବେଦନାରେ ମଥିତ ହୃଦୟଗୁଡ଼ିକ ନିଦ୍ରାଦେବୀଙ୍କ ଅମୃତ ସ୍ପର୍ଶରେ ମହୌଷଧୀ ପ୍ରଲେପରେ ହଜିଯାଏ। ବେଳେବେଳେ ମନ୍ତ୍ରୀ, ପାରିଷଦ ବର୍ଗ ମଧ ଆସନ୍ତି ଏହି ମନୋରଂଜନ କାର୍ଯ୍ୟକ୍ରମକୁ। ଯେଉଁଦିନ ସୌମ୍ୟ ଶ୍ରୀଦତ୍ତ ଆସନ୍ତି, ସେଦିନ ବାଧ ଛାତ୍ରଭଳି ଶିଳ୍ପୀବୃନ୍ଦ ବସି ରହି ଦର୍ଶନ କରନ୍ତି ନୃତ୍ୟକଳା। ଶୁଣନ୍ତି ତାଙ୍କ ମୁଖରୁ ନୃତ୍ୟ ଶାସ୍ତ୍ରର ବାଣୀ। ନିଜ ହୃଦୟପଟରେ ଟିପି ରଖନ୍ତି - ଦରକାର ବେଳେ କାର୍ଯ୍ୟରେ ଆସିବ। ମନ ତାଙ୍କର ବତାଇ ଦେବ ନିହାଣ ମୁନକୁ, କେଉଁ ନୃତ୍ୟର ଭଙ୍ଗୀ ସେ ଖୋଦନ କରିବାକୁ ଯାଉଛି।

ନୃତ୍ୟରେ ପ୍ରାଣ ହେଉଛି ଛନ୍ଦ। ଏବଂ ଛନ୍ଦର ପ୍ରତ୍ୟେକ ଅଂଶ ହେଉଛି ଭଙ୍ଗୀ। ନୃତ୍ୟ ଶାସ୍ତ୍ର ଉପରେ ବକ୍ତବ୍ୟକୁ ତନ୍ମୟ ହୋଇ ଶୁଣନ୍ତି ଶିଳ୍ପୀବୃନ୍ଦ। ଶୁଣନ୍ତି ତାଙ୍କ କଣ୍ଠରୁ ତାଳ, ମାନ ଓ ଲୟରବାଖ୍ୟା। ଭାବ ପ୍ରକାଶର ମାଧ୍ୟମ ହେଉଛି ନୃତ୍ୟ। ଭାବଥାଏ. ଆଖିରେ, ଓଠରେ, ପାଦରେ ବାହୁରେ। ଥାଏ ଅଙ୍ଗର ପ୍ରତିଟି ଅଂଶରେ। ସଂଚାଳିତ ହୁଅନ୍ତି ସେମାନେ ବାଦ୍ୟର ତାଳେ ତାଳେ, ଅନୁସଣ କରନ୍ତି ବାଦ୍ୟର ତାଳ, ମାନ ଓ ଲୟକୁ। ବାଦ୍ୟ ଶରୀରର ସମସ୍ତ ଅବୟବରେ ଭଙ୍ଗୀ ସୃଷ୍ଟିରେ କରେ ସହାୟତା। ଅବଶ୍ୟ ବିଶୁ ମହାରଣା ନୃତ୍ୟଶାସ୍ତ୍ରରେ ପିଲାକାଳରୁ ପାରଦର୍ଶିତା ଲାଭ କରିଥିଲେ। ପୁରୁଷାନୁକ୍ରମିକ ପାରମ୍ପରିକ ଭାବରେ ତାଙ୍କ ପରିବାର ଶିଳ୍ପକଳା ଓ ନୃତ୍ୟ କଳାରେ ଥିଲେ ବିଷାରଦ।

ଏକଦା ନୃତ୍ୟଗୁରୁଙ୍କୁ ସେ ପଚାରିଥିଲେ, ମହାଶୟ ନାଟ୍ୟ ମନ୍ଦିର ଗାତ୍ରରେ କେବଳ ଓଡ଼ିଶୀ ନୃତ୍ୟରତ ମୂର୍ତ୍ତିଗୁଡ଼ିକୁ ଥୋଇଲେ କେମିତି ହେବ? ମୁଁ ଭାବୁଛି ଏଥିରେ ଅର୍ଚ୍ଚନା, ଅଳସା, ଅଭିମାନ, ମର୍ଦ୍ଦନା, ପାର୍ଶ୍ୱମର୍ଦ୍ଦନା ମାନଙ୍କର ଭଙ୍ଗୀ ରୂପ ପାଇଲେ ସୁନ୍ଦର ହେବ। ସୌମ୍ୟ ଶ୍ରୀଦତ୍ତ କହିଲେ - ତୁମର ପରିକଳ୍ପନା ସୁନ୍ଦର। ତୁମେ ତ ନୃତ୍ୟ ଶାସ୍ତ୍ର ଉପରେ ପାରଦର୍ଶିତା ଲାଭ କରିଛ। ହେଲେ, ସେହି ଭଂଗୀଗୁଡ଼ିକ ସହିତ ସେମାନଙ୍କର ବାଦ୍ୟଯନ୍ତ୍ରଗୁଡ଼ିକ ଦେବାରେ ଭୁଲି ନଯାଅ ଶିଳ୍ପୀ ଶ୍ରେଷ୍ଠ। ବିଶୁ ମହାରଣା କହିଲେ ମୋର ସହଶିଳ୍ପୀ ବୃନ୍ଦ ଏ ଦିଗରେ ମଧ୍ୟ ପାରଦର୍ଶିତା ଲାଭ କରିଛନ୍ତି। ସେମାନେ ଜାଣନ୍ତି ଓଡ଼ିଶୀ ନୃତ୍ୟର ବାଦ୍ୟଯନ୍ତ ଗୁଡ଼ିକ କ'ଣ ହୋଇପାରେ। ମୃଦଙ୍ଗ ବା ମର୍ଦ୍ଦଳ, ବଂଶୀ ଓ ତାଳ। କେଉଁଠି କେଉଁଠି ବୀଣା, କାହାଳୀ, ଝାଂଜ ଓ କରତାଳ ମଧ୍ୟ ରହିବ। ଏହା ସହିତ ଫୁଟିବ ସେମାନଙ୍କର ବିଭିନ୍ନ ଭାବପ୍ରକାଶର ଭଂଗୀ। ହସ୍ତ, ପଦ, ଅଙ୍ଗ ପ୍ରତ୍ୟଙ୍ଗର ବିନ୍ୟାସର ଶୈଳୀ ମଧ୍ୟ ରୂପ ପାଇବ। ନୃତ୍ୟାଚାର୍ଯ୍ୟ ସୌମ୍ୟ ଶ୍ରୀଦତ୍ତ କହିଲେ, ଏଇଥିପାଇଁ ତ ତୁମେ ଶିଳ୍ପୀ-ଶ୍ରେଷ୍ଠ-ବିଶୁ-ମହାରଣା ଭାବରେ ପରିଚିତ। ବିଶୁ କହିଲେ, ଆଚାର୍ଯ୍ୟ ମହାଶୟ, ଆପଣଙ୍କ ଆଶୀର୍ବାଦ ହେଲେ ମନ୍ଦିର ଗାତ୍ରରେ ଉତ୍ତୀର୍ଣ୍ଣ ହେବ ଓଡ଼ିଶାର ପାରମ୍ପାରିକ ଲୋକନୃତ୍ୟ - ଯେଉଁଠି ପାଇକମାନେ ଧାଡ଼ିବାନ୍ଧି ଖଣ୍ଡା ଓ ଢ଼ାଲ ସହ ଯୁଦ୍ଧ-ନୃତ୍ୟ କରୁଥିବେ। ଧାଡ଼ିବାନ୍ଧି ପାଇକମାନେ କରୁଥିବେ ଢ଼ାଲ ତରବାରୀ ଧରି ପାଇକ ନୃତ୍ୟ। ନୃତ୍ୟ କରୁଥିବେ, ପୁରୁଷ ସ୍ତ୍ରୀ, ଘୁମୁରା ବଜାଇ, ବାଦ୍ୟର ତାଳେ ତାଳେ। କୋଣାର୍କ ହେବ ଉତ୍କଳୀୟ ନୃତ୍ୟ, ସଂଗୀତ ପରମ୍ପରାର ଯାଦୁକାରୀ ଏକ୍ସୁଡ଼ିଶାଳ। ବାଃ ବାଃ। ଶିଳ୍ପୀ ଶ୍ରେଷ୍ଠ। ମୁଁ ଶୁଣିଛି ଉତ୍କଳୀୟ ନାରୀମାନେ ବୀରା ରମଣୀ। ରାଣୀ କାରୁବାକୀ କେମିତି ହସ୍ତରେ କରବାଳ ଧରି ଯୁଦ୍ଧ କ୍ଷେତ୍ରରେ ସମ୍ରାଟ ଅଶୋକଙ୍କୁ ଯୁଦ୍ଧରେ ବିଚଳିତ ବିବ୍ରତ କରିଦେଇଥିଲେ। ରମଣୀ ମାନଙ୍କର

ଅସ୍ତ୍ରଚାଳନା ନୃତ୍ୟର ଦୃଶ୍ୟ ମଧ୍ୟ ଦେଖିବାକୁ ମୁଁ ଚାହୁଁଛି ଶିଳ୍ପୀ ଶ୍ରେଷ୍ଠ। ବିଶୁ କହିଲେ, ସେଥିରେ ମଧ୍ୟ ତ୍ରୁଟି ହେବ ନାହିଁ ନାଟ୍ୟାଚାର୍ଯ୍ୟ ମହାଶୟ। ପୁରାଣରେ ଶକ୍ତି ସ୍ୱରୂପିଣୀ ମାକାଳୀ, ଭବାନୀ ଅସ୍ତ୍ରଧାରଣ କରି ଯୁଦ୍ଧ କରୁଥିବାର ବର୍ଣ୍ଣନା ଅଛି। ଉତ୍କଳୀୟ ନାରୀମାନେ ସେ ଦିଗରେ ପଛରେ ନାହାନ୍ତି। ନୃତ୍ୟାଚାର୍ଯ୍ୟ ମହାଶୟ ମୁଁ ଆପଣଙ୍କୁ କଥା ଦେଉଛି, ଏ ମନ୍ଦିର ଗାତ୍ରରେ କେବଳ ଯେ ଉତ୍କଳୀୟ ନୃତ୍ୟ ଶାସ୍ତ୍ରର ପରମ୍ପରା ଶୋଭା ପାଇବ, ତାହା ନୁହେଁ ଏ ମନ୍ଦିର ଗାତ୍ରରେ ଶୋଭା ପାଇବ ଉତ୍କଳୀୟ ଜନ ଜୀବନର ଚିତ୍ର। କୃଷି, ବାଣିଜ୍ୟ, ବିପଣୀ, ଯୁଦ୍ଧ, ବିଗ୍ରହସହ, କଳା, ସାହିତ୍ୟ, ସଂସ୍କୃତି। ବିଶ୍ୱବାସୀ ସ୍ତମ୍ଭିତ ହେବେ। ଗୋଟିଏ ମନ୍ଦିର ଗାତ୍ରରେ ଖୋଦିତ ଗୋଟିଏ ଜାତିର ଜନ ଜୀବନକୁ ଦେଖି ପରେ ନୃତ୍ୟାଚାର୍ଯ୍ୟ କହିଲେ ଶିଳ୍ପୀ ଶ୍ରେଷ୍ଠ ତୁମର ସାଧନାକୁ ମୁଁ କେବଳ ତାରିଫ କରୁନାହିଁ। ଜଗନ୍ନାଥଙ୍କ ଠାରେ ମଧ୍ୟ ଜଣାଣ କରୁଛି, ତୁମକୁ ଦୀର୍ଘାୟୁ କରନ୍ତୁ। ତୁମର ଶିଳ୍ପକଳା ଅମରତ୍ୱ ଲାଭ କରୁ।

ସେ ଦିନ ମଧ୍ୟ ନୃତ୍ୟାଚାର୍ଯ୍ୟ ବିସ୍ମିତ ହୋଇଥିଲେ। ନୀଳ ମହାରଣା, କମଳ ମହାରଣା, ଅନନ୍ତ ମହାରଣାଙ୍କର ନିର୍ମିତ କଳାକୃତିକୁ ଦେଖି, ସେମାନଙ୍କ ସଂଳାପ ଭିତରେ ଶିଳ୍ପ ଶାସ୍ତ୍ରରେ ଗଭୀର ଜ୍ଞାନ ଲକ୍ଷ୍ୟ କରି।

ଶିଳ୍ପଶାସ୍ତ୍ର ହେଉଛି, ସମସ୍ତ ଶାସ୍ତ୍ରର ସମାହାର। ତାହାରି ଭିତରେ ନୃତ୍ୟଶାସ୍ତ୍ର, ସଙ୍ଗୀତଶାସ୍ତ୍ର, କଳା ଓ ଭାସ୍କର୍ଯ୍ୟର ବିଦ୍ୟା, ସାହିତ୍ୟ, ସଂସ୍କୃତି, ପରମ୍ପରା, ପ୍ରତିଫଳିତ ହୁଏ।

ବିଶୁ ମହାରଣାଙ୍କ ନେତୃତ୍ୱରେ ଉତ୍କଳର ବୟସ୍କ, ଯୁବକ ଅଭିଜ୍ଞ ଶିଳ୍ପୀ ବୃନ୍ଦ କୋଣାର୍କ ନିର୍ମାଣ କାର୍ଯ୍ୟରେ ନିମଗ୍ନ। ଭାବିଛନ୍ତି ନୃତ୍ୟାଚାର୍ଯ୍ୟ –ଏମିତି ପ୍ରତିଭାଦୀପ୍ତ ଜଣେ ଅବିବାହିତ ଯୁବ ଶିଳ୍ପୀଙ୍କ ଭିତରୁ କୌଣସି ଜଣକଙ୍କ ହାତରେ ତାଙ୍କର ଏକମାତ୍ର କନ୍ୟା ଶିଳ୍ପାକୁ ସମର୍ପି ଦେବେ ସେ।

ଶିଳ୍ପା ହେଉଛି ଅପରୂପା ସୁନ୍ଦରୀ କେବଳ ନୁହେଁ - ଭୁବନମୋହିନୀ ରୂପ ସହିତ ତାର ନୃତ୍ୟର ଛନ୍ଦ ପ୍ରତ୍ୟେକ ଶିଳ୍ପୀ ପ୍ରାଣରେ ସ୍ପନ୍ଦନ ସୃଷ୍ଟି କରେ। ଯେତେ ପ୍ରକାର ମୁଦ୍ରା, ଯେତେ ପ୍ରକାର ଭଙ୍ଗୀ ସବୁ ତାର ନୃତ୍ୟର ଛନ୍ଦେ ଛନ୍ଦେ ଫୁଟି ଉଠେ। ଯେବେ ରାଜାରାଣୀ ଆସନ୍ତି ଶିଳ୍ପୀମାନଙ୍କ ପାଇଁ ଉଦ୍ଦିଷ୍ଟ ଏହି ନୃତ୍ୟଶାଳାକୁ, ଶିଳ୍ପା ଆସେ ନୃତ୍ୟ ପରିବେଷଣ କରିବାକୁ ପିତାଙ୍କ ସହିତ। ମନୋରଂଜନ କାର୍ଯ୍ୟକ୍ରମରେ ଯୋଗ ଦେଇ ନୃତ୍ୟ ପ୍ରଦର୍ଶନ

କରେ। ଆଖି ଝଲସି ଉଠେ ଶିଳ୍ପୀମାନଙ୍କର। ତାର ଅପୂର୍ବ ଅବୟବର ଭଙ୍ଗିମା ଶିଳ୍ପୀମାନଙ୍କ ଅନ୍ତରରେ ଲାଖି ହୋଇଯାଏ।

ମନ୍ଦିର ଗାତ୍ରରେ କେତେ ପ୍ରେୟସୀ ପଦ୍ମାଳୟା, କେତ ଇନ୍ଦୁମତୀ, କେତେ ଶିଳ୍ପାଙ୍କର ଛବି ଫୁଟି ଉଠେ। ଫୁଟି ଉଠେ ପୂର୍ଣ୍ଣିମା ରାତ୍ରିରେ ପୁଷ୍କରିଣୀ ଭିତରକୁ ଲମ୍ଫ ପ୍ରଦାନ କରିବାକୁ ଯାଉଥିବା କମଳ ମହାରଣାର ବାଳିକା ବଂଧୁ ଚନ୍ଦ୍ରଭାଗାର। ଯାହାକୁ ମୃତ୍ୟୁ କବଳରୁ ଉଦ୍ଧାର କରିଥିଲେ ସ୍ୱୟଂ ମହାରାଜା ନରସିଂହ ଦେବ। କେତେକେତେ ଦେବକନ୍ୟା, ଅପ୍ସରା ଗନ୍ଧର୍ବୀ, ଯକ୍ଷକନ୍ୟା ଏହି ଉତ୍କଳରେ ଜନ୍ମ ଗ୍ରହଣ କରିଛନ୍ତି - ଯେଉଁମାନଙ୍କର ଚିତ୍ର ରୂପାୟିତ ହେବାକୁ ଯାଉଛି କୋଣାର୍କ ଗାତ୍ରରେ। ସୌନ୍ଦର୍ଯ୍ୟ ଶିରୋମଣି କାଶ୍ମୀର ରାଜଜେମା ଅନୁସୂୟା ନିଜକୁ ନ୍ୟୁନ ମନେ କରନ୍ତି, ଉତ୍କଳୀୟ ଲଳନାର ସୌନ୍ଦର୍ଯ୍ୟ ପାଖରେ। ସେ ମଧ୍ୟ ଆଶ୍ଚର୍ଯ୍ୟ ହୁଅନ୍ତି, ଏ ଉର୍ବରା ଉତ୍କଳ ଭୂମି କେତେ କେତେ ପ୍ରତିଭାଧରଙ୍କୁ ଜନ୍ମ ଦେଇଥିବାର ଦେଖି। ଏହି ମାଟିରେ ହୀରା, ନୀଳା, ମୋତି, ମାଣିକ୍ୟ ସବୁ ଫଳେ। ଧନ୍ୟ ଏ ଉତ୍କଳ ଜନନୀ।

ନୃତ୍ୟରତା ନାରୀ ମୂର୍ତ୍ତି ନିର୍ମାଣ ବେଳେ ନିର୍ବାଚିତା ହୁଅନ୍ତି ଅପୂର୍ବ ସୁନ୍ଦରୀ ଦେବଦାସୀ ମାନେ। ପ୍ରତିରୂପ ଦେବା ପାଇଁ ଆସନ୍ତି ଆବଶ୍ୟକ ସ୍ଥଳେ ଶିଳ୍ପୀମାନଙ୍କ ସାମ୍ନାକୁ। ସେମାନେ ହେଲେ ଭଦ୍ରା, ଶ୍ୱେତା, ମୁଗ୍ଧା, ସୁବର୍ଣ୍ଣା ଆଦି। ସତେ ଅବା ସ୍ୱର୍ଗର ଅପ୍‌ସରାବୃନ୍ଦ ଆସିଛନ୍ତି କୋଣାର୍କ ମନ୍ଦିର ନିର୍ମାଣରେ ସହାୟତା ପ୍ରଦାନ କରିବା ପାଇଁ।

ନୃତ୍ୟଗୁରୁଙ୍କର ଏହି କନ୍ୟା ଶିଳ୍ପା ଆସେ ଛପି ଛପି ଯୁବଶିଳ୍ପୀ କମଳ ମହାରଣା ପାଖକୁ। କେବେ କମଳ ମହାରଣା ଆଖିରେ ଧରାଦିଏ, ଧରା ଦିଏ ତାର ନିହଣ ମୁନରେ। କମଳ ମହାରଣା ଖୋଦନ କରେ ଶିଳ୍ପାର ଅବିକଳ ମୂର୍ତ୍ତି। ସେହି ମୂର୍ତ୍ତିକୁ ଚାହିଁ ବେଳେ ତାର ଅନ୍ତର ଭିତରେ ସେ ବାଳିକା ବଧୂ ଚନ୍ଦ୍ରଭାଗାର ସୌନ୍ଦର୍ଯ୍ୟ ସହିତ ତୁଳନା କରେ ଶିଳ୍ପାର ସୌନ୍ଦର୍ଯ୍ୟକୁ। ଭାବି ପାରେନା ଦୁହିଁଙ୍କ ସୌନ୍ଦର୍ଯ୍ୟ ଭିତରେ ପାର୍ଥକ୍ୟ। ହେଲେ ଚନ୍ଦ୍ରଭାଗା ତାର ଅଧିକାର ଭିତରେ ଶିଳ୍ପା କିନ୍ତୁ ଅଧିକାର ବାହାରେ। କମଳ ମହାରଣା ବଜାଇ ରଖିବାକୁ ଚାହେଁ ସେହି ଦୂରତା। ଯଦିବା ଶିଳ୍ପା ଚପଳ ଛନ୍ଦା। ତାର ପିତା ତଥା ନୃତ୍ୟ ଗୁରୁଙ୍କ କଠୋର ଶାସନର ଗଣ୍ଡିକୁ ସେ କେବେ ଉଲଙ୍ଘନ କରିବାକୁ ଚାହେଁ ନାହିଁ। ଯୌବନର ଆବେଗକୁ ସେ ଚାପି ରଖେ ନିଜ ଭିତରେ।





ଝାଞ୍ଜ ଓ ମୃଦଙ୍ଗ ବାଦ୍ୟରତା ନର୍ତ୍ତକୀ



ତରବାରୀ ହସ୍ତରେ ନୃତ୍ୟରତା ନାରୀ



ମନ୍ଦିର ପ୍ରବେଶ ଦ୍ୱାରର ସୂକ୍ଷ୍ମ କାରୁକାର୍ଯ୍ୟ



କୋଣାର୍କ ମନ୍ଦିରର ମୂଳ ପଉନ ଉପରେ ସୂକ୍ଷ୍ମ କାରୁକାର୍ଯ୍ୟ



କୋଣାର୍କ ଗାତ୍ରରେ ରାଜଦରବାରର ଦୃଶ୍ୟ



ମହାରାଜ ଲାଙ୍ଗୁଳା ନରସିଂହ ଦେବଙ୍କୁ ଆଫ୍ରିକୀୟ ବଣିକଙ୍କ
ଜିରାଫ ଉପହାରର ଦୃଶ୍ୟ



ଅଶ୍ୱ ବାହିନୀର ଦୃଶ୍ୟ



ଶିବିକା ବାହକ, ଗଜ, ଅଶ୍ୱ ଓ ପଦାତିକଙ୍କ ଶୋଭାଯାତ୍ରାର ଦୃଶ୍ୟ



ହାତୀ ଖେଦାର ଦୃଶ୍ୟ



ହାତୀ ଖେଦାର ଦୃଶ୍ୟ



ହାତୀ ଖେଦାର ଦୃଶ୍ୟ



ଭାରବାହକ ଓ ହସ୍ତୀର ଦୃଶ୍ୟ



ଭାରବାହକମାନଙ୍କର ଯାତ୍ରାର ଦୃଶ୍ୟ



ଶିବିକା ବାହକଙ୍କ ସହିତ ଅଶ୍ୱାରୋହୀ ସୈନିକଙ୍କ ଦୃଶ୍ୟ

# (୧୪)

ପିଲା ଦୁଇଟିର ଖେଳ କୌତୁକ, ବେଣୁଧରଙ୍କ ପିଣ୍ଡାରେ ବସି ଦେଖୁଥିଲେ ପଦ୍ମାଳୟା ଓ ଇନ୍ଦୁମତୀ। ସେ ପିଲା ଦୁଇଟି ଆଉ କେହି ନୁହଁନ୍ତି ବେଣୁଧରଙ୍କ ପ୍ରସାଦ ଜଣେ ପଦ୍ମାଳୟାଙ୍କ ପୁତ୍ର ଧର୍ମପଦ। ଆଉ ଜଣେ ଇନ୍ଦୁମତୀଙ୍କ କନ୍ୟା ସର। ସତେ ଯେମିତି ସ୍ୱର୍ଗର ଦେବ ଶିଶୁ ଦୁଇଟି ମର୍ତ୍ତ୍ୟକୁ ଓହ୍ଲାଇ ଆସିଛନ୍ତି। ଖେଳ ବୋଇଲେ ବାଲିରେ ଦେଉଳ ନିର୍ମାଣ। ଭାଙ୍ଗୁଛନ୍ତି ଗଢୁଛନ୍ତି। ବାଳିକାଟି ଯୋଗାଇ ଦେଉଛି ବାଲି। ବାଳକଟି ଗଢୁଛି ଦେଉଳ। ପାଖରେ ସେମାନେ ଥୋଇଛନ୍ତି ପତରରେ ଫୁଲ, ଆଉ ମାଆ ମାନେ ଦେଇଥିବା କଦଳୀ, କାକୁଡ଼ି ଓ ଚୁଡାଭୋଗ। ଭଙ୍ଗା ଗଢ଼ାର ଖେଳ ଭିତରେ ବାଲିର ଦେଉଳର ଚୂଡା ବସି ପାରୁନାହିଁ। ଚୂଡାଟି ଯେତେ ସଜାଡ଼ିଲେ ମଧ୍ୟ ତଳେ ପଡ଼ି ଭାଙ୍ଗି ଯାଉଛି।

ଇନ୍ଦୁମତୀ ଓ ପଦ୍ମାବତୀଙ୍କର ଦେହ ସହିଲା ନାହିଁ। ସେମାନେ ଓହ୍ଲାଇ ଗଲେ ବେଣୁଧରଙ୍କ ପିଣ୍ଡାରୁ। ପିଲା ଦୁଇଟିକୁ ଆଦର କରି କହିଲେ, ଏଇ ଦେଖ ଚୂଡାଟି ବସି ଯାଇଛି। ପଦ୍ମାବତୀ ନିଜ ହାତ ପାପୁଲିରେ ଓଦାବାଲିକୁ ଜୋରରେ ଚାପି ଚାପି ଦେଲେ। ଚୂଡା ବସିବାର ଉପର ଅଂଟିକୁ ଟିକିଏ ସମତଳ କରି ଦେଲେ। ଏବଂ ଚୂଡାଟି ଥୋଇ ଦେଲେ। ଦେଉଳର ଚୂଡା ମରିଗଲା। ଦେଉଳ ଦେହରେ ସ୍ୱସ୍ତିକ ଚିହ୍ନଟିଏ ଆଙ୍କି ଦେଲେ। ତାପରେ କହିଲେ, ଏଥରତୁମେ ଦୁହେଁ ପୂଜା କର। ଭୋଗ-ପତର, ଆଗରେ ଥୋଇ ଦେଲେ ଏବଂ ଫୁଲ ପତର ପାଖରେ ଥୋଇଦେଲେ। ଧରମା ଓ ସରମା ଦହେଁ ବସିଗଲେ ପାଖା ପାଖି ପୂଜା କରିବା ପାଇଁ।

ମାଙ୍କଠୁ ଶିଖିଥବା ମନ୍ତ୍ର ଉଚ୍ଚାରଣ କରି ଫୁଲ ଚୂଡା ଉପରେ, ଦେଉଳ ଦେହରେ ପକାଉ ଥାଏ ଧରମା। ମନ୍ତ୍ର ବୋଇଲେ ଏଇ କେଇପଦ, ହେ କୃଷ୍ଣ କରୁଣା ସିନ୍ଧୁ, ଦୀନବନ୍ଧୁ ଜଗତ୍‌ପତେ। ଶିଶୁ କଣ୍ଠର ମଧୁର ଉଚ୍ଚାରଣ ସେ ମନ୍ତ୍ରରେ ପୁରି ରହିଥିଲା।

ପଦ୍ମାଳୟା ଓ ଇନ୍ଦୁମତୀ ଦୁହେଁ ପୁଣି ପିଣ୍ଡାରେ ବସି ଅନେଇ ଦେଖୁଥିଲେ, ଶିଶୁ ଦୁଇଟିର ପୂଜାର୍ଚ୍ଚନା। ସେହିମାନେ ମନ୍ଦିର ଭିତରେ ବେଣୁଧରଙ୍କର ପୂଜାର୍ଚ୍ଚନା କରୁଥିଲା ବେଳେ, ପଦ୍ମାଳୟା କ'ଣ କ'ଣ କରୁଥିଲେ ।ତାହା ଯେମିତି ଅନୁକରଣ କରିଛନ୍ତି। ଫୁଲ ଚଢ଼ାଇ କେମିତି ଆଖି ବୁଜି ହାତ ଯୋଡି ବସି ରହିବାକୁ ହୁଏ - ସେମିତି ସେମାନେ କରିବାକୁ ଚେଷ୍ଟା କରୁଛନ୍ତି।

ପଦ୍ମାଳୟା ଓ ଇନ୍ଦୁମତୀ ଦୁଇଜଣ ଯାକ ଗୋଟିଏ ବାପ ଗାଁର ଝିଅ। ପିଲାକାଳରୁ ଖେଳସାଥୀ ଭାବରେ ଗାଁ ଚାଟଶାଳୀରେ ପଢ଼ିଲାବେଳେ ଦୁହେଁ ଦୁହିଁଙ୍କୁ ଆପଣାର ଭଉଣୀ ବୋଲି ଭାବି ଆସିଛନ୍ତି। ଦୁହେଁ ଦୁହିଁଙ୍କୁ ନ ଦେଖିଲେ ଦଣ୍ଡେ ରହିପାରନ୍ତି ନାହିଁ ସେମାନେ। ସେମାନଙ୍କ ହୃଦୟରେ ଡରଥାଏ - ବିବାହ ପରେ ସେମାନଙ୍କର ଏହି ଯୋଡ଼ିର କାଳେ ବିଚ୍ଛେଦ ଘଟିବ। ମାତ୍ର, ଭାଗ୍ୟକୁ ଏହି ଗାଁକୁ ଦୁହେଁ ବୋହୂ ହୋଇ ଆସିଛନ୍ତି ଏବଂ ପଡୋଶୀ ହୋଇ ପାରିଛନ୍ତି। ଯେତେବେଳେ ପଦ୍ମାଳୟା ଓ ଇନ୍ଦୁମତୀ ଧରମାର ଏକୋଇଶା ଦିନ ମନ୍ଦିରରେ ବେଣୁଧରଙ୍କଠାରେ ପୂଜା ଦେଉଥିଲେ, ସେତେବେଳେ ଇନ୍ଦୁମତୀ କହିଥିଲେ ସଙ୍ଗାତ - ତୁମର ପୁଅଟି କେଡ଼େ ସୁନ୍ଦର ହୋଇଛି। ମୋର ମଧ୍ୟ ଏପରି ସୁନ୍ଦରୀ ଝିଅଟିଏ ହେଲେ - ଦୁଇଜଣଙ୍କୁ ଛନ୍ଦାଇ ଦେବା। ମୃଦୁ ମୃଦୁ ହସି ଦେଇ ପଦ୍ମାଳୟା ପୁଅ ଧର୍ମପଦକୁ ଟେକି ଦେଇଥିଲେ ଇନ୍ଦୁମତୀଙ୍କ କୋଳକୁ।

କିଛି ଦିନ ପରେ ଯେତେବେଳେ ଇନ୍ଦୁମତୀଙ୍କର ଯନ୍ତ୍ରଣା କାତର ସ୍ୱର ଶୁଣିଲେ, ପୁଅକୁ ଖଟ ଉପରେ ଶୁଆଇ ଦେଇ ଧାଇଁ ଯାଇଥିଲେ ପଦ୍ମାଳୟା ତାଙ୍କ ଘରକୁ। ଇନ୍ଦୁମତୀଙ୍କର ଯତ୍ନ ନେବାକୁ। ତାଙ୍କ ବେଳକୁ ସେ। ଆଉ ସେ ନ ଯିବେ ବା କେମିତି ସଙ୍ଗାତ ଇନ୍ଦୁମତୀଙ୍କ ବେଳକୁ। ବେଣୁଧରଙ୍କ ମଣ୍ଡପରେ ପ୍ରାର୍ଥନା କରି ଜୁହାର କରିଥିଲେ, ବେଣୁଧର ଭଲରେ ଭଲରେ ପାରିକର ସଙ୍ଗାତକୁ। ଭଲ ଭଲରେ ପିଲାଟିଏ ଜନ୍ମ ହେଲା। ମଧୁ ମାଆ ମଧ୍ୟ ପହଞ୍ଚି ସବୁ କାର୍ଯ୍ୟ ସୁରୁଖୁରୁରେ ତୁଲାଇ ଦେଇଛି।

ଝିଅ ପିଲାଟିଏ ହେବାର ଦେଖି ଆନନ୍ଦରେ ବିଭୋର ହୋଇ ଯାଇଛନ୍ତି ପଦ୍ମାଳୟା। ଇନ୍ଦୁମତୀଙ୍କ ମୁଖ ମଣ୍ଡଳରେ ଫୁଟି ଉଠିଛି ସ୍ମିତ ହାସ୍ୟ ରେଖା। ସେ ପିଲାଟିକୁ କୋଳରେ ଧରି କହିଲେ, ଏଇ ନିଅ ତୁମର ବୋହୂଟିକୁ। ପଦ୍ମାଳୟା ହସି ହସି କହିଲେ, ଆରେ ଏବେଠୁଁ ନେଇ କ'ଣ କରିବି ? ଆମଘରକୁ ଯିବାର ସମୟ ଆସୁ। ନେଇଯିବି। ପଦ୍ମାଳୟା କହିଲେ, ତୁମର ପୁରୁଷଟି ପାଖକୁ ଖବରଟିଏ ପଠାଇବା କେମିତି ? ଏ ଖବର ପାଇଲେ ସେମାନେ ଦୁହେଁ କେଡ଼େ ଖୁସି ହେବେ ସତେ। ଖବର ପଠାଇବାର ଅସୁବିଧା ନଥିଲା।

କୋଣାର୍କ ଥିଲା ବଡ଼ ବନ୍ଦରଟିଏ। ଏହି ବନ୍ଦରକୁ ଜିନିଷ ପତ୍ର ଯୋଗାଇବା ଓ ଆଣିବା କରନ୍ତି ଆଖା ପାଖ ଗାଁର ଲୋକେ। କୋଣାର୍କ ଥିଲା ମଧ୍ୟ ଏକ ବ୍ୟବସାୟର କେନ୍ଦ୍ରସ୍ଥଳ। ସେଠକାର କିଛି ଲୋକ ଉତ୍ତମ ଶିଳ୍ପୀ ଭାବରେ ଜାଣିଥିଲେ ବିଶୁ ମହାରଣାକୁ। ତାଙ୍କୁ ଖବର ଦେବାରେ କୌଣସି ଅସୁବିଧା ହେଲାନାହିଁ। ଝିଅ ଜନମର ଖବର ପହଂଚି ଯାଇଥିଲା ଦୁଇବଂଧୁଙ୍କ ପାଖରେ। ପିତା ସୁଦର୍ଶନ ଓ ବନ୍ଧୁ ବିଶୁଙ୍କ ପାଖରେ।

ଏକୋଇଶା ଦିନ ନାମକଣ ହୋଇଥିଲା ସରସ୍ୱତୀ। ପଦ୍ମାଳୟା ଶରଧାରେ ତାଙ୍କୁ ଡାକିବାକୁ ଆରମ୍ଭ କରିଥିଲେ ସର ବୋଲି। ସେ ଦିନର ସେହି ପିଲା ଦୁଇଟିକୁ ଆଜି ସାତବର୍ଷ ପୁରିଲାଣି। କେଡ଼େ ସୁନ୍ଦର ଯୋଡ଼ି ଦୁଇଟି। ଦେଖିବାକୁ ମଧ୍ୟ କେଡ଼ ଡ଼ଉଲ ଡ଼ାଉଲ। ପଦ୍ମାଳୟା କହୁଛନ୍ତି, ଦେଖ ସଙ୍ଗାତ କେଡ଼ ଚଞ୍ଚଳ ପିଲାଦୁଇଟି ବଡ଼ ହୋଇଗଲେଣି। କୋଣାର୍କ ମନ୍ଦିର କ୍ଷେତ୍ରରେ ବିଶୁ ପାଖକୁ ଖବର ଆସିଲା - ସୁଦର୍ଶନର କନ୍ୟା ରତ୍ନଟିଏ ହୋଇଛି। ସେ ଦିନ ଦୁଇଜଣଙ୍କର ଆନନ୍ଦ ସମସ୍ତଙ୍କ ଭିତରେ ବାଣ୍ଟି ଦେଇଛନ୍ତି ବିଶୁ। କରିଛନ୍ତି ଏ ଖୁସି ଖବର ପାଇଁ ମିଷ୍ଟାନ୍ନ ବଣ୍ଟନ।

ସଂଧ୍ୟାରେ ସୁଦର୍ଶନ ବିଶୁଙ୍କୁ କହିଲେ, ଭାଇ ମୁଁ ଆଜି ରାତିରେ ଲୁଚି କରି ଘରକୁ ପଳାଇ ଯିବି। ଦେଖି ଆସିବି ମାଆ ଝିଅ କେମିତି ଅଛନ୍ତି। ବିଶୁ କହିଲେ - ଲୁଚି ପଳାଇଲେ ଦଣ୍ଡ ମିଳିବ। ସୁଦର୍ଶନ କହିଲେ, କିଏ ବାରଶହ ବଢ଼େଇ ଭିତରେ ମୋ ଭଳି ବଢ଼େଇକୁ ଖୋଜିବେ। ତୁମ ଭଳି ବଢ଼େଇ ଚାଲିଗଲେ ସିନା ସମସ୍ତେ ଖୋଜିବେ - ତୁମେ ଧରାପଡିଯିବ। ବିଶୁ କହିଲେ, ମୋର କ'ଣ ଇଚ୍ଛା ନାହିଁ ପୁଅକୁ ଦେଖିଯିବାକୁ। ଆମେ ଉତ୍କଳର ଶିଳ୍ପୀ। ଆମ ଉତ୍କଳ ଶିଳ୍ପୀର ଟେକ ରଖିବା ପାଇଁ ଆମେ ଏହି ବାରବର୍ଷ ଭିତରେ ସୂର୍ଯ୍ୟମନ୍ଦିରର ନିର୍ମାଣ କାର୍ଯ୍ୟ ଶେଷ କରିବୁ। ଏଥିପାଇଁ ଆମର ଆତ୍ମୀୟ ସ୍ୱଜନ, ପୁତ୍ରକନ୍ୟା, ସମସ୍ତଙ୍କୁ ଭୁଲି ଯାଇ ପାରିବୁ। ସେତିକି ଇଚ୍ଛା ଶକ୍ତି ଆମ ପାଖରେ ରହିବା ଆବଶ୍ୟକ।

●

## (୧୪)

ଦାକ୍ଷିଣାତ୍ୟର ବିଜୟରୁ ବାହୁଡ଼ିବା ପରେ ଗୋଟିଏ ଦିନ କଟାଇଛନ୍ତି ମହାରାଜା ନରସିଂହ ଦେବ - ତାଙ୍କ ସାତସ୍ୱପ୍ନର କୋଣାର୍କରେ। ରାତ୍ରିର ନିଝୁମ ପ୍ରହରରେ ଏକୁଟିଆ ବୁଲୁଛନ୍ତି ମନ୍ଦିର ବେଢ଼ାରେ। ସୂର୍ଯ୍ୟୋଦୟରେ ଦେଖୁଛନ୍ତି ସମୁଦ୍ରତଟର ଅପୂର୍ବ ମନଲୋଭା ଦୃଶ୍ୟ। ପୁଣି ଦିନମାନରେ ଶିଳ୍ପୀମାନଙ୍କ ସହିତ ସମୀକ୍ଷା କରିଛନ୍ତି - ମନ୍ଦିର ନିର୍ମାଣର ଅଗ୍ରଗତି। ତାହାରି ଭିତରେ କତିପୟ ଶିଳ୍ପୀ ଓ ଶ୍ରମିକର ମୃତ୍ୟୁ ଖବରରେ ସେ ବ୍ୟଥିତ ହୋଇଛନ୍ତି। ବେଦନା ମଥିତ ହୃଦୟ ତାଙ୍କର ବାହୁନି ଉଠିଛି। ମହାରାଣୀ ଅନୁସୂୟାଙ୍କୁ ପ୍ରଶ୍ନ କରିଛନ୍ତି - ସେମାନଙ୍କର ପରିବାରବର୍ଗଙ୍କ ପାଇଁ କ'ଣ କରିଛନ୍ତି ସେ ?

ମହାରାଣୀ ବିନୀତ ଭାବରେ କହିଛନ୍ତି - ସେହି ମୃତ ବ୍ୟକ୍ତିମାନଙ୍କର ଅନ୍ତ୍ୟେଷ୍ଟିକ୍ରିୟା ପାଇଁ ଆବଶ୍ୟକ ଅର୍ଥ ଯୋଗାଇ ଦେବା ସହ ପ୍ରତ୍ୟେକ ପରିବାରକୁ ସେମାନଙ୍କର ଭରଣ ପୋଷଣ ପାଇଁ କିଛି କିଛି ସ୍ୱର୍ଣ୍ଣମୁଦ୍ରା ରାଜକୋଷରୁ ପ୍ରଦାନ କରାଯାଇଛି। ମହାରାଣୀଙ୍କର ନିର୍ମାଣ କାର୍ଯ୍ୟ ପରିଦର୍ଶନ ଓ ମୃତ ଶିଳ୍ପୀ ଓ ଶ୍ରମିକଙ୍କ ପରିବାର ପ୍ରତି ଅନୁକମ୍ପା ଅନୁଧ୍ୟାନ କରି, ଆତ୍ମ ସନ୍ତୋଷ ଲାଭ କରିଛନ୍ତି ନରସିଂହ ଦେବ।

ରାଜକାର୍ଯ୍ୟର ସମୀକ୍ଷା କରିବା ପାଇଁ ସୂର୍ଯ୍ୟାସ୍ତ ପରେ ଆସିଛନ୍ତି ବାରବାଟୀ ଦୁର୍ଗର ଦରବାରକୁ। ପାତ୍ର, ମନ୍ତ୍ରୀ, ପ୍ରଜା ପାଟକ, ଭବ୍ୟ ସମର୍ଦ୍ଧନା ଦେଇ ତାଙ୍କୁ ପାଛୋଟି ନେଇଥିଲେ ଦରବାରକୁ। ଗତକାଲି ଆସି ଥିବା ଅପ୍ରମିତ ଧନରତ୍ନ ଜମା ହୋଇଛି ଦରବାରରେ। ସେ ସବୁ ଯିବ ରାଜକୋଷକୁ।

ମହାରାଜାଙ୍କ ଆଗମନରେ ଆନନ୍ଦର ଉଚ୍ଛ୍ୱାସ ଖେଳି ଯାଇଛି ରାଜପ୍ରାସାଦରେ। ଚମକ, ତୁରୀ, ମହୁରୀ, ମୃଦଙ୍ଗ ଇତ୍ୟାଦି ବାଦ୍ୟରେ କମ୍ପି ଉଠୁଛି ରାଜପ୍ରାସାଦ। ପରିପୂର୍ଣ୍ଣ ଦରବାର। ସିଂହାସନରେ ନରସିଂହ ଦେବ। ବାମ ପାର୍ଶ୍ୱ ସିଂହାସନ ମଣ୍ଡନ କରିଛନ୍ତି -

ସୌନ୍ଦର୍ଯ୍ୟମୟୀ ମହାରାଣୀ ଅନୁସୂୟା । କେବଳ ଉପଯୁକ୍ତ ପତିର ଉପଯୁକ୍ତା ପତ୍ନୀ ସେ ନୁହନ୍ତି – ଉପଯୁକ୍ତ ରାଜାଙ୍କର ଉପଯୁକ୍ତ ମଧ୍ୟ ରାଣୀ ସେ ।

ଆଠବର୍ଷ କାଳ ରାଜ୍ୟର ରାଜକାର୍ଯ୍ୟ ସୁଚାରୁ ରୂପେ ପାଳନ କରିଛନ୍ତି ସେ । ପାତ୍ର, ମନ୍ତ୍ରୀ, ପାରିଷଦବର୍ଗ ତାଙ୍କୁ ସହଯୋଗ କରିବାରେ କେବେବି ଅବହେଳା କରିନାହାନ୍ତି । ରାଜସିଂହାସନରେ ନବସି ରାମାୟଣର ଭରତଙ୍କ ଭଳି ନରସିଂହଦେବଙ୍କ ନାଆଁରେ ସିଂହାସନକୁ ସମ୍ମାନ ଦେଇ ପ୍ରଜାବୃନ୍ଦଙ୍କର ମଙ୍ଗଳ ସାଧନ ପାଇଁ ଆପ୍ରାଣ ଉଦ୍ୟମ କରିଛନ୍ତି ସେ । ତା ସହିତ ଚାଲିଥିବା ସୂର୍ଯ୍ୟମନ୍ଦିରର ନିର୍ମାଣ କାର୍ଯ୍ୟ ନିୟମିତ ପରିଦର୍ଶନ କରିବା ଓ ଶିଳ୍ପୀବୃନ୍ଦଙ୍କୁ ଉତ୍ସାହିତ କରିବାରେ ସେ ମଧ୍ୟ ଅବହେଳା କରି ନାହାନ୍ତି ।

ଦାକ୍ଷିଣାତ୍ୟ ବିଜୟରେ ରହିଥିବା ପତିପରମ ଦେବତାଙ୍କଠାରୁ ଆସୁଥିବା ନିର୍ଦ୍ଦେଶକୁ ଅକ୍ଷରେ ଅକ୍ଷରେ ପାଳନ କରିଛନ୍ତି । ତାଙ୍କ ପ୍ରାଣକୁସ୍ପର୍ଶ କରିପାରି ନାହିଁ ସ୍ୱାମୀ ବିରହର ବେଦନା । ଆଗ୍ରହର ସହିତ ସେ ଅନେଇ ବସିଥିଲେ – ସ୍ୱାମୀଙ୍କର ବାହୁଡା ବାଟକୁ ।

x x x x

ଏହି ସାନ୍ଧ୍ୟ ଦରବାରରେ ମହାରାଜା ଦାକ୍ଷିଣାତ୍ୟ ବିଜୟକୁ ଯାଇଥିବା କିଛି ବୀର ଯୋଦ୍ଧାଙ୍କୁ ସମ୍ମାନିତ କରିବା ପୂର୍ବରୁ ଯୁଦ୍ଧରେ ବୀରତ୍ୱ ପ୍ରଦର୍ଶନ କରି ପ୍ରାଣ ହରାଇ ଥିବା ମୃତ ସୈନିକଙ୍କର ଆତ୍ମାର ସଦ୍‌ଗତି ନିମନ୍ତେ ଉପସ୍ଥିତ ସଭାସଦବର୍ଗଙ୍କ ସହିତ ପ୍ରାର୍ଥନା କରିଥିଲେ । ତା ସହିତ ସେମାନଙ୍କ ପରିବାରବର୍ଗଙ୍କ ପ୍ରତି ସମବେଦନା ଜ୍ଞାପନ କରିଥିଲେ ଏବଂ ସ୍ୱର୍ଣ୍ଣମୁଦ୍ରା ସାହାଯ୍ୟ ପଠାଇବାର ନିର୍ଦ୍ଦେଶ ଦେଇଥିଲେ ।

ତାପରେ ସେ ବୀର ସୈନିକମାନଙ୍କୁ ସମ୍ମାନିତ କରିଥିଲେ । ଯେଉଁମାନଙ୍କର ଅପୂର୍ବ ଯୁଦ୍ଧ କୌଶଳ ତାଙ୍କ ପ୍ରାଣକୁ ପୁଲକିତ କରିଥିଲା । ସେନାପତି ବା ମୁଖ୍ୟ ସେନାଧ୍ୟକ୍ଷଙ୍କୁ ଛାଡି ଦେଲେ ମୁଖ୍ୟତଃ ସେ ଯୁଦ୍ଧରେ ଯୁଦ୍ଧ ପରିଚାଳନା କରନ୍ତି । ତଥାପି ସୈନିକମାନଙ୍କୁ ସମ୍ମାନିତ କରିବା ପୂର୍ବରୁ ନିର୍ବାଚନ କରିବା ପାଇଁ ସେନାଧ୍ୟକ୍ଷଙ୍କର ସମ୍ମତି ସେ ନେଇଥାନ୍ତି । ସେ ପ୍ରଥମେ ଉତ୍କଳର ବୀର ପାଇକମାନଙ୍କର ପ୍ରଶଂସା କରିଥିଲେ । ତାଙ୍କ ଅଭିଭାଷଣରେ ଉଲ୍ଲେଖ କରିଥିଲେ, ଉତ୍କଳର ବୀର ସନ୍ତାନଙ୍କ ବାହୁରେ ଅଛି ଅପ୍ରମିତ ବଳ । ସେହି ବଳିଷ୍ଠ ବାହୁ ଆସ୍ଫାଳମାରି ସାତ ସମୁଦ୍ର ତେର ନଈ ପାରି ହୋଇ ବୋଇତରେ ବୋହି ଆଣୁଛନ୍ତି ସାତଗଦା ଧନ । ତାର ଶକ୍ତିଶାଳୀ ବାହୁ ଶାଣିତ କରବାଳ ଦ୍ୱାରା ଶତ୍ରୁଶିର ଛିନ୍ନ କରି ରାଜ୍ୟପରେ ରାଜ୍ୟ ଜୟ କରି ଚାଲିଛି । ତାର କୁଶଳୀ ଶିଳ୍ପୀ, ନିହାଣ ମୁନରେ ଗଢ଼ି

ତୋଳୁଛି ମନ୍ଦିର ଦେଉଳ। କାରୁକଳାର କେତେ ଇମାରତ। ତାର କବି ଲେଖକଙ୍କ ଲେଖନୀ ମୁନ, ରଚନା କରୁଛି ଏ ଜାତିର ଗୌରବମୟ ଇତିହାସ। ଗାଉଛି ଗର୍ବ-ଗୌରବର ସଙ୍ଗୀତ। ଏ ଉତ୍କଳର ପ୍ରଜାମଣ୍ଡଳ ପ୍ରଚଣ୍ଡ ସ୍ୱାଭିମାନୀ। ମୁଁ ରାଜା ଭାବରେ ସେମାନଙ୍କର ଶାସକ ନୁହେଁ। ସେବକ ମୁଁ। ସେମାନଙ୍କର ହସ କାନ୍ଦ - ମୋର ହସକାନ୍ଦ। ସେମାନଙ୍କ ସୁଖ ଦୁଃଖ, ମୋର ସୁଖଦୁଃଖ। ମୁଁ ହେଉଛି ପୂଜକ - ସେମାନେ ମୋ ହୃଦୟ ମନ୍ଦିରର ଦେବତା। ପୂର୍ଣ୍ଣ ଦରବାର ଯେମିତି ସ୍ତବ୍ଧ ହୋଇ ଯାଇଥିଲା - ମହାରାଜାଙ୍କ ଏ ଅଭିଭାଷଣରେ। ହଲ୍‌ଚଲ୍ ହୋଇ ଯାଇଥିଲା ପ୍ରତିଟି ହୃଦୟ। ନିନାଦିତ ହେଲା - ମହାରାଜା ନୃସିଂହ ଦେବଙ୍କ ଜୟ - ମହାରାଣୀ ଅନୁସୂୟା ଦେବୀଙ୍କ ଜୟ। କମ୍ପି ଉଠୁଥିଲା ଦରବାର।

x x x x

ମହାରାଣୀ ଅନୁସୂୟା ଦେବୀଙ୍କ ନିର୍ଦ୍ଦେଶାନୁସାରେ ପୂର୍ବରୁ ସଜା ଯାଇଥିଲା, ସୁବର୍ଣ୍ଣ ପଲଙ୍କ ଶୟନକକ୍ଷରେ। ଅନ୍ତଃପୁରକୁ ପ୍ରବେଶ ପଥ, ମହ ମହ ବାସୁଥିଲା ପାର୍ଶ୍ୱରେ ଝୁଲୁଥିବା ମଲ୍ଲୀ ଓ ରଜନୀ ଗନ୍ଧାର ମାଳର ବାସ୍ନାରେ। ବାହାରେ ତୋଫା ଜହ୍ନ ଆଲୁଅ ସହିତ ପ୍ରତିଦ୍ୱନ୍ଦ୍ୱିତା କରୁଥିଲା ଶୁଭ୍ର ଆଲୋକର ସାଜସଜ୍ଜା। ପ୍ରବେଶ ଦ୍ୱାର ଦେଶରେ ବସାଯାଇଥିଲା - ସଜ୍ଜିତ ଶୁଭ ସୁବର୍ଣ୍ଣ କଳସ।

ମହାରାଜାଙ୍କର ରାତ୍ରିଭୋଜନ ପାଇଁ ପ୍ରସ୍ତୁତ ହୋଇଛି ଆରସା, କାକରା, ଖେଚଡ଼ି। କେତେ କେତେ ସୁଆଦିଆ ଦରବ। ଆଜି ଯେମିତି ମଧୁ ଚନ୍ଦ୍ରିକା ରାତ୍ରି, ମହାରାଣୀ ଅନୁସୟାଙ୍କ ଜୀବନରେ। ଜୀବନର ପ୍ରଥମ ମଧୁ ଚନ୍ଦ୍ରିକା ରାତ୍ରିଠାରୁ ଆଜିର ଏ ରାତ୍ରି ତାଙ୍କ ନାରୀ ଜୀବନରେ ଏକ ଉନ୍ମାଦନା ଭରି ଦେଇଛି। ଦୀର୍ଘ ଆଠବର୍ଷର ବିରହ ବିଚ୍ଛେଦ ପରେ ଆଜିର ମିଳନ ମହୋତ୍ସବ ତାଙ୍କ ପ୍ରାଣରେ ପୁଲକ ସଂଚାର କରିଛି - ଯାହା ଗତକାଲି ରାତ୍ରିରେ କୋଣାର୍କର ଉଆସରେ ସେ ଅନୁଭବ କରି ପାରିନାହାନ୍ତି। ଆଜି ରାଜଦରବାରରେ ସ୍ୱାମୀଙ୍କର ତାଙ୍କ ପ୍ରତି ପ୍ରଶଂସାବାଣୀ ପ୍ରାଣର ପ୍ରତିଟି କୋଷରେ ଅପାର ଆନନ୍ଦ ସଂଚାର କରିଛି।

ଆଗରୁ ସେ ଭାବୁଥିଲେ, ସ୍ୱାମୀ ତାଙ୍କୁ ବିବାହ କରି ସୁଖୀ ନୁହନ୍ତି। ଭୁଲ କରିଛନ୍ତି। ସେଥିପାଇଁ ରାଣୀଙ୍କ ହୃଦୟରେ କିଛି ବ୍ୟଥା ଭରି ରହିଥିଲା। ବୋଧହୁଏ - ଆଜି କିଛି ପରିମାଣରେ ସେ ବ୍ୟଥାର ଉପଶମ ଘଟିଛି। ଆହୁରି ଉପଶମ କରିବାର ପ୍ରଚେଷ୍ଟାରେ ମହାରାଣୀ ପ୍ରଥମେ ହସ୍ତ ପଦ ପ୍ରକ୍ଷାଳନ ପରେ ଅନ୍ତଃପୁରର ତୁଳୀତଳ୍ପ ଶଯ୍ୟାରେ ବସାଇ ପତି ଦେବତାଙ୍କ ହାତରେ ଧରାଇ ଦେଇଛନ୍ତି ଦ୍ରାକ୍ଷାରସର ପାନୀୟ। କିଛି ସମୟ ପରେ

ପାର୍ଶ୍ୱରେ ପଡ଼ିଥିବା ମହାର୍ଘ ଆସନରେ ବସାଇ ବାଢ଼ି ଦେଇଛନ୍ତି ସମ୍ମୁଖରେ ପଡ଼ିଥିବା ହାତୀଦାନ୍ତର ଶୁଭ୍ର ମେଜିଆ ଉପରେ ବିଭିନ୍ନ କିସମର ଅପୂର୍ବ ସ୍ୱାଦିଷ୍ଟ ରାତ୍ରି ଭୋଜନ।

ମହାରାଜା ନରସିଂହ ଦେବଙ୍କୁ ଏ ସବୁ ନୂଆଁ ନୂଆଁ ଲାଗୁଥିଲା। କୌତୁକ କରି, ହସି ହସି କହିଲେ - ଏସବୁର ଆୟୋଜନ କରିଛ କେବଳ ମୋହରି ପାଇଁ ମହାରାଣୀ? ଏ ରାଜ୍ୟର ପ୍ରଜାପାଳକ ରାଜା ଭାବରେ ମୁଁ ଯେ କେତେ ସଂକଳ୍ପ ନେଇଛି। ସଂକଳ୍ପ ନେଇଛି ପ୍ରଜାଙ୍କ ହସରେ ହସିବା ପାଇଁ, ପ୍ରଜାଙ୍କ ଦୁଃଖରେ କାନ୍ଦିବା ପାଇଁ। ସଂକଳ୍ପ ନେଇଛି ବଂଚିଥିବା ତକ କେବଳ ରାଜ୍ୟର ବିକାଶ ସାଧନ କରିବାକୁ। ରାଜ୍ୟର ଗୌରବରକ୍ଷାରେ ନିଜକୁ ଗୌରବାନ୍ୱିତ କରିବା ପାଇଁ।

ଏ ରାଜ୍ୟର ରାଣୀ ଭାବରେ ମୁଁ କ'ଣ ତାହା ଚାହୁଁ ନାହିଁ ପ୍ରାଣନାଥ ? ଆପଣଙ୍କ ସଂକଳ୍ପଠାରୁ ମୋର ସଂକଳ୍ପ କ'ଣ ଭିନ୍ନ ହୋଇପାରେ ? ମନ୍ଦ ମନ୍ଦ ହସି କହିଲେ ଅନୁସୂୟା। ହସିଲେ ଅନୁସୂୟା ଅପୂର୍ବ ଦେଖାଯାଆନ୍ତି। ବିଂଚି ହୋଇ ପଡ଼େ ତାଙ୍କର ରୂପସମ୍ଭାର।

ମହାରାଜା ନରସିଂହ ଦେବଙ୍କ ଅନ୍ତରକୁ ଆପ୍ଳୁତ କରେ। ଆମୋଦିତ କରେ ସେହି ରୂପସମ୍ଭାର। ତାହାରି ଭିତରେ ସେ ବୁଝି ପାରୁଥିଲେ ରାଣୀ ଅନୁସୂୟାଙ୍କ ପ୍ରାଣର ଅଭିମାନ। ଅନୁସୂୟାଙ୍କ ପଦ୍ମପାଖୁଡ଼ା ପରି ସୁକୋମଳ ଗଣ୍ଡ ଦେଶରେ ଚୁମ୍ବନର ଚିହ୍ନ ଆଙ୍କି ଦେଇ ମହାରାଜା ନରସିଂହ ଦେବ କହିଲେ, ମୋର ସଂକଳ୍ପ ତୁମର ସଂକଳ୍ପ ନୁହେଁ କହିବି କେମିତି ? ତୁମେ ଯେ ମୋର ଅର୍ଦ୍ଧାଙ୍ଗିନୀ। ତୁମକୁ ନେଇ ଯେ ମୋର ଗୋଟିଏ ପରିପୂର୍ଣ୍ଣ ଜୀବନ। ସମସ୍ତ କର୍ମରେ, ଧର୍ମରେ, ସୁଖଦୁଃଖରେ ତୁମେ ଯେ ମୋର ସହଯାତ୍ରୀଣୀ। ତୁମ ଭଳି ଜଣେ ଅପରୂପା, ବିଦୂଷିକା ଏବଂ ପତିପ୍ରାଣା ପତ୍ନୀଟିଏ ପାଇ ମୋର ଜୀବନ ଯେ ପରିପୂର୍ଣ୍ଣ ହୋଇଛି।

ରାଣୀ ଅନୁସୂୟା କହିଲେ, ଆପଣଙ୍କ ତୁଣ୍ଡରେ ମୋର ପ୍ରଶଂସା ଶୋଭାପାଏ ନାହିଁ। ମୁଁ ଯେ ଆପଣଙ୍କର ମନ୍ଦିରର ଦେବଦାସୀଟିଏ। ଯାହାର ମନ ପ୍ରାଣ ଉତ୍ସର୍ଗୀକୃତ ମନ୍ଦିରର ଦେବତା ପାଇଁ।

ମୁଁ ସେହି ଚକ୍ଷୁରେ ତୁମକୁ ଦେଖିବାକୁ ଚାହେଁ ମହାରାଣୀ, ଯେଉଁ ଚକ୍ଷୁରେ ତୁମେ ଧରାଦେଇଛ ମୋ ପ୍ରାଣର ପରିପୂର୍ଣ୍ଣ ଜୋଛନା ଭାବରେ। ଦୀର୍ଘ ଆଠବର୍ଷ ପରେ ଆଜି ବୁଝିଗଲି ତୁମେ ଅସାଧାରଣ ନାରୀଟିଏ।

ସେ ଦିନ ତୁମ ଉପରେ ଯେଉଁ ଦାୟିତ୍ୱ ନ୍ୟସ୍ତ କରି ଯାଇଥିଲି, ଖବର ନେଇ ବୁଝିଛି ମୋ ଅବର୍ତ୍ତମାନରେ ତୁମେ ସୁଚାରୁରୂପେ ରାଜ୍ୟ କାର୍ଯ୍ୟ ପରିଚାଳନା କରିଛ। ତୁମରି ତଦାରଖରେ ମନ୍ଦିର ନିର୍ମାଣ କାର୍ଯ୍ୟର ବିଶେଷ ଅଗ୍ରଗତି ଘଟିଛି। ଆଉ କ'ଣ ଆଶା କରିବି ତୁମଠାରୁ ମହାରାଣୀ।

ମୁଁ କିନ୍ତୁ ତୁମଠାରୁ କେତେ ଆଶା କରୁଛି କହିଲେ ଅନୁସୂୟା। ତୁମେ ଯାହା ଆଶା କରୁଛ – ମୁଁ ହୁଏତ ଏବେ ଦେବାରେ ଅକ୍ଷମ। ତୁମେ ମାଗିଲେ ଆଜି ବି ମୋ ଜୀବନଟିକୁ ଦେଇଦେବି। ହେଲେ, ମୋ ସଂକଳ୍ପ ମଧ୍ୟରୁ ଯଦି କିଛି ମାଗ, ମୁଁ ଦେଇ ପାରିବି ନାହିଁ ମହାରାଣୀ। ଆପଣଙ୍କ ସଂକଳ୍ପ ମଧ୍ୟରୁ ମୁଁ କିଛି ମାଗିବି ବୋଲି ଆପଣ କେମିତି ଆଶା କରୁଛନ୍ତି ? ଦୀର୍ଘ ଆଠବର୍ଷର ବିଚ୍ଛେଦପରେ ସ୍ୱାମୀ ଦେବତା ଘରକୁ ଫେରି ଆସିଛନ୍ତି। ରାତ୍ରିର ପବିତ୍ର ପ୍ରହରରେ ସ୍ତ୍ରୀ ଯାହା ତାର ସ୍ୱାମୀଠାରୁ ମାଗେ ମୁଁ ତାହା ମାଗୁନାହିଁ। ମାଗିବି ସଂକଳ୍ପର ସମାପ୍ତି ପରେ। ମାଗିବି ଏ ରାଜ୍ୟର ଭବିଷ୍ୟତ ଉତ୍ତରାଧିକାରୀଟିଏ ଦେବା ପାଇଁ। ମୁଁ କ'ଣ ବୁଝି ନାହିଁ ମନ୍ଦିର ନିର୍ମାଣରେ ଲାଗିଥିବା ବାରଶହ ବଢ଼େଇଙ୍କର ହୃଦୟର ବେଦନା। ମୁଁ ମଧ ସେହି ବେଦନାର ଅଂଶୀଦାର। ଯେଉଁ ଅଂଶୀଦାର ହେବା ପାଇଁ ଆପଣଙ୍କର ସଂକଳ୍ପ। ମୁଁ ବି ଆଜି ଚାହିଁଥିଲେ ପ୍ରାଣର ପ୍ରଦୀପ ଜାଳି କରିଥାନ୍ତି ଆରାଧନା ମୋର ହୃଦୟର ଦେବତାକୁ। ନା। ବୁଝିଛି ପ୍ରିୟତମ, ବାରଶହ ବଢ଼େଇଙ୍କର ପ୍ରାଣପ୍ରିୟା ପତ୍ନୀମାନଙ୍କର, ପ୍ରେମିକା, ପେୟସୀ ମାନଙ୍କର ମର୍ମ ବେଦନାକୁ ମୋ ହୃଦୟରେ। ବୁଝିଛି ମୁଁ।

ରାଜାଙ୍କର ନିର୍ମମ ଆଦେଶକୁ ଶିରୋଧାର୍ଯ୍ୟ କରି ପ୍ରିୟତମାମାନଙ୍କ ସହିତ ମିଳନାକାଂକ୍ଷୀ ଶିଳ୍ପୀବୃନ୍ଦ ତାଙ୍କ ହୃଦୟର ବାସନାକୁ ଚାପି ରଖି ନପାରି ମନ୍ଦିର ଗାତ୍ରରେ ତାହା ପରିସ୍ଫୁଟ କରିଛନ୍ତି। ସେମାନଙ୍କର ମୁଖ୍ୟ ମାନଙ୍କ ବିରୁଦ୍ଧରେ ଶାସ୍ତି ବିଧାନର ନିର୍ଦ୍ଦେଶ ଦିଆଯାଇଥିଲା। ହେଲେ, ବାରଶହ ଶିଳ୍ପୀ ସେ ଦିନ କାର୍ଯ୍ୟବନ୍ଦ ଆନ୍ଦୋଳନ କରିଥିଲେ। ପାଖରେ ଆପଣଙ୍କୁ ନପାଇ, ଆପଣଙ୍କ ନିର୍ଦ୍ଦେଶକୁ ଅପେକ୍ଷା କରି ସେ ଶାସ୍ତି ବିଧାନର ନିର୍ଦ୍ଦେଶ ମୁଁ ବାଧ ହୋଇ ପ୍ରତ୍ୟାହାର କରିଥିଲି।

ମୁଁ ଶୁଣିଛି ଏବଂ ଏବେ ମଧ୍ୟ ଜାଣୁଛି ଉତ୍କଳର ଶିଳ୍ପୀ ପଥରରେ ପାରଜାତ ଫୁଟାଏ। ତା ନିହାଣ ମୁନରେ ଜୀବନ୍ୟାସର ସଂଜୀବନୀ ରହିଛି। ପଥର ଜୀବନ ପାଏ। କଥା କହେ। ହସେ, ନୃତ୍ୟ କରେ, ସଂଗୀତ ବାଦନ କରେ, ଗାନ ମଧ କରେ। ସେ ସବୁ ମୁଁ ସୂର୍ଯ୍ୟ ମନ୍ଦିର ଗାତ୍ରରେ ଶିଳ୍ପୀମାନଙ୍କ ଦ୍ୱାରା ଖୋଦିତ ହେଉଥିବାର ଦେଖୁଛି। ଦେଖୁଛି ଆଜି

ପଥର ଦେହରେ ପ୍ରକୃତି ଓ ପୃଥିବୀର ପ୍ରାଣୀଜଗତ ହସୁଛି । ହସୁଛି ଶିଳ୍ପୀର ନିହାଣ ମୁନରେ । ସେଇଥିପାଇଁ ବୋଧହୁଏ ଏହା ହୋଇଛି ଉନ୍ନତ କଳାର ଦେଶ ଉତ୍କଳ । ମୋର ଜନ୍ମ ଯଦିବା ଭୂସ୍ୱର୍ଗ କାଶ୍ମୀର ରାଜ୍ୟରେ, ମୋର ଆଖି ଚକ୍ଷୁ ଫୁଟିଛି ଏହି ଜଗନ୍ନାଥ ଦେଶରେ, ନୀଳାଚଳ ଧାମରେ । ଏହି ଉତ୍କଳ-ଭୂମି ତ୍ୟାଗର ଭୂମି । ଏ ମାଟିର ମଣିଷମାନେ ବିଶେଷ କରି ନରପତି ଭାବରେ ଆପଣ ଯେଉଁ ତ୍ୟାଗ ମନ୍ତ୍ରରେ ଦୀକ୍ଷିତ, ମୋତେ ସେହି ମନ୍ତ୍ର ମୁଗ୍ଧ କରିଛି । ବିମୁଗ୍ଧ କରିଛି ବାରଶହ ବଢ଼େଇଙ୍କର ତ୍ୟାଗପୂତ ଜୀବନ । ବିମୁଗ୍ଧ କରିବ, ମହିମାନ୍ୱିତ କରିବ, ପୃଥିବୀ ଇତିହାସର ସୁବର୍ଣ୍ଣ ପୃଷ୍ଠାଗୁଡ଼ିକୁ ।

ଏହି କୋଣାର୍କରେ ଉଡ଼ିବ ଆପଣଙ୍କ ଅକ୍ଷୟ କୀର୍ତ୍ତିର କାଳଜୟୀ ଧ୍ୱଜା ।

ମୁଗ୍ଧ ଶ୍ରୋତା ଭଳି ଶୁଣୁଥିଲେ ମହାରାଜା ରାଣୀ ଅନୁସୂୟାଙ୍କର ଏ ଆବେଗମୟୀ ଅଭିଭାଷଣଟିଏ । ତାଙ୍କୁ ସେ ବକ୍ଷ ସଂଲଗ୍ନା କରି କହିଲେ, ଏହି କେତୋଟି ବର୍ଷ ଭିତରେ ତୁମେ ଉତ୍କଳପ୍ରାଣା ହୋଇ ଯାଇଛ ମହାରାଣୀ । ହେଲେ ପତିପ୍ରାଣା ଏ ପର୍ଯ୍ୟନ୍ତ ହୋଇ ପାରିଲିନାହିଁ - କହିଲେ ମହାରାଣୀ ଅନୁସୂୟା । ସେହିଦିନ ପତିପ୍ରାଣା ହୋଇଥିବାର ପରୀକ୍ଷା ଦେବି, ଯେଉଁଦିନ ପ୍ରେମ ପାଗଳିନୀ ମାୟାଦେବୀଙ୍କର ସ୍ମୃତି ମନ୍ଦିରର କାର୍ଯ୍ୟ ସଂପୂର୍ଣ୍ଣ ହେବ ଏବଂ ସମ୍ପୂର୍ଣ୍ଣ ହେବ ସୂର୍ଯ୍ୟ ମନ୍ଦିର । ମହାରାଜା ନରସିଂହ ଦେବ କହିଲେ, - ଧନ୍ୟ ତୁମେ । ତୁମ ଭଳି ମହୀୟସୀ ମହିଳାଙ୍କୁ ସହଧର୍ମିଣୀ ଭାବରେ ପାଇ ଧନ୍ୟ ହୋଇଛି ମୁଁ । ତୁମେ ହିଁ ଚିହ୍ନିଛ ମହାରାଣୀ ଏ ଉତ୍କଳର ହୃଦୟକୁ ।



# (୧୬)

ଚୈତ୍ର ମାସର ସଂକ୍ରାନ୍ତି । ମଧ୍ୟାହ୍ନର ପ୍ରଖର ତାତିରେ ପଥରଗୁଡ଼ିକ ଯେମିତି କୁହୁଳୁଛନ୍ତି । ଗଢ଼ା ଯାଇଥିବା ମୂର୍ତ୍ତିଗୁଡ଼ିକ ଦେହରୁ ଯେମିତି ସ୍ୱେଦ ବାରି ବୋହି ଆସିବାର ଭ୍ରମ ସୃଷ୍ଟି କରୁଛି । ସତେ ଅବା ପଥର ଦେହରେ ପ୍ରାଣର ମରୀଚିକା ଝଲସି ଉଠୁଛି । ସେହି କୋଣାର୍କର ମନ୍ଦିର ଗାତ୍ରରେ ବସିଥିବା ପଥର ଦେହରେ ଖୋଦିତ ନାରୀ ମୂର୍ତ୍ତିଟିର କଟିତଟରେ ପିନ୍ଧିଥିବା ଚନ୍ଦ୍ରାହାରଟିର ସୂକ୍ଷ୍ମ କାରୁକାର୍ଯ୍ୟ ନିହଣ ମୁଗୁର ଧରି ସମାପ୍ତି କରିବାକୁ ବସିଛନ୍ତି ନୀଳ ମହାରାଣା । ମଧ୍ୟାହ୍ନର ଉତ୍ତପ୍ତ ସୂର୍ଯ୍ୟକିରଣ ପ୍ରତି ତାଙ୍କର ଖାତିର ନାହିଁ । ଦେହରୁ ବହି ଯାଉଛି ସ୍ୱେଦବାରି । ମୁଣ୍ଡରେ ବାନ୍ଧି ଥିବା ପଗଡ଼ିଟି ଯେମିତି ତାତିରେ ତରଳି ଗଲାଣି । ଏକ ମନ ଏକା ଲୟରେ ଉତ୍ତପ୍ତ ପାଷାଣ ଉପରେ ନିହଣ ମୁନ ଲଗାଇ ତା ମୁଣ୍ଡରେ ହାତୁଡ଼ି ପିଟି ଚାଲିଛନ୍ତି ସେ । ଲୁହାର ନିହଣ ମୁନ ଲାଗି ମୁଗୁନି ପଥର ଦେହରୁ ଅଗ୍ନିକଣିକା ଛିଟିକି ପଡୁଛି । ସାଥି ଶିଳ୍ପୀମାନେ କେତେବେଳରୁ ମନ୍ଦିର ବେଢ଼ାରୁ ଭୋଜନାଳୟକୁ ଚାଲିଗଲେଣି । କାର୍ଯ୍ୟଟିକୁ ଶେଷ କରି ଟିକିଏ ବିଳମ୍ବରେ ଫେରିବେ ନୀଳ ମହାରଣା ।

ଗତକାଲି ସଂଧ୍ୟାରେ ସେ ଖବର ପାଇଥିଲେ ଘରେ ଏକମାତ୍ର ଏଗାର ବର୍ଷର ପୁଅ ତାଙ୍କର ପୀଡିତ । ପୁତ୍ର ଚିନ୍ତାରେ ସାରା ରାତ୍ରି ସେ ଶୋଇ ପାରିନାହାନ୍ତି । ଅନୁମତି ପ୍ରାର୍ଥନା କରିଛନ୍ତି ମନ୍ତ୍ରୀ ସଦାଶିବ ସାମନ୍ତରା ଓ ମୁଖ୍ୟ ଶିଳ୍ପ ବିଶୁ ମହାରଣା ଜରିଆରେ । ମହାରାଣୀ ଅନୁସୂୟାଦେବୀ ଏ କଥା ଜାଣି ତାଙ୍କୁ ଅନୁମତି ପ୍ରଦାନ କରିଛନ୍ତି । ପଥର ଗାତ୍ରର ଅସମ୍ପୂର୍ଣ୍ଣ କାର୍ଯ୍ୟଟିକୁ ସମାପ୍ତ କରି ସୂର୍ଯ୍ୟାସ୍ତ ପୂର୍ବରୁ ସେ ଘରକୁ ବାହୁଡ଼ି ଯିବେ ।

ହେଲେ, ଘର ବାହୁଡା ନୋହିଲା । ଅଂଶୁଘାତରେ ହାତରେ ନିହାଣ ମୁଗୁର ଧରିଥିବା ଅବସ୍ଥାରେ ସେ ସେହି ଉତ୍ତପ୍ତ ବାଲୁକା ରାଶି ଉପରେ ଟଳି ପଡିଲେ । ନିକଟରେ ଏକ ପଥର ପାର୍ଶ୍ୱର ଛାୟାରେ ତାଙ୍କୁ ଅପେକ୍ଷା କରିଥିଲେ ବିଶୁ । ଲକ୍ଷ୍ୟ କରୁଥିଲେ ନୀଳ

ମହାରଣାର ନିହାଣ ମୁନରେ କାରୁକାର୍ଯ୍ୟ ଖୋଦନ କରୁଥିବା ଏକାଗ୍ରତାକୁ। ଧାଇଁ ଆସିଲେ ସେ। ନୀଳ ମହାରଣାଙ୍କୁ ତଳୁ ଉଠାଇ ଟେକି ନେଲେ ତାଙ୍କ କାନ୍ଧରେ। ଚିତ୍କାର କଲେ, ପାଖରେ ଜଗୁଆଳି ଶିବିରରୁ ଜଗୁଆଳିକୁ ଆସିବାକୁ। ନେଇ ଗଲେ ସେହି ଜଗୁଆଳି ଶିବିରକୁ। ହେଲେ ଜଗୁଆଳି ଶିବିରରେ ପହଂଚିଲା ବେଳକୁ ପ୍ରାଣ ପକ୍ଷୀ ନୀଳମହାରଣାଙ୍କର ଉଡ଼ିଯାଇଛି। ସୁରେଇରୁ ପାଣି ଆଣି ମୁହରେ ସିଂଚିଲା ବେଳକୁ ଶରୀରରେ ପ୍ରାଣର ସତ୍ତା ନାହିଁ। ଚିତ୍କାର କଲେ 'ନୀଳ ଭାଇ'। ଆମକୁ ଛାଡି ଚାଲିଗଲୁ। ତାଙ୍କ ଆଖିରୁ ତତଲା ଲୁହ ଗୁଡ଼ିକ ଟପଟପ ହୋଇ ଝରି ପଡ଼ିଲା।

ଖବର ଚାରିଅଡ଼େ ଖେଳିଗଲା। ଶହ ଶହ ଶିଳ୍ପୀ ଓ ଶ୍ରମିକ ସମବେତ ହୋଇ ଅଶ୍ରୁ ତର୍ପଣ କଲେ ନୀଳ ମହାରଣାର ମୃତ ଶରୀର ପାଖରେ। ଚତୁର୍ଦ୍ଦିଗରେ ଶୋକର ଛାୟା ଖେଳିଗଲା। ଉପସ୍ଥିତ ହେଲେ ମହାରାଣୀ ସମେତ ପାତ୍ରମନ୍ତ୍ରୀ, ପାରିଷଦବର୍ଗ। ଉପସ୍ଥିତ ହେଲେ ସଦାଶିବ ସାମନ୍ତରା ଏବଂ ମନ୍ଦିର ନିର୍ମାଣର ସମସ୍ତ ମୁଖ୍ୟବୃନ୍ଦ। ଏହି ଶିଳ୍ପୀ ନୀଳ ମହାରଣା ଯେ ବିଶୁ ମହାରଣାର ଦକ୍ଷିଣ ହସ୍ତ। ଯେତେ କଠିନ ପଥର ହେଲେ ବି ତା ନିହାଣ ମୁନରେ ଯେମିତି ନରମି ଯାଏ। ସତେ କି ତା ହାତରେ ଯାଦୁ ଅଛି। ତା ହାତର ସ୍ପର୍ଶ ପାଇଲେ ପଥର ଫୁଲ ପାଲଟି ଯାଏ। କେବଳ ସେତିକି ନୁହେଁ, ଚୂନ, ବିରି, ଗୁଡ଼ ଓ ରାଶିତେଲର ସଂମିଶ୍ରଣରେ ସେ ଯେମିତି ପଥର ଯୋଡ଼ାଇ ପାଇଁ ଅଠା ତିଆରି କରୁଥିଲେ; ସେମିତି ଅନ୍ୟମାନେ ପାରୁନଥିଲେ। ସେ ଥିଲେ ମୂର୍ତ୍ତିତିଆରି ଓ ପଥର ଯୋଡ଼ାଇ ବିଶାରଦ।

ସେହି ନୀଳ ମହାରଣା ଆଜି ନାହିଁ। ପଡ଼ି ରହିଛି ତାର ନିସ୍ତେଜ ଶରୀର। ନିହାଣ ମୁଗୁର ଧରୁଥିବା ତାର ହାତ ମୁଠା ସବୁଦିନ ପାଇଁ ଶିଥିଳ ହୋଇଯାଇଛି। ଶୋକରେ ଭାଙ୍ଗି ପଡ଼ିଲେ ଶିଳ୍ପୀବୃନ୍ଦ। ସେ ଦିନ ପାଇଁ ବନ୍ଦ ହୋଇଗଲା ମନ୍ଦିର ନିର୍ମାଣ କାର୍ଯ୍ୟ।

ମହାରାଣୀ ଅନୁସୂୟା ଦାୟିତ୍ୱ ନେଲେ ନୀଳ ମହାରଣାର ଶବକୁ ନେଇ ତା ଗାଆଁ ନିମାପଡ଼ାରେ ଶବସଂସ୍କାରର। ତାର ଶୋକ ସନ୍ତପ୍ତ ପରିବାର ବର୍ଗକୁ ନିଜେ ଯାଇ ଜଣାଇବେ ସମ୍ବେଦନା। ନିଜେ ତା ପୀଡ଼ିତ ପୁତ୍ରର ଚିକିତ୍ସା ଭାର ଗ୍ରହଣ କରିବେ।

ଆଶ୍ୱସ୍ତ ହେଲେ ବିଷାଦଗ୍ରସ୍ତ ଶିଳ୍ପୀବୃନ୍ଦ। ଜଣେ କହିଲା, ବିଚରା ପୀଡ଼ିତ ପୁତ୍ରକୁ ଯାଇ ଦେଖି ପାରିଲା ନାହିଁ। ଅନ୍ୟ ଜଣେ କହିଲା - କାହିଁକି ବା ତୁ ଉତପ୍ତ ଖରାରେ ବସି କାମ କରୁଥିଲୁ। ଆଉ ଜଣେ କହିଲା - ସେହି ପଥର ଖଣ୍ଡକର କାମ ଶେଷ କରି ଯିବାକୁ ସେ ଚାହୁଁଥିଲା। ଜଣେ କହିଲା - ତା ଭଳି ସୂକ୍ଷ୍ମ କାରୁକାର୍ଯ୍ୟ ଖୋଦନ କରିବା ବାଲା

ଆମ ଭିତରେ କେହି ନାହିଁ। ଆଉ ଜଣେ କହିଲା - ଆମରି ଭିତରେ ତାଭଳି କେତେ ସୂକ୍ଷ୍ମ, କାରୁକାର୍ଯ୍ୟ କରିବା ଶିଳ୍ପୀ ଅଛନ୍ତି, ହେଲେ, ତାର କାରୁକାର୍ଯ୍ୟ ନିଖୁଣ। ତା କାମକୁ କେହି ବାଛି ପାରିବେ ନାହିଁ। ଜଣେ କହିଲା - ଉପରୁ ଡାକ ଆସିଗଲା, ସେ ଚାଲିଗଲା। ଆମର ମଧ କେତେବେଳେ ଡାକ ଆସିଯିବ, ଆମକୁ ମଧ ଯିବାକୁ ପଡିବ। ସିଏ ଆଗେ ଚାଲିଗଲା - ଆମକୁ ବି ପଛେ ପଛେ ଯିବାକୁ ପଡିବ। ଆଉ ଜଣେ କହିଲା - ସେ ତାର ପରିବାରକୁ ଭସାଇ ଦେଇଗଲା। ସେହି ନିମାପଡ଼ାର ଆଉ ଜଣେ ଶିଳ୍ପୀ କହିଲା - ଆମ ନିମାପଡ଼ା ଅଞ୍ଚଳର ସେ ଥିଲା ଆଲୋକ। ତାରି ଆଲୋକରେ ଆମେ ଆଲୋକିତ ହେଉଥିଲୁ। ଆମ ଅଞ୍ଚଳରେ ଏପରି ଛୋଟବଡ଼ ମନ୍ଦିର ନାହିଁ - ଯେଉଁ ମନ୍ଦିରରେ ତାର ହାତ ବାଜିନାହିଁ, ତା ନିହାଣ ମୁନର ସ୍ପର୍ଶ ଲାଗିନାହିଁ। ଆମ ଅଞ୍ଚଳଟିକୁ ସିଏ ଅନ୍ଧକାର କରି ଦେଇଗଲା। ଜଣେ କହିଲା - ଆମ୍ଭେମାନେ ତାର ଶିଷ୍ୟ। ଯେଉଁଠି ବଡ଼କାମ ଆମ ବିଶୁଭାଇ ହାତକୁ ନେଇଛନ୍ତି - ସେ ଆମ ଗୁରୁଙ୍କୁ ସେଠାକୁ ନିଶ୍ଚୟ ଆମନ୍ତ୍ରଣ କରନ୍ତି। ଏହି ସାତବର୍ଷ ଭିତରେ ସେ ଏହି ମନ୍ଦିରର ଯେତୋଟି ପଥର ଦେହରେ ହାତ ଦେଇଛନ୍ତି - ସେ ଗୁଡ଼ିକ ଦେଖିଲେ ଜଣା ପଡ଼ିଯିବ। ସେ ଗୁଡ଼ିକରେ ଆମ ଗୁରୁଙ୍କର ହାତ ବାଜିଛି।

ଖଣ୍ଡିଏ ଅନୁଚ୍ଚ ଅଖୋଦିତ ପଥର ଉପରେ ବସି ବିଶୁ ମହାରଣା ଚାହିଁ ରହିଥିଲେ, କୂଳରେ ଘୋ ଘୋ କରି ମଥା ପିଟୁଥିବା ସମୁଦ୍ର ଢ଼େଉଗୁଡ଼ିକୁ। ତାଙ୍କୁ ଜଣା ପଡୁଥିଲା ନୀଳ ମହାରଣାର ଅକାଳ ବିୟୋଗରେ ସେମାନେ ହା ହା କାର କରୁଛନ୍ତି। ସମୁଦ୍ର ବି ଶୋକରେ ହାହାକାର ତୋଳୁଛି।

ମହାରାଣୀ ସଜ୍ଜିତ ଫୁଲର ଶବାଧାରରେ ନୀଳ ମହାରଣାଙ୍କର ଶବକୁ ସାଥିରେ ନେଇ ଶବ ଶୋଭା ଯାତ୍ରାରେ ବାହାରି ଯାଇଛନ୍ତି - ପାତ୍ର, ମନ୍ତ୍ରୀ, ପ୍ରଜାପାଟକଙ୍କ ଗହଣରେ ତାର ଗାଁକୁ। ସୂର୍ଯ୍ୟ ବୁଡି ଯାଉଛନ୍ତି ବାରୁଣୀ ଦିଗ୍‌ବଳୟରେ। ଶୋକର ଲୋହିତ ଛଟା ବିଂଚି ହୋଇ ପଡିଛି ସମୁଦ୍ର ଜଳରେ। ନୀଳ ଆକାଶରେ ଖଣ୍ଡ ଖଣ୍ଡ ହୋଇ ଭାସୁଥିବା ମେଘମାଳା ଦେହରେ। ନଦୀ, ବନ, ଝରଣା, ନଗର, ଜନପଦର ଛାତିରେ ସେହି ଶୋକର ସଂକେତ।

କଳରବ କରି ବାହୁଡ଼ି ଯାଉଛନ୍ତି ନୀଡ଼ ଫେରନ୍ତା ପକ୍ଷୀଦଳ। ସତେ ଅବା କାନେ କାନେ କହି ଯାଉଛନ୍ତି - ଶ୍ରେଷ୍ଠ ଶିଳ୍ପୀ ନୀଳ ମହାରଣା ଆଉ ନାହିଁ। ନୀଳ ମହାରଣା ଅମର ରହୁ। ନୀଳ ମହାରଣାର ସଜ୍ଜିତ ଶବାଧର ଥୁଆ ହୋଇଛି ପାଟହସ୍ତୀ ଉପରେ।

ପଛରେ ବସିଛନ୍ତି ମହାରାଜା ନରସିଂହ ଦେବଙ୍କ ବଦଳରେ ମହାରାଣୀ ଅନୁସୂୟା। କେବଳ ଗୋଟିଏ ଜୟଧ୍ୱନି ପଡୁଛି - ଶ୍ରେଷ୍ଠ ଶିଳ୍ପୀ ନୀଳ ମହାରଣା ଅମର ରହନ୍ତୁ। ଶହ ଶହ ଶୋଭା ଯାତ୍ରାରେ ଚାଲିଥିବା ମଣିଷଙ୍କ କଣ୍ଠ ଥରାଇ ବାହାରି ଆସୁଥିବା ଶବ୍ଦରେ କମ୍ପି ଉଠୁଛି ଚତୁର୍ଦ୍ଦିଗ।

ଶୋକ ସନ୍ତପ୍ତ ହୃଦୟରେ ରାସ୍ତା କଡ଼େ କଡ଼େ ଛିଡା ହୋଇଛନ୍ତି ଶହ ଶହ ନରନାରୀ ଶେଷ ଦର୍ଶନ କରିବା ପାଇଁ ତାଙ୍କର ପ୍ରାଣପ୍ରିୟ ଶିଳ୍ପୀକୁ। ଶିବ ଚାଲି ଯାଇଛି କେବଳ ଶବହିଁ ଆସିଛି ଦର୍ଶନ ଦେବା ପାଇଁ। କୋଣାର୍କ ନିର୍ମାଣ ଶେଷବେଳକୁ ଏମିତି କେତେ ଶିବ ବାହୁଡ଼ି ଯିବେ ତାଙ୍କ ଶରୀର ଛାଡି ଦେଇ।

ଶବ ଶୋଭାଯାତ୍ରା ଆରମ୍ଭରୁ ମନ୍ଦିର ପ୍ରାଙ୍ଗଣରେ ଅଶ୍ରୁଳ ନୟନରେ ସ୍ଥାଣୁ ହୋଇ ଛିଡା ହୋଇଥିଲେ କମଳ ମହାରଣା। ଏକ ଗାଁରୁ ଏକା ସାଥିରେ ଆସିଥିଲେ ସେମାନେ, ସମ୍ପର୍କୀୟ କକା ତାର ଶବ ହୋଇ ଫେରୁଛି ଗାଁକୁ। କମଳ ମହାରଣାର ଗଣ୍ଡଦେଶରୁ ଝରି ଯାଉଛି ତତଲା ଅଶ୍ରୁଧାର।

ବିଦାୟୀ ଜୀବନ ଦୁଃଖପୂର୍ଣ୍ଣ। ବିବାହ ପରେ ବାହୁଡି ଯାଇଥିଲା ବାପ ଘରକୁ କମଳର ପ୍ରିୟତମା ବାଳିକା ବଧୂ ଚନ୍ଦ୍ରଭାଗା। ବିବାହର ବାସର-ଶଯ୍ୟାରେ ଦେଖିଥିଲା ସେ ସେହି ସୁନ୍ଦର ଗୋଲାପ କଳିକାଟିକୁ। ସମ୍ପୂର୍ଣ୍ଣ ପ୍ରସ୍ଫୁଟିତ ହେବାକୁ ଆହୁରି ବାକି ଅଛି। ମାତ୍ର ମୋହିତ ହୋଇଥିଲା ତାକୁ ଦେଖି। କଳ୍ପନା ଚକ୍ଷୁରେ ସେ ଦିନ ସେ ଦେଖିଥିଲା ସୌନ୍ଦର୍ଯ୍ୟରେ ତାର ତନୁ ବଲ୍ଲରୀ ଝଲସି ଉଠିବ। ବାପଘରକୁ ବାହୁଡ଼ି ଯାଇଥିଲା ଚନ୍ଦ୍ରଭାଗା

ସେଦିନ ଯାତ୍ରା ପଥରେ ଶ୍ୱଶୁର ଗାଁର ପଦ୍ମପୋଖରୀ ହୁଡା ବାଟ ଦେଇ ତାର ସାଥୀ ଶିଳ୍ପୀଟି ସହିତ ଯାଉଥିଲା କୋଣାର୍କକୁ କମଳ ମହାରଣା। ଦେଖିଥିଲା ନୟନ ପୁରାଇ ସଦ୍ୟସ୍ନାତା ପ୍ରାଣପ୍ରିୟା ଚନ୍ଦ୍ରଭାଗାକୁ ଅଶ୍ୱଥଗଛର ଆଢୁଆଳରୁ। ବାରି ଭିଜା ବସନ ଉପରକୁ ଫୁଟି ଦିଶୁ ଥିଲା ତାର ଉଦ୍‌ଗତ ଯୌବନ। ଦେଖୁଥିଲା ସହସାଥୀ ସହିତ ତାର ଲାବଣ୍ୟମୟ ଶରୀରରେ ଫୁଟି ଉଠୁଥିବା ସଦ୍ୟ ଯୌବନର ଢେଉଗୁଡ଼ିକ। କୃଷ୍ଣସର୍ପ ପରି ପଛରେ ଲୋଟି ପଡିଛି ଜଂଘ ପର୍ଯ୍ୟନ୍ତ ବାରିସିକ୍ତ ବେଣୀ। ମୃଣାଳନିନ୍ଦୀ ବାହୁରେ କାଖର ପାଣିଭର୍ତ୍ତି କଳସୀକୁ ଆବେରି ଧରିଛି ସେ। ତାର ଅଲକ୍ତ ପଦ୍ମ ପାଦରେ ରିମ୍‌ଝିମ୍ କରୁଛି ରୁପାର ପାଉଁଜୀ।

କମଳ ମହାରଣାଙ୍କୁ ଭାଗ୍ୟ ତାର ସହଯୋଗ କରୁନାହିଁ, ତାପ୍ରାଣର ପ୍ରେୟସୀଙ୍କୁ ଏକାନ୍ତରେ ମନ ପୁରାଇ ଦେଖିବାକୁ। ସେଥିପାଇଁ ସେ ସେହି ଅପୂର୍ବ ମୂର୍ତ୍ତିଟିକୁ ଆଙ୍କି ନେଇଛି ତାର ହୃଦୟ ଭିତରେ। ଜୀବନରେ କେବେ ମିଳନର ସୁଯୋଗ ଆସିବ। ଅସୀମ ଅପେକ୍ଷା କରିବାକୁ ପଡ଼ିବ ତାକୁ। କୋଣାର୍କ ଗାତ୍ରରେ ନିହାଣ ମୁଗୁର ନେଇ ଯେତେବେଳେ ନାରୀ ମୂର୍ତ୍ତି ଗଢ଼େ, ସେତେବେଳେ ସେ ମନକୁ ମନ କହେ ହେ ମୋର ପ୍ରାଣର ପ୍ରେୟସୀ, ତୁମକୁ ଏହି ପଥର ଦେହରେ ଦେଖିବାକୁ ଚାହେଁ ଚିର ହାସ୍ୟମୟୀ, ଚିର ଲାସ୍ୟମୟୀ ଭାବରେ । ନୀଳ ମହାରଣା ଭଳି ତୁମେ ହଜି ଯିବ ନାହିଁ।

ପ୍ରସ୍ଫୁଟିତ ଗୋଲାପ ପରି ବିକଶିତ ଯୌବନ ନେଇ ଶଶୁର ଘରକୁ ଫେରିଛି ଚନ୍ଦ୍ରଭାଗା। ଆସି ଦେଖୁଛି ପତିଦେବତା ଘରେ ନାହାନ୍ତି। ଶୁଣିଛି ସେ ଯାଇଛନ୍ତି ସୂର୍ଯ୍ୟମନ୍ଦିର ନିର୍ମାଣ କରିବାକୁ କୋଣାର୍କକୁ।

ଘରେ ଶାଶୁ ଶଶୁର, ନଣନ୍ଦ ଓ ସାନ ଦିଅର ଚନ୍ଦ୍ରଭାଗାକୁ ଆନନ୍ଦରେ ସ୍ୱାଗତ ଜଣାଇଛନ୍ତି। କମଳ ଯିବା ଦିନୁ ଘର ଶୂନ୍ୟ ଶୂନ୍ୟ ଜଣା ପଡୁଥିଲା। ବୋହୂ ଚନ୍ଦ୍ରଭାଗା ଆସିବାରୁ ଘର ଯେମିତି ପୁରି ଉଠିଛି। ସମଗ୍ର ଗାଁ ଟିରେ ଚନ୍ଦ୍ରଭାଗାର ସୌନ୍ଦର୍ଯ୍ୟର ପ୍ରଶଂସା। ଖଣ୍ଡ ମଣ୍ଡଳରେ ଏମିତି ସୁନ୍ଦରୀଟିଏ ଜନ୍ମ ହୋଇ ନଥିବ। କୋଟିକରେ ଗୋଟିଏ। ଗୋଟିଏ ଚାଉଳରେ ଗଢ଼ା। ସୌଭାଗ୍ୟ କରିଥିଲେ ଏମିତି ସୁନ୍ଦରୀ ବହୂଟିଏ ମିଳେ। ହେଲେ ଏହି ସୌଭାଗ୍ୟ ଭୋଗ କରିବାକୁ ଯେମିତି ଚନ୍ଦ୍ରଭାଗା ଭାଗ୍ୟରେ ନାହିଁ। ସେ ଦିନ ଗାଁରେ ପ୍ରଚାରିତ ହୋଇଗଲା କୋଣାର୍କରେ କାମ କରୁ କରୁଁ କମଳର ମୃତ୍ୟୁ ଘଟିଛି। ଚନ୍ଦ୍ରଭାଗା ଆଖି ଆଗରେ ଅନ୍ଧାର ଘୋଟି ଆସିଲା। ଘରର ସମସ୍ତେ ଏ ଖବରରେ କ୍ରନ୍ଦନରେ ଫାଟି ପଡ଼ିଲେ। ଘର କୋଣରେ ରହି ନୀରବରେ ଅଶ୍ରୁ ଢ଼ାଳିଲା ଚନ୍ଦ୍ରଭାଗା। ତାର ଆଖିରୁ ଯେମିତି ତତଲା ଲହୁ ସବୁ ଛାତି ଫଟାଇ ଝରି ଯାଉଛି।

ଆରମ୍ଭ ହୋଇଗଲା - ସେହି ଅଲକ୍ଷଣୀ ଘରେ ପ୍ରବେଶ ପରେ ସେମାନଙ୍କର ଘର ଉଜାଡ଼ ହୋଇଗଲା। ସେମାନେ ତାର କୃଷ୍ଣ କୁନ୍ତଳର ବେଣୀଟିକୁ ଧରି ଘୋଷାରି ଘୋଷାରି ତାକୁ ଘରୁ ବିଦା କରି ଦେଲେ। ଅବଶ୍ୟ ସାନ ଦେବର ତାଙ୍କର କିଛି ଦୋଷ ନାହିଁ ବୋଲି ସମର୍ଥନ କରୁଥିଲେ ବି ତା କଥା କେହି ଶୁଣିଲେ ନାହିଁ। ବରଂ ତା ଉପରେ ଦୋଷାରୋପ କରାଗଲା - ବୋହୂର ତା ସହିତ ଅବୈଧ ସମ୍ପର୍କ ଅଛି।

ଅବଶ୍ୟ ଯେତେବେଳେ କମଳ ମହାରଣା ପରିବର୍ତ୍ତେ ନୀଳ ମହାରଣାର ଶବ ଗାଁରେ ଆସି ପହଞ୍ଚିଲା - ସେତେବେଳେ ସେମାନେ ଆଉ ଚନ୍ଦ୍ରଭାଗାକୁ ଖୋଜି ପାଇ ନାହାନ୍ତି ।

କମଳ ମହାରଣା ଏ ଖବର ପାଇଛି - ତା ଆଖି ଆଗରେ ପୂର୍ବରୁ ସେ ଚନ୍ଦ୍ରଭାଗା ଯେଉଁ ଛବି ଆଙ୍କି ନେଇଛି - ସେହି ଛବିକୁ ସେ ସାଇତି ରଖିଛି ହୃଦୟ ଭିତରେ । ଚନ୍ଦ୍ରଭାଗାକୁ ଖୋଜିବାକୁ ତାକୁ ସମୟ ସୁଯୋଗ ମିଳି ନାହିଁ । ସେ କେବଳ ତାର ନିହାଣ ମୁନରେ ସେହି ଚନ୍ଦ୍ରଭାଗାର ଅବୟବକୁ ମନ୍ଦିର ଗାତ୍ରରେ ରୂପାୟିତ କରିବାକୁ ଚେଷ୍ଟା କରିଛି । ନୃତ୍ୟରତା ନାରୀ ମୂର୍ତ୍ତି ଗଢ଼ିବାରେ ଯୁବଶିଳ୍ପୀ କମଳ ମହାରଣାର ସୁନାମ ରହିଛି । ଉତ୍କଳର ସେ ମଧ୍ୟ ଜଣେ ସ୍ୱନାମ ଧନ୍ୟ ଯୁବଶିଳ୍ପୀ ।



# (୧୭)

ମନ୍ଦିର ଗାତ୍ରରେ ଖୋଦିତ ହୋଇଥିବା ବହୁ ମୂର୍ତ୍ତିଗୁଡ଼ିକ ଏବେ ବାହାରକୁ ଦେଖା ଯାଉନାହିଁ। ବାଲିରେ ପୋତି ହୋଇ ଯାଇଛି। ମନ୍ଦିର ନିର୍ମାଣ କାର୍ଯ୍ୟ ଶେଷ ହେଲାପରେ ସେ ସବୁ ଦେଖାଯିବ। ତେବେ ମହାରାଜାଙ୍କ ମନ ଭିତରେ ସନ୍ଦେହର ସୂତ୍ରପାତ ହୋଇଛି। ସେ ଦିନ ମହାରାଣୀ ଅନୁସୂୟା କହୁଥିଲେ - ମନ୍ଦିର ଗାତ୍ରରେ ଶିଳ୍ପୀମାନେ କାମ ମୂର୍ତ୍ତି ସ୍ଥାପନ କରିଛନ୍ତି। ତାକୁ ନିଷିଦ୍ଧ କରି ଶିଳ୍ପୀମାନଙ୍କୁ ଦଣ୍ଡିତ କରିବାର ନିର୍ଦ୍ଦେଶ ଦେବାରୁ - ସେମାନେ ସମୂହ ଆନ୍ଦୋଳନ କରିଥିଲେ। କାମ ମୂର୍ତ୍ତି ଓ ମୈଥୁନ ମୂର୍ତ୍ତି ଦେଖି ଦର୍ଶକବୃନ୍ଦ ନିନ୍ଦା ଅପବାଦ ଦେବେ ନାହିଁତ ? ଉତ୍କଳର କଳା ଉନ୍ନତ ବୋଲି ଦର୍ଶାଇବାକୁ ଯାଇ ଏ ଯେଉଁ ସୂର୍ଯ୍ୟମନ୍ଦିରର ସ୍ୱପ୍ନ ସେ ଦେଖୁଥିଲେ - ସମଗ୍ର ବିଶ୍ୱର ବିସ୍ମୟ ହେବ କୋଣାର୍କର ଏହି ସୂର୍ଯ୍ୟ ମନ୍ଦିର - ସେ ସବୁ ସ୍ୱପ୍ନରେ ମିଳାଇ ଯିବ ନାହିଁ ତ ? ଏତେ ସୂକ୍ଷ୍ମ କାରୁକଳାର ମୂର୍ତ୍ତି ଖନନ କରାଯାଉଛି - ସେହି କାମ କଳାର ମୂର୍ତ୍ତି, ମୈଥୁନର ମୂର୍ତ୍ତି ନ ହେଲେ କ'ଣ ହୋଇ ନଥାନ୍ତା।

ମନେ ମନେ ଭାବୁଥିଲେ ମହାରାଜ ନରସିଂହ ଦେବ। କାହାକୁ ପଚାରି ବୁଝିବେ ଏ ଶିଳ୍ପ ଶାସ୍ତ୍ରର ତତ୍ତ୍ୱ। ସେ ଦିନ ପୂର୍ବାହ୍ନରେ ସ୍ୱୟଂ ମହାରାଜା ମହାରାଣୀଙ୍କୁ ସଂଗରେ ଧରି ଯାଇଥିଲେ ମନ୍ଦିର ନିର୍ମାଣ କାର୍ଯ୍ୟ ପରିଦର୍ଶନ କରିବା ପାଇଁ। ଏକୁଟିଆ ଏକଦା ମଧ୍ୟ ରାତ୍ରିର ଚନ୍ଦ୍ରାଲୋକରେ, ପଥର ଦେହରେ ହାତ ବୁଲାଇ ଖୋଜିଥିଲେ ପଥର ଦେହର ମୂର୍ତ୍ତିର ଆତ୍ମା ଗୁଡ଼ିକୁ।

ଆଜି ସେ ସାଥିରେ ଶିଳ୍ପ ଶାସ୍ତ୍ରର ଉପଦେଷ୍ଟା ବଂଧୁ ରଥକୁ ନେଇ ମହାରାଣୀ ଅନୁସୂୟାଙ୍କ ସହିତ ଯାଇଛନ୍ତି ବିଶୁ ମହାରଣାଙ୍କୁ ଭେଟିବାକୁ। ମନ୍ଦିର ବେଢ଼ା ଭିତରକୁ ପ୍ରବେଶ କରି ଦେଖି ଦେଖି ଚାଲିଛନ୍ତି ମନ୍ଦିର ଗାତ୍ରରେ ଖୋଦନ କରୁଥିବା ପ୍ରତ୍ୟେକ ଶିଳ୍ପୀଙ୍କ ପାଖକୁ। ନଦୀ ଓ ସମୁଦ୍ର ଉପକୂଳରେ ଛାଉଣିମାନଙ୍କରେ କାର୍ଯ୍ୟରତ ମଧ୍ୟ ଶହ

ଶିଳ୍ପୀବୃନ୍ଦ। ସେମାନଙ୍କ କାର୍ଯ୍ୟ ସେ ପରେ ପରିଦର୍ଶନ କରିବେ। ମନ ଭିତରେ ଜାଗିଥିବା ପ୍ରଶ୍ନର ଉତ୍ତର ପାଇବା ପାଇଁ, ମୁଖ୍ୟ ଶିଳ୍ପୀ ବିଶୁ ମହାରଣାଙ୍କ ପାଖକୁ ଆଗେଇ ଚାଲିଛନ୍ତି। ଯାହାଙ୍କ ଉପରେ ସମଗ୍ର ମନ୍ଦିର ନିର୍ମାଣର ପରିକଳ୍ପନା ଓ ନିର୍ମାଣ ଭାର ସେ ନ୍ୟସ୍ତ କରିଛନ୍ତି। ସେହି ବିଶୁ ମହାରଣାଙ୍କ ନିଷ୍ଠା ଓ ଦକ୍ଷତା ଉପରେ ମହାରାଜାଙ୍କର ଅଗାଧ ବିଶ୍ୱାସ ରହିଛି।

ମହାରାଜା ମହାରାଣୀ ଓ ବଂଧୁ ରଥ ବିଶୁ ମହାରଣାଙ୍କ ପଛରେ ଆସି ଛିଡ଼ା ହୋଇଛନ୍ତି। ବିଶୁ ମହାରଣା ଜାଣନ୍ତି - କେହି ଜଣେ ପଛରେ ଆସି ଛିଡ଼ା ହୋଇଛି। ଆଉ କେହି ନୁହେଁ ସେ ପାନରା ହୋଇଥିବ। ସେ ତାଙ୍କ କାର୍ଯ୍ୟରେ ନିହାଣ ମୁଗୁର ନେଇ ବ୍ୟସ୍ତ ଥିଲା ବେଳେ, କେହି ତାଙ୍କର ଧ୍ୟାନ ଭଂଗ କରନ୍ତି ନାହିଁ। କେବଳ ପାନରା ଆସେ ପାନ ଦେବାକୁ। ପାନ ଖାଇବା ଅଭ୍ୟାସ ତାଙ୍କର ବିବାହ ପରେ ବଢ଼ି ଯାଇଛି। ପାଟିରେ ପାନ ଚୋବାଇଲେ ମନର ଏକାଗ୍ରତା ବଢ଼ିବା ସହିତ ବୁଦ୍ଧି ତୀକ୍ଷ୍ଣ ହୁଏ। ପାଟି ଆମ୍ବିଳା ଆମ୍ବିଳା ହୁଏ ନାହିଁ।

ପାନ ଓଡ଼ିଆମାନଙ୍କର ଆଦରର ବସ୍ତୁ। ବନ୍ଧୁ ସତ୍କାରର ପ୍ରଥମ ଓ ଶେଷ ବ୍ୟବସ୍ଥା ହେଉଛି ପାନ। ପାନ ସଜ ରଖିବା ପାଇଁ ବଟୁଆର ବ୍ୟବହାର ଏବେ ବି ଘରେ ଘରେ ପ୍ରଚଳିତ ଅଛି। ରାଜା ମହାରାଜାମାନେ ଭୋଜନ ପରେ ତାମ୍ବୁଳ ବା ପାନ ଖଣ୍ଡିଏ ଚୋବାଇ ଥାନ୍ତି - ଯେଉଁଥିରେ କି ପାନ ମସଲାରେ କସ୍ତୁରୀ ମିଶା ଯାଇଥାଏ; ମୁଖ ମହମହ ବାସିବ ବୋଲି। ପାନ ପାଇଁ ଓଡ଼ିଶା ବିଖ୍ୟାତ। ଓଡ଼ିଶାର ପାନପତ୍ର ଏବେ ବି ଦେଶ ବିଦେଶକୁ ରପ୍ତାନୀ ହୁଏ।

ପଦ୍ମାଳୟା ବାପଘରୁ ଯେତେବେଳେ ଆସିଲେ, ସେତେବେଳେ ସାଥିରେ ସ୍ୱାମୀଙ୍କ ପାଇଁ ନେଇ ଆସିଥିଲେ ପାନବଟୁଆ। ଏହି ପାନବଟୁଆରୁ ସାଇତା ହୋଇଥିବା ପାନପତ୍ର, ଚୂନ ଓ ମସଲା ବାହାର କରି କେବେ କେବେ ସ୍ୱାମୀଙ୍କୁ ପରଶୁଥିଲେ ସେ। ସେଇଠୁ ଅଭ୍ୟାସ ହୋଇ ଯାଇଛି ବିଶୁଙ୍କର। ବାସର ରାତିରେ ପଦ୍ମାଳୟା ବିଶୁଙ୍କୁ ବାଢ଼ି ଦେଇଥିଲେ ସୁଗନ୍ଧି ପାନଖିଲେ। କେବଳ ସେତିକି ନୁହେଁ ବେଣୁଧରଙ୍କଠାରେ ପ୍ରତ୍ୟହ ଚୂନବିହୀନ ଖିଲେ ପାନ ଛୋଟ ଥାଳିଆରେ ସେ ଭୋଗ ଲଗାଉଥିଲେ।

ସେ ଦିନ ବିଶୁ ଖୋଦନ କରୁଥିଲେ ମନ୍ଦିର ଗାତ୍ରରେ ସୂକ୍ଷ୍ମ ଶିଳ୍ପକଳା। ପଛରେ ପାନରା ଛିଡା ହୋଇଛି ବୋଲି ଭାବି, ବାମ ହସ୍ତରେ ନିହାଣ ମୁଗୁର ଧରି ପଛକୁ ଦକ୍ଷିଣ ହସ୍ତଟି ବଢ଼ାଇ ଦେଲେ।

ବିଶୁଙ୍କର ଏ ଅଭ୍ୟାସଟି ମହାରାଣୀ ଅନୁସୂୟାଙ୍କୁ ଜଣାଥିଲା। ସେ ନିର୍ମାଣ କାର୍ଯ୍ୟ ପରିଦର୍ଶନ ବେଳେ ବିଶୁଙ୍କର କାର୍ଯ୍ୟରେ ଗଭୀର ମନୋନିବେଶ କଥା ଲକ୍ଷ୍ୟ କରିଛନ୍ତି। କାମ କଲାବେଳେ ସେ ପଛକୁ ଫେରି ଅନାନ୍ତି ନାହିଁ। ପାନରା ତାଙ୍କ ହାତରେ ପାନ ଗୁଂଜି ଦିଏ।

ମହାରାଣୀ ସଂଗେ ସଂଗେ ମହାରାଜାଙ୍କ ପାଇଁ ହାତରେ ଧରି ବୁଲୁଥିବା ସୁବର୍ଣ୍ଣ ବଟୁଆରୁ ପାନଖିଲେ ବାହାର କରି ବିଶୁଙ୍କ ହାତରେ ଗୁଂଜି ଦେଲେ। ବିଶୁ ପାନ ଖିଲଟିକୁ ଧରି ନେଇ ପାଟିରେ ପୁରାଇ ପୁଣି ବାମହସ୍ତରୁ ମୁଗୁରଟିକୁ ଦକ୍ଷିଣ ହସ୍ତକୁ ନେଇ କାମରେ ଲାଗିଗଲେ। ହେଲେ, ପାଟିରେ ପାନଚୋବାଇବାକୁ ଆରମ୍ଭ କଲାବେଳକୁ ପାନଖିଲଟିର ସ୍ୱାଦୁ ଓ ମହ ମହ ବାସନା ତାଙ୍କ ନିମଗ୍ନତାକୁ ଭଙ୍ଗ କଲା। ଏ ପାନ ପାନରାର ନୁହେଁ। ସେ ପଛକୁ ଫେରି ଅନେଇଲେ। ଦେଖିଲେ ରାଜ, ରାଣୀ ଓ ବନ୍ଧୁରଥ ଛିଡ଼ା ହୋଇଛନ୍ତି। ବିଶୁ ଉଠି ସେମାନଙ୍କୁ ସମ୍ମାନ ଜଣାଇବାରେ ହେଳା କଲେ ନାହିଁ। ସେମାନେ କିନ୍ତୁ ଭାବି ଆଶ୍ଚର୍ଯ୍ୟ ହେଉଥିଲେ ବିଶୁର କାର୍ଯ୍ୟ କରୁଥିବା ବେଳର ନିମଗ୍ନତା କଥା।

ତାପରେ ବଂଧୁରଥ ମହାରାଜାଙ୍କୁ କହିଲେ, ଦେଖୁଛନ୍ତି ଆପଣେ, ଆମ ଉତ୍କଳୀୟ ଶିଳ୍ପୀଙ୍କର କାର୍ଯ୍ୟରେ ଏକାଗ୍ରତା। ଏକାଗ୍ରତା ହେଉଛି କାର୍ଯ୍ୟ ସିଦ୍ଧିର ମୂଳକାରଣ, କହିଲେ, ମହାରାଣୀ ଅନୁସୂୟା। ସେଥିପାଇଁ ତ ଉତ୍କଳର ଶିଳ୍ପୀମାନଙ୍କର କାରୁକଳାର ପ୍ରଶଂସା ସର୍ବତ୍ର। ପ୍ରୀତ ହୋଇ ମହାରାଜା ବିଶୁକୁ ପ୍ରଶ୍ନ କଲେ - କୁହ ଶିଳ୍ପୀ ଶ୍ରେଷ୍ଠ, ତୁମେ ତ ସମଗ୍ର ମନ୍ଦିର ନିର୍ମାଣର ଦାୟିତ୍ୱ ବହନ କରିଛ, ତୁମରି ପରିକଳ୍ପନାର ଏ ମନ୍ଦିର। ଏ ମନ୍ଦିର ଗାତ୍ରରେ କାହିଁକି କାମକଳା ଯୌନ ଚିତ୍ରମାନ ଖୋଦନ କରିଛ ? ଦର୍ଶକମାନେ ଏପରି ଅଶ୍ଳୀଳ ଚିତ୍ର ଦେଖିଲେ, ନିନ୍ଦିବେ ନାହିଁ ଉତ୍କଳର ଶିଳ୍ପୀମାନଙ୍କୁ ? କଳଙ୍କ ଲାଗିବ ନାହିଁ - ରାଜାଙ୍କ ନାମରେ ? ଯିଏ କି, ଏପରି ଅଶ୍ଳୀଳ ଚିତ୍ର ଏ ମନ୍ଦିର ଗାତ୍ରରେ ନିର୍ମାଣ କରିବାକୁ ପ୍ରଶ୍ରୟ ଦେଇଛନ୍ତି।

ମହାରାଣୀଙ୍କ ଠାରୁ ଶୁଣିଲି - ଏପରି ଅଶ୍ଳୀଳତାକୁ ପରିହାର କରିବା ପାଇଁ ଯେତେବେଳେ ନିର୍ଦ୍ଦେଶ ଦିଆ ଯାଇଥିଲା ଓ ନିର୍ମାଣକାରୀକୁ ଦଣ୍ଡିତ କରିବାର ଆଜ୍ଞା ଯେତେବେଳେ ଜାରୀ ହେଲା - ସେତେବେଳେ ଶିଳ୍ପୀ ବୃନ୍ଦ ଆନ୍ଦୋଳନ କଲେ। ମନ୍ଦିର ନିର୍ମାଣ କାର୍ଯ୍ୟ ବନ୍ଦ ହୋଇଗଲା। ଅଗତ୍ୟା ମହାରାଣୀ ସେ ଆଦେଶ ପ୍ରତ୍ୟାହାର କଲେ। ଏ ସବୁ କ'ଣ ଶିଳ୍ପୀ ଶ୍ରେଷ୍ଠ ତୁମରି ଜ୍ଞାତସାରରେ ହୋଇଛି ? ଏ ସବୁ କ'ଣ ଶିଳ୍ପଶାସ୍ତ୍ର ସମ୍ମତ ?

କିଛି ସମୟ ପାଇଁ ନୀରବ ହୋଇଗଲେ ବିଶୁ ମହାରଣା। ତାପରେ ବିନମ୍ର ଭାବରେ କହିଲେ, ଏହି ବିଶୁ ମହାରଣା ବେଣୁଧରଙ୍କ କୃପା ଲାଭ କରିଛି। ତାଙ୍କରି କୃପାରୁ ଏ ମନ୍ଦିରର ପରିକଳ୍ପନା। ଏ ମନ୍ଦିର ସଂପୂର୍ଣ୍ଣ ଭାବରେ ଶିଳ୍ପ ଶାସ୍ତ୍ରାନୁସାରେ ନିର୍ମିତ ହେବାକୁ ଯାଉଛି। ଆପଣ ବା ଅନ୍ୟମାନେ ଯାହାକୁ ଅଶ୍ଳୀଳ ବୋଲି କହୁଛନ୍ତି - ସେହି ଚିତ୍ରଗୁଡ଼ିକ ଦେଖିଲେ ସେମାନେ ମୁଗ୍ଧ କେବଳ ହେବେ ନାହିଁ, ଅନୁଧ୍ୟାନ କରି ଜାଣିବେ ଏ ଚିତ୍ରରେ ସୃଷ୍ଟିର ମୂଳ ତତ୍ତ୍ୱ ନିହିତ ଅଛି। ଏଥିପାଇଁ ମନ୍ଦିର ଗାତ୍ରରେ କାମ କଳାର ମୂର୍ତ୍ତିମାନ ସ୍ଥାନ ପାଇବା ଶାସ୍ତ୍ରସମ୍ମତ। ଏ ମନ୍ଦିର ବିଶ୍ୱର ସମସ୍ତ ଦେବତାଙ୍କ ପାଇଁ, ଦାନବଙ୍କ ପାଇଁ, ଯକ୍ଷ, ରକ୍ଷ, ଗନ୍ଧର୍ବ ଓ ମାନବଙ୍କ ପାଇଁ କେବଳ ନୁହେଁ, ପଶୁପକ୍ଷୀ, ଭୂତ ଓ ପ୍ରେତ, ପିଶାଚଙ୍କ ପାଇଁ ମଧ୍ୟ। ଶିଳ୍ପଶାସ୍ତ୍ର କହେ ଦେବତାମାନେ ପୂଜାର୍ଚ୍ଚନା, ଧ୍ୟାନ ଓ ଧର୍ମାଲୋଚନାର ମୂର୍ତ୍ତିମାନ ଦେଖି ସନ୍ତୁଷ୍ଟ ହୁଅନ୍ତି। ଦାନବମାନେ ଭୟାବହ ବା ଭୟଙ୍କର ମୂର୍ତ୍ତି ଦେଖି ତୃପ୍ତି ଲାଭ କରନ୍ତି, ଯକ୍ଷମାନେ କେବଳ ତାଙ୍କର ମୂର୍ତ୍ତି ପଶୁ ପକ୍ଷୀ ସେମାନଙ୍କର ଯୂଥ ବା ଦଳବଦ୍ଧତା ଦେଖି ତୃପ୍ତ ହୁଅନ୍ତି। ଖୁସି ହୁଅନ୍ତି ଭୂତ, ପ୍ରେତ, ପିଶାଚମାନେ ମନ୍ଦିର ଗାତ୍ରର ଏହି ମୈଥୁନ ଚିତ୍ରଗୁଡ଼ିକୁ ଦେଖି। ଆମେ ଯାହାକୁ ଅଶ୍ଳୀଳ କହୁଛୁ - ତା ପଛରେ ଜୀବଜଗତ ସୃଷ୍ଟିର କାରଣ ନିହିତ ଅଛି। ମନ୍ଦିରକୁ ମଧ୍ୟ ସୁରକ୍ଷା ଦେବା ପାଇଁ ନିର୍ମାଣ ହୋଇଛି ଛଅଟି ଭୈରବୀ ମୂର୍ତ୍ତି। ମନ୍ଦିରକୁ ଭୂତ, ପ୍ରେତ, ପିଶାଚ ଏବଂ କ୍ରୋଧିମାନଙ୍କର ଦୃଷ୍ଟିରୁ ରକ୍ଷା କରିବା ପାଇଁ ଏପରି ମୂର୍ତ୍ତିମାନ ଗଢ଼ିବା ଆବଶ୍ୟକ। ତାହାହିଁ କରାଯାଉଛି ଏ ସୂର୍ଯ୍ୟମନ୍ଦିର ଗାତ୍ରରେ। ବିଶେଷ କରି ଅମୋକ୍ଷ ଆତ୍ମାଗୁଡ଼ିକର ଅଶୁଭ ଦୃଷ୍ଟି ଯେପରି କୌଣସି ବିଭ୍ରାଟ ସୃଷ୍ଟି ନକରୁ ଭବିଷ୍ୟତରେ ମନ୍ଦିର ଉପରେ ଏବଂ ମନ୍ଦିରର କାର୍ଯ୍ୟକ୍ରମରେ।

କେହି ଦର୍ଶକ ଦୋଷତ୍ରୁଟି ବାଛିବାକୁ ମନୋଭାବ ନେଇ ଆସିଥିଲେ, ସେମାନେ ମଧ୍ୟ ଆନନ୍ଦ ଲାଭ କରିବେ, କହିଲେ ବଂଧୁରଥ। ସବୁକଥା ନିବିଷ୍ଟ ଚିତ୍ତରେ ଶୁଣୁଥାନ୍ତି ମହାରାଣୀ - ମହାରାଜା। ତାପରେ ମହାରାଣୀ କହିବାକୁ ଆରମ୍ଭ କଲେ, ଅଗୋଚରରେ ସୃଷ୍ଟିର ଏ ଲୀଳା ସାଧିତ ହୁଏ କେବଳ ଦେବତା ଓ ମାନବଙ୍କର। ପଶୁ ପକ୍ଷୀମାନଙ୍କ କ୍ଷେତ୍ରରେ ଗପୋନୀୟତା କିଛି ନାହିଁ। ହେଲେ ଗୋଟିଏ କଥା ସୂର୍ଯ୍ୟାଲୋକ ଭଳି ସତ୍ୟ - ତାହା ହେଉଛି ବୃଦ୍ଧ, ବାଳୁତ, ଯୁବା ସବୁରି ପ୍ରାଣ ଏହି ଅଶ୍ଳୀଳ ଦୃଶ୍ୟ ପ୍ରତି ଆକୃଷ୍ଟ ହୁଏ। ହେଲେ ଶିଳ୍ପୀଟିଏ ତା ଅନ୍ତରକୁ ଶୁଦ୍ଧ ପବିତ୍ର କରି ରଖିଥାଏ।

ଏତିକିବେଳେ ମହାରାଜା କହିଲେ, ମୁଁ ଏବେ ବୁଝିଗଲି ଏ ଅଶ୍ଳୀଳ ମୂର୍ତ୍ତି ପଛରେ ଥିବା ରହସ୍ୟ କଥା।

ବିଶୁ କହିଲେ, ମନ୍ଦିରକୁ ସୁରକ୍ଷା ଦେବପାଇଁ ନିର୍ମିତ ହୋଇଛି ଛଅଟି ଭୈରବ ମୂର୍ତ୍ତି। ଜଗମୋହନ ଉପର ସ୍ତରରେ ସେଗୁଡ଼ିକ ସ୍ଥାପିତ ହେବେ। ଗୋଟିଏ ଶିବିରରେ ସେଗୁଡ଼ିକ ତିଆରି ହୋଇଛି। ଦେଖାଯାଉଛି ଗୋଟିଏ ଛାଂଚରେ ମୂର୍ତ୍ତିଗୁଡ଼ିକ ଗଢ଼ା। ସବୁଗୁଡ଼ିକର ଆକାର ଏକ ପ୍ରକାର। ପୂର୍ବ ଉତ୍ତର ଓ ଦକ୍ଷିଣ ଦିଗରେ ଦୁଇଟି କରି ରକ୍ଷକ ଭାବରେ ଏମାନଙ୍କୁ ସ୍ଥାନିତ କରାଯିବ। ଏମାନେ ମନ୍ଦିରର ରକ୍ଷା କର୍ତ୍ତା। ଏମାନଙ୍କ ହସ୍ତରେ ଡମ୍ବୁରୁ, ତ୍ରିଶୂଳ, ଅସ୍ତ୍ରଶସ୍ତ୍ର। ସମସ୍ତେ ଚତୁର୍ମୁଖ ଧାରୀ ଭୟଙ୍କର।

ତାପରେ ବିଶୁ ପାଖରୁ ବିଦାୟ ନେଇ ଆସିବା ଅବସରରେ ବିଶୁ କହିଲେ, ମନ୍ଦିର ନିର୍ମାଣ କାର୍ଯ୍ୟ ସମାପ୍ତ ହେଲେ, ମୁଁ ମହାରାଜଙ୍କୁ ବୁଝାଇବାକୁ ଚେଷ୍ଟା କରିବି ଏ. ମନ୍ଦିର ଦେହରେ ଯେଉଁ ଲକ୍ଷ ଲକ୍ଷ ବିଭିନ୍ନ ଜୀବନର ମୂର୍ତ୍ତି ସ୍ଥାନିତ ହେବ - ସେ ସବୁର ଉଦ୍ଦେଶ୍ୟ। କେବଳ ଏତିକି ଆଜି କହୁଛି - ଏ କୋଣାର୍କ ମନ୍ଦିର ହେବ ଜନ-ଜଗତର ପ୍ରତିଛବି। ବିଶେଷ କରି ଉତ୍କଳୀୟ ଜନ ଜୀବନର ଜୀବନ୍ତ କଳା। କୋଣାର୍କ ହେବ କଳାର ମନ୍ଦିର। ବିଶ୍ୱର ସମସ୍ତ କଳା ଏଥିରେ ପ୍ରଦର୍ଶିତ ହେବ। ଏହା ହେବ ଶିଳ୍ପକଳାର ସମ୍ପଦ। ଏଥିରେ ପ୍ରଦର୍ଶିତ ହେବ ଓଡ଼ିଶାର ପାରମ୍ପରିକ ଓଡ଼ିଶୀ ନୃତ୍ୟ, ସହିତ ପାଇକ ନୃତ୍ୟ, ଘୁମୁରା ନୃତ୍ୟ। ଏହା ହେବ ଓଡ଼ିଶାର ଲୋକ ନୃତ୍ୟର ଯାଦୁଘର।





ନାଗ ଦେବାଦେବୀଙ୍କ ଦୃଶ୍ୟ





ମନ୍ଦିର ଗାତ୍ରର ସୂକ୍ଷ୍ମ କାରୁ କାର୍ଯ୍ୟର ଦୃଶ୍ୟ



ମନ୍ଦିର ଗାତ୍ରରେ ମୈଥୁନ ଦୃଶ୍ୟ



ମନ୍ଦିର ଗାତ୍ରରେ ମୈଥୁନ ଦୃଶ୍ୟ



ହସ୍ତୀରେ ଆରୋହଣ କରିଥିବା ମହାରାଜାଙ୍କୁ ଜିରାଫ ଉପହାର



ମୃଦଙ୍ଗ ବାଦ୍ୟ କରୁଥିବା ନର୍ତ୍ତକୀଙ୍କର ଦୃଶ୍ୟ



ମୁନିଋଷିଙ୍କର ମହାକାଳଙ୍କଠାରେ ସମାବେଶ ଦୃଶ୍ୟ



ରାଜ ଦରବାରର ଦୃଶ୍ୟ



ସୂକ୍ଷ୍ମ କାରୁକଳା ସହିତ ସ୍ତମ୍ଭ ଦେହରେ ମୂର୍ତ୍ତି



ଦେବୀ ମୂର୍ତ୍ତି ପାର୍ଶ୍ୱରେ ସୁକ୍ଷ୍ମ କାରୁକଳା



ନାଗ କନ୍ୟା ଓ ଦେବୀ ମୂର୍ତ୍ତି



ନର୍ତ୍ତକୀ ଓ ନାରୀ ମୃଦଙ୍ଗ ବାଦକ

## (୧୯)

ଭୁବନାନନ୍ଦ ରାଜଗୁରୁ ସେ ଦିନ କିଛି ବୟୋଜ୍ୟେଷ୍ଠ ବ୍ରାହ୍ମଣମାନଙ୍କୁ ନେଇ ଉପସ୍ଥିତ ହୋଇଥିଲେ ରାଜଦରବାରରେ। ସେତେବେଳେ ରାଜଦରବାରରେ ଚାଲିଥାଏ ରାଜ୍ୟର ବିଶିଷ୍ଟ ସାହିତ୍ୟିକ କବି ବୃନ୍ଦଙ୍କ ସମ୍ମିଳନୀ। ରାଜା ନରସିଂହ ଦେବ ଜଣେ ସାହିତ୍ୟ ପ୍ରାଣ ରାଜା। କର୍ମକ୍ଲାନ୍ତ ଜୀବନରେ କବିମାନଙ୍କୁ ନେଇ ସେ ତାଙ୍କର ଅବସର ବିନୋଦନ କରନ୍ତି। ସ୍ୱଳ୍ପ ସମୟ ଆସରରେ କବିତା ପାଠହିଁ ସୁଖମୟ ଆନନ୍ଦ-ଦାୟକ ହୋଇଥାଏ।

ସେ ଦିନ ମହାରାଜାଙ୍କର ମନୋରଂଜନ ପାଇଁ ଏହି କବି ସଭାରେ ରାଜକବି ବିଦ୍ୟାଧରଙ୍କ ରଚିତ ଅଳଙ୍କାର ଶାସ୍ତ୍ର 'ଏକାବଳୀ'ର ଶୁଭ ଲୋକାର୍ପଣ ଉତ୍ସବରେ ଯୋଗ ଦେଇଥିବା ବିଶିଷ୍ଟ ବିଶିଷ୍ଟ କବିମାନେ ହେଲେ, କବି ହରହର, ଗୋବିନ୍ଦ ଭଂଜ, ରଘୁନାଥ ପରିଛା, ବର୍ଦ୍ଧମାନ ମହାପାତ୍ର, ରଘୁବୀର କବିରାଜ ପ୍ରମୁଖ।

କୁଳପୁରୋହିତ ଭୁବନାନନ୍ଦ ରାଜଗୁରୁଙ୍କ ସହିତ ଆସିଥିବା ଏହି ବୟୋଜ୍ୟେଷ୍ଠ ବ୍ରାହ୍ମଣମାନେ ପୂର୍ବରୁ ଭୁବନେଶ୍ୱର ସଦାଶିବ ମଠରେ ରାଢ଼ ଓ ଗୌଡ଼ ଦେଶରୁ ଆସିଥିବା ତାପସ ବା ସାଧକମାନଙ୍କ ସହିତ ମିଳିତ ହୋଇଥିଲେ। ଏହି ତାପସବୃନ୍ଦ ନରସିଂହ ଦେବଙ୍କର ଗୁଣଗ୍ରାମରେ ଆକୃଷ୍ଟ ହୋଇ ଆସିଛନ୍ତି ତାଙ୍କର ମଂଗଳ କାମନା ନେଇ ପୁରୀରେ ମହାପ୍ରଭୁ ଜଗନ୍ନାଥଙ୍କ ଦର୍ଶନରେ। ସେମାନଙ୍କ ଆଗରେ ପୁରୋହିତ ଭୁବନାନନ୍ଦ ରାଜଗୁରୁ ଓ ବ୍ରାହ୍ମଣମାନେ ବାଢ଼ି ବସିଲେ କେମିତି ମହାରାଜାଙ୍କ ସଂକଳ୍ପ ମନ୍ଦିର କାର୍ଯ୍ୟ ସୁରୁଖୁରୁରେ ସମାହିତ ହେବ। କେବଳ ସେତିକି ନୁହେଁ, ଚଂଚଳ କେମିତି ମନ୍ଦିର କାର୍ଯ୍ୟ ସଂପୂର୍ଣ୍ଣ ହେବ। ସେମାନେ ମନ୍ଦିର ନିର୍ମାଣ କାର୍ଯ୍ୟରେ ଅଗ୍ରଗତିରେ ସେତେ ସନ୍ତୁଷ୍ଟ ନୁହନ୍ତି।

କିଛି ବ୍ରାହ୍ମଣ ଭାବୁଛନ୍ତି - ଆମ୍ଭମାନଙ୍କର ଜୀବନ କାଳ ଶେଷ ହେବ ଏ ମନ୍ଦିର କାର୍ଯ୍ୟ ସମାପ୍ତ ହେବନାହିଁ। ମନ୍ଦିରରେ ଦେବ ପ୍ରତିଷ୍ଠା ଦିବସରେ ମହାରାଜାଙ୍କ ଦ୍ୱାରା ଏହି ବୟସ୍କ ବୃଦ୍ଧ ବ୍ରାହ୍ମଣମାନେ କେତେ ଧନରତ୍ନ ଦାନ ଭାବରେ ଗ୍ରହଣ କରିଥାନ୍ତେ - ଭୂରି

ଭୋଜନରେ ଆପ୍ୟାୟିତ ହୋଇଥାନ୍ତେ। ତାଙ୍କ ଜୀବନରେ ଏହି ଶେଷ ପୂଜା କର୍ମ ସେମାନେ କରିଥାନ୍ତେ।

ଆସିଥିବା ତାପସମାନେ ମହାରାଜାଙ୍କର ଏହି ସଂକଳ୍ପର ପରିପୂର୍ତ୍ତି ପାଇଁ ଏକ ଯଜ୍ଞ କରିବେ। ସେହି ଯଜ୍ଞରେ ମଧ ରାଜ୍ୟର ଭାବୀ ଅଧିଶ୍ୱର, ମହାରାଣୀ ଅନୁସୂୟାଙ୍କ ଗର୍ଭକୁ କେମିତି ଆସିବେ ସେଥିପାଇଁ ହେବ ପୁତ୍ରେଷ୍ଟି ଯଜ୍ଞ। ଉଭୟ ସଂକଳ୍ପର ସିଦ୍ଧି ମିଳିବ। ତାପସବୃନ୍ଦ ସହମତି ପ୍ରଦାନ କରିଛନ୍ତି ଏହି ଯଜ୍ଞପାଇଁ। ସେହି କଥା ଦରବାରରେ ଉପସ୍ଥାପନ କରିବା ପାଇଁ ଭୁବନାନନ୍ଦ ରାଜଗୁରୁଙ୍କ ସହିତ ବ୍ରାହ୍ମଣ ବୃନ୍ଦ ଉପସ୍ଥିତ। ସେମାନେ ଆସି ମନଯୋଗ ଦେଇ ଶୁଣୁଛନ୍ତି ଉପସ୍ଥିତ ରାଜ୍ୟର ମହାନ୍ ସାହିତ୍ୟିକ କବିବୃନ୍ଦଙ୍କର ଆଲୋଚନା ଓ ସମାଲୋଚନା। ଏହି ସାହିତ୍ୟ ସଭା ଶେଷରେ ସେମାନେ ମହାରାଜାଙ୍କ ସମକ୍ଷରେ ସେମାନଙ୍କ ଆଗମନର ଉଦ୍ଦେଶ୍ୟ ଉପସ୍ଥାପନ କରିବେ। ସେମାନେ ସେମାନଙ୍କ ଆସନ ଗ୍ରହଣ କରିଛନ୍ତି। ସମସ୍ତେ ମନ୍ତ୍ରମୁଗ୍ଧ, ଉପସ୍ଥିତ କବିବୃନ୍ଦଙ୍କର ଆଲୋଚନାରେ।

ସେମାନଙ୍କ ଆସିବା ଆଗରୁ ସଭାରେ ସେହି କବି ବିଦ୍ୟାଧରଙ୍କର ରଚିତ ଅନ୍ୟ ଏକ ପୋଥି 'କେଳି ରହସ୍ୟ' ପଠିତ ଓ ଆଲୋଚିତ ହୋଇଯାଇଛି। ମହାରାଜା ଜଣେ ସାହିତ୍ୟରସିକ, ଜଣେ ପାଠକ ଓ ଶ୍ରୋତା କେବଳ ନୁହନ୍ତି, ଜଣେ ମଧ ଦକ୍ଷ ସାହିତ୍ୟ ସମାଲୋଚକ। ରାଜ୍ୟର କବି ସାହିତ୍ୟିକ ମାନଙ୍କୁ ସେ ପୃଷ୍ଠ ପୋଷକତା କରିବାରେ କେବେ ଅବହେଳା କରିନାହାନ୍ତି। କବି ସାହିତ୍ୟିକମାନଙ୍କୁ ସାହାଯ୍ୟ କରିବା ଏବଂ ସେମାନଙ୍କ ରଚନାକୁ ସର୍ବାଦୃତ କରିବା ତାଙ୍କର ଉଦ୍ଦେଶ୍ୟ। ସେ ଜାଣିଛନ୍ତି ରାଜା ବିକ୍ରମାଦିତ୍ୟଙ୍କ ଦରବାରରେ କେମିତି ନବରତ୍ନ ଥିଲେ, ଏହି କବି ଓ ଲେଖକବୃନ୍ଦ। ଯେଉଁ ଦେଶର ସାହିତ୍ୟ ଯେତେ ଉନ୍ନତ, ସେ ଦେଶ ସେତେ ସମୃଦ୍ଧ। ଜନ ଜୀବନ ସେତେ ସଚେତନ। ମହାରାଜା ନିଜେ 'କେଳି ରହସ୍ୟ' ଗ୍ରନ୍ଥର ସେ ଦିନ ଭୁରି ଭୁରି ପ୍ରଶଂସା କରିଥିଲେ।

ଉପସ୍ଥିତ କବି, ସାହିତ୍ୟିକଙ୍କର ଅଳଙ୍କାର ଶାସ୍ତ୍ରର 'ଏକାବଳୀ' ଗ୍ରନ୍ଥର ଆଲୋଚନା ସମାଲୋଚନା ସେ ଗମ୍ଭୀର ଭାବରେ ଶୁଣୁଥିଲେ। ଏହି ତିନିଶହ ଶ୍ଳୋକ ବିଶିଷ୍ଟ 'ଏକାବଳୀ' କାବ୍ୟଟି ମହାରାଜା ନରସିଂହ ଦେବଙ୍କ ଗୁଣଗାନ ଓ ପ୍ରଶଂସାରେ ପୁଷ୍କଳ ହୋଇଥିଲା। ସେ ଯେ ଜଣେ ପ୍ରତାପୀ ସମର ନିପୁଣ, ବିଦ୍ୟାନ୍, ପ୍ରଜାବତ୍ସଳ ଏବଂ ସର୍ବୋପରି କଳା ସାହିତ୍ୟର ପୂଜାରୀ - ଏକାବଳୀର ପ୍ରତିଟି ପୃଷ୍ଠାରେ ପ୍ରକାଶିତ ହୋଇଥିଲା। କବିମାନଙ୍କର ଆଲୋଚନା ସମାଲୋଚନାରେ ସେଗୁଡ଼ିକ ଆହୁରି ମଞ୍ଜୁଳ

ହୋଇ ଉଠୁଥିଲା । ନିଜର ପ୍ରଶସ୍ତି ପ୍ରଶଂସାରେ ସମସ୍ତେ ଉତ୍‌ଫୁଲ୍ଲିତ ଆନନ୍ଦିତ ହୁଅନ୍ତି । ମାତ୍ର ତା ପରିବର୍ତ୍ତେ ମହାରାଜାଙ୍କ ମୁଖମଣ୍ଡଳରେ ଫୁଟି ଉଠୁଥିଲା ଗାମ୍ଭୀର୍ଯ୍ୟ ।

ସେ ଭାବୁଥାନ୍ତି ଏହି କବିମାନେ ତାଙ୍କ ସମ୍ମୁଖରେ ତାଙ୍କର ଗୁଣଗାନ କରୁଛନ୍ତି, ଯାହା ତାଙ୍କର ବ୍ୟକ୍ତିତ୍ୱର ବିକାଶରେ ବାଧା ସୃଷ୍ଟି କରିବ । ସେ ମନେ ମନେ ଭାବୁଥାନ୍ତି - ଏସବୁ ତାଙ୍କ ପ୍ରତି ଚାଟୁବାକ୍ୟ । ସେ ଦିନ, ମଧ୍ୟ ରାତ୍ରିରେ ସେ ଯେତେବେଳେ କୋଣାର୍କ ମନ୍ଦିର ନିର୍ମାଣରେ ନିଯୁକ୍ତ ଶିଳ୍ପୀମାନଙ୍କର ପଲ୍ଲୀରେ ବୁଲୁଥିଲେ । ସେ ଶୁଣୁଥିଲେ ଶିଳ୍ପୀ ପରିବାରର ନାରୀମାନଙ୍କର ତାଙ୍କ ପ୍ରତି ଆକ୍ଷେପ ।

ଭଲା ମନ୍ଦିରଟିଏ ନିର୍ମାଣ କରୁଛି ଯେ ମହାରାଜା, ଆମର ଦୁର୍ଦ୍ଦଶାର ଅନ୍ତ ନାହିଁ । ଦଶନ୍ଧି ବିତି ଗଲାଣି - ସେ ଆମର ଲେଉଟିବାକୁ ନାହିଁ । କି ଦୁଃଖରେ ଆମେ କାଳ କାଟୁଛୁ । କେଉଁ ପରିବାରରେ ଆଲୋଚନା ହେଉଛି - କେତେ ସମୟ ଲାଗିବ ମନ୍ଦିର ନିର୍ମାଣ କାର୍ଯ୍ୟ । କେବେ ଫେରିବ ଆମର ମାଲିକ । କି ମନ୍ଦିରଟିଏ ନିର୍ମାଣ କରୁଛି ରାଜା - କେବେ ଭାବୁଛି ଆମର ମାଲିକକୁ ଅଟକାଇ ରଖି ଆମକୁ ଦୁର୍ଦ୍ଦଶାରେ କଇଁବଇଁ କରି ମାରୁଛି ବୋଲି । କେଉଁଠି ରୁଗ୍‌ଣ ପୁଅଟିଏ ପ୍ରଳାପ କରୁଛି - 'ବାପା କେବେ ଆସିବ ବୋଉ । ମୁଁ ଆଉ ବଂଚିବି ନାହିଁ । ମୋ ବାପାକୁ ଫେରାଇ ଦେ ରାଜା । ମୁଁ ଦେଖିବି ।' ବ୍ୟଥିତ ହୃଦୟରେ ମହାରାଜା - ନରସିଂହ ଦେବ - ରାଜକର୍ମଚାରୀଙ୍କୁ ଡାକି ସେ ସବୁ ଶିଳ୍ପୀ ପରିବାରର ଦୁଃଖ ଲାଘବ ପାଇଁ ଯଥେଷ୍ଟ ଆର୍ଥିକ ସାହାଯ୍ୟ ପ୍ରଦାନ କରିଛନ୍ତି - ସେମାନଙ୍କର ରୁଗ୍‌ଣ ପିଲାଙ୍କର ଚିକିତ୍ସାର ବ୍ୟବସ୍ଥା କରିଛନ୍ତି । ହେଲେ ସେହି ସବୁ ଶିଳ୍ପୀ ପରିବାର ମୁହଁରେ ହସ ଫୁଟାଇ ପାରିନାହାନ୍ତି । ବିରହ ବିଚ୍ଛେଦର ଦୁଃଖ ସେ ଲାଘବ କରି ପାରିନାହାନ୍ତି ।

ସେହିଭଳି କୋଣାର୍କରେ ମଧ୍ୟ ଚେଷ୍ଟା କରିଛନ୍ତି ଶିଳ୍ପୀର ପ୍ରାଣର ଦୁଃଖ ଅପମୋଦନ କରିବା ପାଇଁ ବିଭିନ୍ନ ମନୋରଂଜନ କାର୍ଯ୍ୟକ୍ରମ ଜରିଆରେ । ବେଳେ ବେଳେ ସୁସ୍ୱାଦୁ ଖାଦ୍ୟ ପେୟର ପରିବେଷଣ କରିବା ଦ୍ୱାରା, ନୃତ୍ୟ, ଗୀତର ଆସର ଦ୍ୱାରା ଏପରିକି ନାଟକ ମଞ୍ଚସ୍ଥ କରିବାର ବ୍ୟବସ୍ଥା ଗ୍ରହଣ କରି ଟିକିଏ ଖୁସି ଦେବାକୁ ଚେଷ୍ଟା କରିଛନ୍ତି ଶିଳ୍ପୀ ଓ ଶ୍ରମିକମାନଙ୍କୁ । ହେଲେ ସେ ବ୍ୟର୍ଥ ହୋଇଛନ୍ତି ।

ଆଜିର ସାହିତ୍ୟ ସଭାରେ ନାଟ୍ୟକାର ରଘୁନାଥ ପରିଛାଙ୍କ ସଂସ୍କୃତ ନାଟକ 'ଗୋପୀବଲ୍ଲଭ' ନାଟକକୁ କୋଣାର୍କ ନଗରୀରେ ମଞ୍ଚସ୍ଥ କରିବାର ପ୍ରୟାସ ତାଙ୍କ ମନରେ ଉଙ୍କି ମାରିଛି । ସେହି ନାଟକ ଦେଖିବା ପାଇଁ ସେ ଆମନ୍ତ୍ରଣ କରିବେ କିଛି ଶିଳ୍ପୀବୃନ୍ଦଙ୍କୁ ।

ସେମାନଙ୍କ ସହିତ ଆମନ୍ତ୍ରଣ କରିବେ କିଛିଦିନ ତଳେ କୋଣାର୍କ ବନ୍ଦରରେ ସିଂହଳ, ସୁବର୍ଣ୍ଣଦ୍ୱୀପ ଆଦି ଅଂଚଳରୁ ବୋଇତରେ ଆସି ପହଂଚି ଥିବା ବଣିକ-ଅତିଥିମାନଙ୍କୁ ଏବଂ ମଧ-ଆଫ୍ରିକା, ଇଉରୋପରୁ ଆସିଥିବା ବାଣିଜ୍ୟ ଆଶାରେ ବଣିକମାନଙ୍କୁ। ଭାବୁଛନ୍ତି - ନରସିଂହ ଦେବ - ସତରେ ତାଙ୍କର ସଂକଳ୍ପର ସଫଳତା ମିଳିବ, କୋଣାର୍କ ମନ୍ଦିର ନିର୍ମାଣ କାର୍ଯ୍ୟ ସଫଳ ହେବ ? ଯାହାକୁ ଦେଖି ଶିଳ୍ପୀ ଓ ଶିଳ୍ପୀର ପରିବାର ଭୁଲିଯିବେ ସେମାନଙ୍କର ସକଳଦୁଃଖ। ଆନନ୍ଦିତ ହେବେ ପଥର ଦେହରେ ଫୁଟିଥିବା ପାରିଜାତକୁ ଦେଖି। ବିଶ୍ୱ ଦରବାରରେ କୋଣାର୍କ - କୀର୍ତ୍ତି - କଳାର ଧ୍ୱଜା ଫର ଫର ହୋଇ ଉଡିବ। ସେଦିନ ମହାରାଜା ନରସିଂହ ଦେବ କବି ବିଦ୍ୟାଧର ଓ ରଘୁନାଥ ପରିଚ୍ଛାଙ୍କ ମସ୍ତକରେ ସମ୍ମାନର ଶିରସ୍ତ୍ରାଣ ବାନ୍ଧି ଦେଇ ପୁଷ୍ପଗୁଚ୍ଛ ଓ ସୁବର୍ଣ୍ଣ ମୁଦ୍ରା ପ୍ରଦାନ କରି କବି ସମ୍ମିଳନୀକୁ ସମାପ୍ତ କରିଥିଲେ।

କବିବୃନ୍ଦ ଓ ଶ୍ରୋତୃମଣ୍ଡଳି ଦରବାରରୁ ନିଷ୍କ୍ରାନ୍ତ ହେଲା ପରେ, ଦେଖାଗଲା ପୁରୋହିତ ଭୁବନାନନ୍ଦ ରାଜଗୁରୁ ସହିତ କିଛି ବ୍ରାହ୍ମଣ ବସିଛନ୍ତି। ମହାରାଜ ତାଙ୍କ ଆଡକୁ ଅନେଇଲା ବେଳକୁ ରାଜଗୁରୁ ଛିଡା ହୋଇ କହିଲେ, ମହାରାଜ, ଆପଣଙ୍କ ସହିତ ପରାମର୍ଶ କରିବାକୁ ଆସିଛନ୍ତି, ଆମ ରାଜ୍ୟର ବୟୋଜ୍ୟେଷ୍ଠ ବ୍ରାହ୍ମଣବୃନ୍ଦ। ସେମାନଙ୍କରସେହି ପରାମର୍ଶକୁ ଗ୍ରହଣ କଲେ ସମସ୍ତେ କୃତଜ୍ଞତା ପାଖରେ ଆବଦ୍ଧ ରହିବେ। ସେମାନେ ସମସ୍ତେ ମହାରାଜାଙ୍କ ମଙ୍ଗଳାକାଂକ୍ଷୀ ଓ ରାଜ୍ୟର ହିତୈଷୀ।

ମହାରାଜା ନମ୍ରସ୍ୱରରେ କହିଲେ - କହନ୍ତୁ - ମୋତେ କେଉଁ ସୁପରାମର୍ଶ ଦେଇ ଆପଣମାନେ ଧନ୍ୟ କରିବେ।

ବ୍ରାହ୍ମଣମାନେ, ପୁରୋହିତମାନେ, ଗୁରୁମାନଙ୍କର ସମ୍ମାନ ନରସିଂହ ଦେବଙ୍କ ରାଜ୍ୟରେ ସୁରକ୍ଷିତ। ସେମାନଙ୍କୁ ମଧ ଦାନ ଦକ୍ଷିଣା ଦେବାକୁ ମହାରାଜାଙ୍କର କୌଣସି କୁଣ୍ଠାବୋଧ ନାହିଁ। ରାଢ଼ ଏବଂ ଗୌଡ଼ ଦେଶରୁ ଆସିଥିବା ତାପସମାନଙ୍କୁ ସେ ରାଜ୍ୟର ଅତିଥି ଭାବରେ ଜଗନ୍ନାଥ ମନ୍ଦିର ଦର୍ଶନ ଓ ପୁରୀରେ ଜାଗଯଜ୍ଞ କରିବା ପାଇଁ ସମସ୍ତ ସହାୟତା ପ୍ରଦାନ କରିବା ପାଇଁ ପୂର୍ବରୁ ମନସ୍ଥ କରିଛନ୍ତି। ମାତ୍ର, ଏହି ବୟୋଜ୍ୟେଷ୍ଠ ବ୍ରାହ୍ମଣମାନଙ୍କ ତରଫରୁ ତାଙ୍କର ପ୍ରତିନିଧି ଗଣେଶ୍ୱର ଗରାବଡୁ ସେହି ତାପସମାନଙ୍କ କଥା ଉଲ୍ଲେଖ କରିବାରୁ ମହାରାଜା କହିଲେ, ମୁଁ ଆଗରୁ ସେଥିପାଇଁ ମନସ୍ଥ କରିଛି। ମନସ୍ଥ କରିଛି ସେମାନଙ୍କର ଜାଗଯଜ୍ଞରେ କେବଳ ସହାୟତା ପ୍ରଦାନ କରିବି ନାହିଁ - ମହାରାଣୀଙ୍କ ସହିତ ସେଠାକୁ ଯାଇ ଅର୍ଘ୍ୟ ପ୍ରଦାନ କରିବି ମଧ।

ବିସ୍ମିତ ହୋଇଗଲେ ବ୍ରାହ୍ମଣ ବୃନ୍ଦଙ୍କ ସହିତ କୁଳପୁରୋହିତ ଭୁବନାନନ୍ଦ ରାଜଗୁରୁ। ମହାରାଜା ପୁଣି କହିଲେ, ରାଜଗୁରୁ ମହାଶୟ - ସେଥିପାଇଁ ଏକ ଶୁଭ ଦିବସ ଧାର୍ଯ୍ୟ କରନ୍ତୁ। ଭୁବନାନନ୍ଦ ରାଜଗୁରୁ କହିଲେ, ସେହି ଶୁଭଦିନ ଓ ଲଗ୍ନ ଧାର୍ଯ୍ୟ କରିବାକୁ ଏହି ବ୍ରାହ୍ମଣ ବର୍ଗ ଆପଣଙ୍କ ଏ ଦରବାରକୁ ଆସିଛନ୍ତି। ଆପଣଙ୍କୁ ସେହି ଶୁଭଦିନ ଧାର୍ଯ୍ୟର ପରାମର୍ଶ ଦେବା ପାଇଁ - ଯେଉଁଦିନ ଆପଣଙ୍କର ବିଶ୍ୱବିଖ୍ୟାତ ସୂର୍ଯ୍ୟମନ୍ଦିର ଲୋକାର୍ପିତ ହେବ।

ମହାରାଜ କହିଲେ - ମନ୍ଦିର ନିର୍ମାଣ କାର୍ଯ୍ୟ ସଂପୂର୍ଣ୍ଣ ହେଲା ପରେ ମନ୍ଦିର ପ୍ରତିଷ୍ଠା ଓ ପୂଜାର ଶୁଭ ଦିବସ ଓ ଲଗ୍ନ ଧାର୍ଯ୍ୟ କଲେ କ'ଣ ଚଳିବ ନାହିଁ ? ଗଣେଶ୍ୱର ଗରାବଡୁ କହିଲେ - ଦ୍ୱାଦଶ ବର୍ଷରେ ସେ ଶୁଭଦିନ ଥରେ ଆସେ। ଯେମିତି ମହାପ୍ରଭୁ ଜଗନ୍ନାଥଙ୍କର ନବ କଳେବର ଦିବସ ଆସେ।

ମହାରାଜା ବିମର୍ଷ ହୋଇ ଭ୍ରୂକୁଞ୍ଚନ କରି କହିଲେ, ଦ୍ୱାଦଶ ବର୍ଷ ଆମକୁ ଅପେକ୍ଷା କରିବାକୁ ପଡ଼ିବ? ଗଣେଶ୍ୱର ଗରାବଡୁ କହିଲେ, ନା ମହାରାଜା। ସେ ଶୁଭ ଦିବସ ସନ୍ନିକଟ। ଆସନ୍ତା ମାଘମାସ, ଶୁକ୍ଳପକ୍ଷ ସପ୍ତମୀ ତିଥି। ଆହୁରି ଆଠ ମାସ ସମୟ ରହିଛି। ମନ୍ଦିରର ଭିତ୍ତି ପ୍ରସ୍ତର ସ୍ଥାପନ ଦିବସଠାରୁ ଏଗାରବର୍ଷ ବିତି ଯାଇଥିଲେ ମଧ୍ୟ ନିର୍ମାଣ କାର୍ଯ୍ୟ ବହୁତ ଧିମେଇ ଯାଇଛି। ଆପଣ ଆଜ୍ଞା କଲେ ଏହି ଆସନ୍ତା ମାଘମାସ ଶୁକ୍ଳ ସପ୍ତମୀ ତିଥି ପୂର୍ବରୁ ମନ୍ଦିର ନିର୍ମାଣ କାର୍ଯ୍ୟ ସମାପ୍ତ ହୋଇପାରିବ। ପୁଣି ସେହି ତିଥିରେ ମନ୍ଦିରର ପ୍ରତିଷ୍ଠା କଲେ ଆପଣ ଅଶ୍ୱମେଧ ଯଜ୍ଞର ପୂଣ୍ୟ ଲାଭ କରିବେ। କେବଳ ସେତିକି ନୁହେଁ। ଗଙ୍ଗ ବଂଶ ସିଂହାସନରେ ଭାବୀ ଅଧିଶ୍ୱର ମହାରାଣୀଙ୍କ ଗର୍ଭକୁ ଆସିବ। ସେମାନଙ୍କ କଥା ଶୁଣି ମହାରାଜା କହିଲେ ତାହା ହିଁ ହେବ। ମୁଁ ସଦାଶିବ ସାମନ୍ତରାକୁ ନିର୍ଦ୍ଦେଶ ଦେଉଛି - ଆସନ୍ତା ମାଘ ଶୁକ୍ଳ ସପ୍ତମୀ ତିଥି ପୂର୍ବରୁ ମନ୍ଦିର ନିର୍ମାଣ କାର୍ଯ୍ୟ ସମାପ୍ତ କରିବାକୁ।



# (୨୦)

ଦେଖୁ ଦେଖୁ ଏହାରି ଭିତରେ ଛଅମାସ ସମୟ ଅତିବାହିତ ହୋଇଗଲାଣି। ସମୟର ଚକ ନିର୍ମିତ ହୋଇଥିବା ସୂର୍ଯ୍ୟମନ୍ଦିର ଚକକୁ ଯେମିତି ଘୁରାଇବାକୁ ଲାଗିଛି। ମନ୍ଦିରର ଚୂଳି ମରିବା କାମ ଛଅ ମାସରେ ମଧ ସରିବ ନାହିଁ। ସମୟର ସୁଅକୁ କିଏ ବା ଅଟକାଇ ପାରିବ, ଦିନ ଦଣ୍ଡର ବାଲିବନ୍ଧ ବାନ୍ଧି। ସମୟର ବେଗ ସହିତ କେବଳ ତାଳ ମିଳାଇ ଚାଲିଛନ୍ତି ସୂର୍ଯ୍ୟ ଦେବତା। ଉଦୟାସ୍ତ ଗତିଧାରା ତାଙ୍କର ଅଟକିବାର ନାହିଁ। ଦିନ ପରେ ରାତି, ରାତି ପରେ ଦିନ ବିତି ଯାଉଛି।

ମୁଖ୍ୟ ସ୍ଥପତି ମନ୍ତ୍ରୀ ସଦାଶିବ ସାମନ୍ତରା ମହାରାଜାଙ୍କର ନିର୍ଦ୍ଦେଶନାମା ସମସ୍ତଙ୍କୁ ଜଣାଇ ଦେଇଛନ୍ତି। ହେଲେ ସେ ନିଜେ ଯାଇ ମହାରାଜା ଓ ମହାରାଣୀଙ୍କ ପାଖରେ ତାଙ୍କର ଇସ୍ତଫା ପତ୍ର ଦାଖଲ କରିଛନ୍ତି। ତା ପୂର୍ବରୁ ସେ ଯୁକ୍ତି ବାଢ଼ିଛନ୍ତି - ଛଅମାସର କାମକୁ ଦୁଇ ମାସରେ କରିବା ଅସମ୍ଭବ। ଶିଳ୍ପଶାସ୍ତ୍ରରେ ଅଛି - କାମ ଧୀରେ ସୁସ୍ଥେ କଲେ - ସେ କାମ ମଜବୁତ ହୁଏ - ସ୍ଥାୟୀ ହୁଏ। ସେଥିପାଇଁ ଧାର୍ଯ୍ୟ ସମୟଠାରୁ ବରଂ ଅଧିକ ସମୟର ଆବଶ୍ୟକତା ପଡ଼େ। ଏପରି ବିଶ୍ୱ ବିଖ୍ୟାତ ମନ୍ଦିରଟିଏ ନିର୍ମିତ ହେଉଛି - ତାକୁ ତରବରରେ କଲେ ମନ୍ଦିରର ସ୍ଥାୟୀତ୍ୱ ଉପରେ ବିପଦ ଆସିବ। ମୁଁ ମହାରାଜାଙ୍କର ଏ ନିଷ୍ପତ୍ତି ସହିତ ସହମତ ନୁହେଁ। ଏଥିପାଇଁ ମୋତେ ଯେଉଁ ଦଣ୍ଡ ଦେବେ ଦିଅନ୍ତୁ।

ମହାରାଜା ବ୍ରାହ୍ମଣମାନଙ୍କର ଚକ୍ରାନ୍ତ କଥା ବୁଝି ପାରିନଥିଲେ - ତାଙ୍କ ମନକୁ ଆକ୍ରାନ୍ତ କରିଥିଲା - ଶିଳ୍ପୀମାନଙ୍କର ପରିବାରର ଦୁର୍ଦ୍ଦଶା। ଶିଳ୍ପୀମାନଙ୍କର ମନର ଅବସ୍ଥା। ସେତେବେଳେ ତାଙ୍କ ମୁଣ୍ଡକୁ ପଶୁ ନଥିଲା ମନ୍ତ୍ରୀ ତଥା ମୁଖ୍ୟ ସ୍ଥପତି ସଦାଶିବ ସାମନ୍ତରାୟଙ୍କ କଥା। ସେ କଥା ଦେଇଛନ୍ତି କୁଳ ପୁରୋହିତ ଏବଂ ବୟୋଜ୍ୟେଷ୍ଠ ବ୍ରାହ୍ମଣମାନଙ୍କୁ - ଆସନ୍ତା ମାଘ ସପ୍ତମୀରେ ସୂର୍ଯ୍ୟମନ୍ଦିର ପ୍ରତିଷ୍ଠା ହେବ।

କଥାରେ ଅଛି ରାଜା ଅନ୍ଧ, ପାଣି ଅନ୍ଧ ଏବଂ ନିଆଁ ଅନ୍ଧ। ଯେଉଁ ଆଡକୁ ସେମାନେ ମୁହାଁଇବେ - ସେହି ଆଡକୁ ମାଡ଼ିଯିବେ।

ରାଜାଙ୍କ ମନରେ ଆଉ ଗୋଟିଏ କଥା ବିଶେଷ ଭାବରେ ଦାଗ କାଟିଛି। ତାହା ହେଉଛି - ଅଶ୍ୱମେଧ ଯଜ୍ଞର ଫଳପ୍ରାପ୍ତି। ଯଜ୍ଞର ଫଳ ସ୍ୱରୂପ କୋଣାର୍କ ମନ୍ଦିର ନିର୍ମାଣର କାର୍ଯ୍ୟର ସଫଳ ସମାପ୍ତି ଏବଂ ଗଙ୍ଗ ବଂଶର ଭାବୀ ଅଧିଶ୍ୱରର ଆଗମନ।

ସେ ଦୃଢ଼ କଣ୍ଠରେ ସଦାଶିବ ସାମନ୍ତରାଙ୍କୁ କହିଛନ୍ତି - ଯେମିତି ହେଉ ମନ୍ଦିର ନିର୍ମାଣ କାର୍ଯ୍ୟ ଏହି ନିର୍ଦ୍ଦିଷ୍ଟ ଦିନ ପୂର୍ବରୁ ସମାପ୍ତ କରିବାକୁ ପଡ଼ିବ। ଦରକାର ପଡ଼ିଲେ ଆଉ କେହି ସ୍ଥପତିଙ୍କୁ ମୁଁ ନିଯୁକ୍ତି ଦେବି। ସଦାଶିବ ସାମନ୍ତରା କହିଲେ, ତାହା ହିଁ କରନ୍ତୁ। ନବ ନିଯୁକ୍ତ ସ୍ଥପତି ଯାହା କହିବେ ମୁଁ କରିବାକୁ ବାଧ ଅଛି। ସଦାଶିବ ସାମନ୍ତରାଙ୍କୁ ମହାରଜା କ'ଣ ବା ଦଣ୍ଡଦେବେ। ସଦାଶିବ ସାମନ୍ତରାଙ୍କ ଯୁକ୍ତି ଉପରେ କିଛି ତାଙ୍କର କହିବାର ନାହିଁ। କେବଳ କାର୍ଯ୍ୟ ନିର୍ବାହ ପାଇଁ ସେ କାର୍ଯ୍ୟକାରୀ ମୁଖ୍ୟ ସ୍ଥପତି ଗଦାଧର ମହାପାତ୍ରଙ୍କଉପରେ ଦାୟିତ୍ୱ ନ୍ୟସ୍ତ କଲେ। ଗଦାଧର ମହାପାତ୍ର ମହାରାଜାଙ୍କ ଅନୁଗ୍ରହ ଲାଭ କରିବା ପାଇଁ ମନ୍ଦିରର ଉଚ୍ଚତା କମାଇ କଳସକୁ ନେଇ ଚୂଳି ମାରିବାର ମନସ୍ଥ କଲେ।

ସମସ୍ତ ଶିଳ୍ପୀବୃନ୍ଦ ମଧ ତୁରନ୍ତ ନିର୍ମାଣ କାର୍ଯ୍ୟ ଶେଷ କରି ଘରକୁ ବାହୁଡ଼ିବା ପାଇଁ ବ୍ୟସ୍ତ। ସେମାନେ ଆନନ୍ଦରେ କଳସ ସ୍ଥାପନ କାର୍ଯ୍ୟରେ ଲାଗିଗଲେ। ଅବଶ୍ୟ ବିଶୁ ମହାରଣାଙ୍କ ମନରେ ଆନନ୍ଦ ନଥିଲା। ସେ ଜାଣିଥିଲେ ଏହାଦ୍ୱାରା ମନ୍ଦିରର ବିଘ୍ନ ଘଟିବ। ଯେପରି ନିର୍ମାଣ କାର୍ଯ୍ୟ ନିର୍ଭୁଲ ଭାବରେ ହେବା କଥା ତାହା ହୋଇ ପାରିବ ନାହିଁ।

ବିଶାଳ ପଥର ଖଣ୍ଡକୁ ନିହାଣ ମୁଗୁର ନେଇ ପ୍ରକାଣ୍ଡ କଳାସଟିଏ ତିଆରି ହେଲା। ତା ଦେହରେ ମଧ ସୂକ୍ଷ୍ମ କାରୁକାର୍ଯ୍ୟ ଖୋଦିତ ହେଲା। ଶିଳ୍ପୀମାନଙ୍କ ନିହାଣ ମୁଗୁର ଶବ୍ଦରେ ମନ୍ଦିର ବେଢ଼ା ପ୍ରକମ୍ପିତ ହେଲା। ରେଖା ଦେଉଳର ଚୂଳି ମାରିବା କାର୍ଯ୍ୟ ବ୍ୟତୀତ ସବୁ କାର୍ଯ୍ୟ ପ୍ରାୟ ଶେଷ ହୋଇ ଆସିଲା। ମନ୍ଦିର ନିର୍ମାଣ ସଂଗକୁ ଭୋଗମଣ୍ଡପ, ନାଟମଣ୍ଡପ ଆଦିର କାମ ଶେଷ ହୋଇଥିଲା। କେବଳ ଚୂଳି ମରିବ ବଡ଼ ମନ୍ଦିରର। ଆନନ୍ଦରେ ଅଧିର ହୋଇ ଉଠିଲେ ଶିଳ୍ପୀବୃନ୍ଦ। ମହାରାଜା ଆସିବେ ସମ୍ପୂର୍ଣ୍ଣ ମନ୍ଦିରଟିକୁ ପରିଦର୍ଶନରେ।

ମନ୍ଦିର ଗର୍ଭଗୃହରୁ ଓ ଦେହରୁ ପୋତା ଯାଇଥିବା ବାଲିକୁ ଅଲଗା କରି ଦିଆଗଲା। ଶହ ଶହ ଶ୍ରମିକ ଶଗଡ଼ରେ ମନ୍ଦିର ବେଢ଼ାକୁ ବାଲିର ପାହାଡରୁ ମୁକ୍ତ କଲେ। ଛିଡା

ହୋଇଗଲା ବିଶାଳ ସୂର୍ଯ୍ୟମନ୍ଦିର। ମାସକ ଭିତରେ ମୁଖ୍ୟ ପଲସ୍ତରା ଶିଳ୍ପୀ ବିନ୍ଦୁ ମହାରଣା ମନ୍ଦିରର ବାହାର ଓ ଭିତର ଗାତ୍ରକୁ ପଲସ୍ତରା କରିବାର ଦାୟିତ୍ୱ କେମିତି ତୁଲାଇବେ ଭାବି ବ୍ୟସ୍ତ ହୋଇ ପଡ଼ିଲେ। ପଥର ଉପରେ ପଥର ଥୋଇବା ବେଳେ ଯେତିକି ଯୋଡାଇର ଭାଗ ସେ ଢ଼ାଳିଥିଲେ, ଆଉ ଅଧିକ କିଛି ପଲସ୍ତରା କରିବାର ସୁଯୋଗ ତାଙ୍କୁ ମିଳିଲା ନାହିଁ। ଚୂଳି ବିହୀନ ପୂର୍ଣ୍ଣ ମନ୍ଦିରଟିଏ ଛିଡା ହୋଇଗଲା। ଛିଡା ହୋଇଗଲା ବିଶ୍ୱର ବିସ୍ମୟ ସୂର୍ଯ୍ୟଦେବଙ୍କର ରଥାକୃତିର ମନ୍ଦିରଟିଏ। ତା ସହିତ ମନ୍ଦିର ବେଢ଼ାରେ ଗଜସିଂହ ଆଦି ଶୋଭା ପାଇବାକୁ ଲାଗିଲା।

ମହାରାଜା ମହାରାଣୀ ମନ୍ଦିରଟିକୁ ଦେଖିବାକୁ ଆସିବେ। ମନ୍ଦିରର ଚୂଳି ମରିନାହିଁ। ଯାହା ଉପରେ ଉଡ଼ିବ ଫର ଫର ହୋଇ ବିକର୍ତ୍ତନଙ୍କ କେତନ। କେତେ ଦିନ ଧରି ଶିଳ୍ପୀମାନେ ଚେଷ୍ଟା କରୁଛନ୍ତି କଳସ ଉପରେ ସେହି ଚୁମ୍ବକୀୟ ଚୂଳ ବସାଇବା ପାଇଁ। ହେଲେ ସେ ଚୁମ୍ବକୀୟ ଚୂଳ କଳସ ଉପରେ ରହୁନାହିଁ। ବାରମ୍ବାର ଚେଷ୍ଟା କରି ମଧ ଶିଳ୍ପୀମାନେ ବିଫଳ ହେଉଛନ୍ତି। ଏପରିକି ବିଫଳ ହେଉଛନ୍ତି ନିଜେ ବିଶୁ ମହାରଣା। ସେମାନଙ୍କୁ କୌଣସି ବୁଦ୍ଧି ଦେଖାଯାଉ ନାହିଁ। କେମିତି ଚୂଳ-କଳସ ବସି ପାରିବ - ଏ ନେଇ ଭାଳେଣି ପଡିଛି।

ମହାରାଜା ନିର୍ଦ୍ଦେଶ ଦେଇଛନ୍ତି ନିର୍ଦ୍ଦିଷ୍ଟ ଦିନରେ ମନ୍ଦିର ସମ୍ପୂର୍ଣ୍ଣ ନ ହେଲେ ବାରଶ ବଢ଼େଇଙ୍କ ମୁଣ୍ଡକାଟ ହେବ। ସମସ୍ତେ ଜାଣିଛନ୍ତି ମହାରାଜାଙ୍କର ନିର୍ଦ୍ଦେଶ - ଟଳିବାର ନୁହେଁ। ମାତ୍ର ମହାରାଜା ଆସି ଏପରି ନିର୍ମମ ନିଷ୍ଠୁର ନିର୍ଦ୍ଦେଶାନାମା ଜାରି କରିଗଲେ - ସେଦିନ।

ତାହା ପୂର୍ବରୁ ମନ୍ଦିରର ଗର୍ଭଗୃହର କାରୁକାର୍ଯ୍ୟ ଦେଖି ବିଗଳିତ ହୋଇ ଯାଇଥିଲା ତାଙ୍କ ହୃଦୟ। କି ଅପୂର୍ବ ଏହି ଶିଳ୍ପୀମାନଙ୍କର ସାଧନା। ସୂର୍ଯ୍ୟମନ୍ଦିରର ଅପୂର୍ବ ସିଂହାସନରେ ସୂର୍ଯ୍ୟଙ୍କର ମୂର୍ତ୍ତି ଦେଖି ସେ ଧନ୍ୟ ଧନ୍ୟ କରିଥିଲେ ଉତ୍କଳର ଏହି ଶିଳ୍ପୀବୃନ୍ଦଙ୍କର କାରୁକଳାକୁ। ସୂର୍ଯ୍ୟ ଦେବଙ୍କ କାରୁକାର୍ଯ୍ୟ ଭରା ସିଂହାସନ। ପଶ୍ଚିମ କାନ୍ଥରୁ ତିନିଫୁଟ ଛାଡ଼ିଚଟାଣ ଉପରେ ଶୋଭା ପାଉଛି। ଏହି ଚଟାଣର ଲମ୍ବ ଏଗାର ଫୁଟ ଆଠଇଞ୍ଚ। ସୂର୍ଯ୍ୟଙ୍କର ବିଗ୍ରହକୁ ସ୍ଥାପନ ପୂର୍ବରୁ ସିଂହାସନ ଉପରେ ରତ୍ନବେଦୀ ନିର୍ମିତ ହୋଇଛି। ନିର୍ମାଣ ହୋଇଛି ବେଦୀର ପଛପଟେ ପାଞ୍ଚଫୁଟ ଉଚ୍ଚତାର ଏକ ଅପୂର୍ବ କାରୁକଳା ପୂର୍ଣ୍ଣ ମଣ୍ଡଳି। ମଣ୍ଡଳିଦେହକୁ ଆଶ୍ରୟ କରି ସୂର୍ଯ୍ୟଦେବଙ୍କର ବିଗ୍ରହ। ତିଆରି ହୋଇଛି ସିଂହାସନରେ ନିମ୍ନ ଭାଗରେ ଧାଡ଼ିଏ ହାତୀଶ୍ରେଣୀ। ତା ଉପରେ ସୂକ୍ଷ୍ମ ପୁଷ୍ପିତ ଲତାର

କାରୁକାର୍ଯ୍ୟ। ପାଦ ଦେଶରେ ଏହି ପୁଷ୍ପିତ ଲତା ଭିତରେ ନାନାପ୍ରକାର ଜୀବଜନ୍ତୁଙ୍କର ଚିତ୍ର ଜୀବନ୍ତ ହୋଇ ଫୁଟି ଉଠିଛି। ସୂର୍ଯ୍ୟ ବିଗ୍ରହ ତଳେ ସିଂହାସନର ମଧ୍ୟ ଭାଗରେ ରାଜା ନରସିଂହ ଦେବ ଓ ରାଣୀ ଅନୁସୂୟାଙ୍କ ପ୍ରତିମୂର୍ତ୍ତି। ବୋଧହୁଏ ମହାରାଜାଙ୍କ ଯୁଦ୍ଧ ଯାତ୍ରାର ପୂର୍ବରୁ ଏ ସୁର୍ଯ୍ୟୋପାସନାର ପରିକଳ୍ପନା ନେଇ ମୂର୍ତ୍ତିଗୁଡ଼ିକ ଗଢ଼ା ଯାଇଛି। ପୂର୍ଣ୍ଣ ରାଜକୀୟ ପରିଚ୍ଛଦରେ ମହାରାଜା, ତଳେ ତାଙ୍କର ତରବାରୀ। ସେବକ ଫୁଲହାରଟିଏ ରାଜାଙ୍କ ବେକରେ ଦେବା ପାଇଁ ନଇଁ ପଡିଛି। ରାଣୀଙ୍କ ପଛପାର୍ଶ୍ୱରେ ଅନ୍ତଃପୁରର ଅପୂର୍ବ ସୁନ୍ଦରୀ ନାରୀମାନଙ୍କ ମୂର୍ତ୍ତି। ହାତରେ ସେମାନଙ୍କର ଝାଂଜ, ମୃଦଙ୍ଗ ଓ ଅର୍ଘ୍ୟ ଥାଳି। ସିଂହାସନର ପଛ ଦୁଇକୋଣରେ କେବଳ ଗୋଟିଏ ହାତୀ ଉପରେ ସିଂହଟି ଛିଡା ହୋଇଛି ଏବଂ ସିଂହାସନର ଦୁଇପାର୍ଶ୍ୱରେ ସମ୍ମୁଖ ଭାଗରେ ସିଂହ ଦୁଇଟି ଦୁଇ ପାଦରେ ଛିଡା ହୋଇ ଦୁଇ ଗୋଡ଼ ଟେକି ରଖିଛି। ସିଂହ ଗୁଡ଼ିକର ପଛ ଜାନୁତଳେ ହାତୀଗୁଡ଼ିକ ଚାପି ହୋଇ ରହିଛି। ରୂପାୟିତ ହୋଇଛି କି ଅଭୂତପୂର୍ବ ପରିକଳ୍ପନା। ଏ ସବୁ ଦେଖିଲା ପରେ ଯେତେବେଳେ ମହାରାଜା ଦେଖିଛନ୍ତି ମନ୍ଦିର ଚୂଳ ଅସଂପୂର୍ଣ୍ଣ - ସେ ବ୍ୟଥିତ ହୋଇ ସେହି ନିର୍ଦ୍ଦେଶ ଦେଇଛନ୍ତି। ଦୁଇଦିନ ମଧ୍ୟରେ ମନ୍ଦିର ଚୂଳ ସଂପୂର୍ଣ୍ଣ କରିବାକୁ। ନହେଲେ ଶିଳ୍ପୀମାନଙ୍କର ମୁଣ୍ଡକାଟ ହେବ।



# (୨୧)

ସାରା ରାତ୍ରି ମାଆ ପୁଅଙ୍କ ଆଖିରେ ନିଦ ନାହିଁ। ପୁଅ ଧରମା ଯିବ ବାପାଙ୍କ ପାଖକୁ। ବାପା ବିଶୁକୁ ଭେଟିବାକୁ। ଜନ୍ମରୁ ସେ କେବେ ତାର ବାପାଙ୍କୁ ଦେଖିନାହିଁ। ବାପା ତାର ଲମ୍ବା କି ଗେଡ଼ା, କଳା କି ଗୋରା, ମୋଟା କି ପତଳା, ସେ ଜାଣେ ନାହିଁ। କେବଳ ମାଆ କୋଳରେ ଶୋଇଲାବେଳେ ମାଆଠାରୁ ଶୁଣିଛି ତା ବାପାଙ୍କ କଥା।

ମାଆ କହନ୍ତି – ବାପା ତୋର ବଢ଼େଇ ଶ୍ରେଷ୍ଠ, ଦେବତା ପରି ମଣିଷଟିଏ। ଲୋକେ କହନ୍ତି ବିଶ୍ୱକର୍ମାର ପୁଅ ତୁ। ବାପା ତୋର ବିଶ୍ୱକର୍ମା। ଯେତେ ଶକ୍ତ ପଥର ହେଉ – ତାଙ୍କ ହାତର ନିହାଣ ବାଜି କୁନ୍ଦି ହୋଇଯାଏ। ପଥର ଦେହରେ ଫୁଲ ଫୁଟେ। ଫଳ ଧରେ, ମୂର୍ତ୍ତିଗୁଡ଼ିକ ଜୀବନ୍ତ ହୋଇ ଉଠନ୍ତି। ତାଙ୍କରି ହାତରେ କେତେ କେତେ ମନ୍ଦିର ସବୁ ଗଢ଼ି ଉଠେ।

ସବୁ କଥା ଶୁଣି ମାଆକୁ କହେ ଧର୍ମପଦ, ମୁଁ କ'ଣ ବାପାଙ୍କ ପରି ସୁନ୍ଦର ମୂର୍ତ୍ତି ଗଢ଼ି ପାରିବି ନାହିଁ ? ପାରିବି ନାହିଁ ମନ୍ଦିର ତୋଳି ?

ମାଆ ପଦ୍ମାଳୟା କହନ୍ତି, ନିଶ୍ଚୟ ପାରିବୁ। ତୁ ତ ବାପାଙ୍କର ସାଇତା ସମସ୍ତ ପୋଥି ପଢ଼ି ସାରିଛୁ। ଭଲ ମୂର୍ତ୍ତି ବି ଗଢ଼ି ପାରୁଛୁ। ତୁ ତୋ ବାପାଙ୍କ ଠାରୁ କମ୍ ନୋହୁଁ। ଧରମା କହିଲା, ହେଲେ ମୋ ବାପାଙ୍କୁ ମୁଁ ଚିହ୍ନିବି କେମିତି ? ହଁ ପୁଅ, ସେ କଥା ମୁଁ କହିବାକୁ ଭୁଲି ଯାଇଥିଲି। ବାପା ତୋର ଦେଖିବାକୁ ତୋହରି ପରି ବହୁତ ସୁନ୍ଦର। ତୁ ପିଲା ଲୋକ, ସେ ଶକ୍ତିଶାଳୀ ଜୁଆଣ ମଣିଷ। ତୋ ବାପାଙ୍କର ମାଂସପେଶୀ ଗୁଡ଼ିକ ପୁରିଲା ପୁରିଲା। ମୁଣ୍ଡର ବାଳ କୁଂଚ କୁଂଚିଆ। ଦୁଇ କାନରେ ରୂପାର କୁଣ୍ଡଳ। ହାତରେ କଙ୍କଣ। ଦେହ ରଙ୍ଗ ଗୋରା। ତୋହରି ଦେହର ରଂଗ ପରି। ପଚାରିବୁ ବଢ଼େଇମାନଙ୍କ ସର୍ଦ୍ଦାର କିଏ ? କିଏ ବିଶୁ ମହାରଣା। ବଢ଼େଇ ମାନେ ବତାଇ ଦେବେ, ଚିହ୍ନାଇ ଦେବେ ତୋତେ। ଆମରି ବଢ଼େଇ ବସ୍ତୀର କେତେ ବଢ଼େଇ ତାଙ୍କରି କଥାରେ କାର୍ଯ୍ୟ କରୁଛନ୍ତି ସେଠାରେ। ପଚାରି ବୁଝିବୁ।

ବାପା ମୋତେ ଚିହ୍ନିବେ କେମିତି ? ପଚାରିଲା ଧର୍ମପଦ। ତୁ ପରିଚୟ ଦେଇ ଦେବୁ। ଦେବୁ ଆମ ବାରି ବରକୋଳି ଚାଖିବାକୁ। ଆଉ ଦେବୁ ମୋ ହାତ ତିଆରି ପୋଡ଼ପିଠା। ତୁ ନେଇ ଯିବା ପାଇଁ ମୁଁ ସବୁ ବାଂଧି ରଖିଛି। ସେଠାରେ ଦେଖିବୁ କେଡ଼େ ବଡ଼ ମନ୍ଦିରଟିଏ ତିଆରି ହେଉଛି। ବାରବର୍ଷ ବିତିବାକୁ ବସିଲାଣି। ମନ୍ଦିର କାର୍ଯ୍ୟ ନ ସରିଲେ କୁଆଡ଼େ ସେ ଫେରି ପାରିବେ ନାହିଁ।

ପୁଣି ଆରମ୍ଭ କଲେ ପଦ୍ମାଳୟା। କିପରି ସେଠାରେ ସେ ରହୁଥିବେ ? କ'ଣ ଖାଉଥିବେ ? ତାଙ୍କର ଦେହର ଅବସ୍ଥା କେମିତି ଥିବ ଦେଖିବୁ ? ଏହି କଥା କହୁଥିଲାବେଳେ ତାଙ୍କ ଆଖି ଛଳ ଛଳ ହୋଇଗଲା। ତାଙ୍କ କଣ୍ଠ ବାଷ୍ପରୁଦ୍ଧ ହୋଇଗଲା। କେବେ ଯେ ଫେରିବେ....। ଧର୍ମପଦ କହିଲା, ବାପା ଠିକ୍ ଥିବେ ବୋଉ। ମୁଁ ଯାଇ ତାଙ୍କୁ କାମରେ ସାହାଯ୍ୟ କରିବି। ଯେତେ ଚଂଚଳ ସମ୍ଭବ, ମନ୍ଦିର କାମ ସରିଲେ ବାପାଙ୍କୁ ଧରି ଫେରି ଆସିବି।

ପଦ୍ମାଳୟା ଧର୍ମପଦକୁ କୋଳକୁ ଟାଣି ନେଇ ତା ମସ୍ତକରେ ଚୁମ୍ବନଟିଏ ଆଂକି ଦେଇ କହିଲେ, ତୋ ବାପାଙ୍କ ଭଳି ମଣିଷଟିଏ ଏ ଖଣ୍ଡମଣ୍ଡଳରେ ନାହିଁ। କେଡ଼େ ଶାନ୍ତ ସରଳ ସେ। ହସ ହସ ମୁଖ ମଣ୍ଡଳ। ମାଛିକୁ ମ ବୋଲି କେବେ କହିନାହାନ୍ତି। ବସ୍ତୀଲୋକେ ତାଙ୍କୁ ଦେବତା ବୋଲି ମାନନ୍ତି। ବାରବର୍ଷ ଧରି ଯାଇଛନ୍ତି। ମୋ ହୃଦୟ ଭିତରେ କେତେ ଦୁଃଖ। କେବଳ ତୋହରି ମୁହଁକୁ ଚାହିଁ ମୁଁ ବଂଚିଛି। ଭରସା ରଖିଛି ଆମ ବେଣୁଧରଙ୍କ ପାଦ ପଦ୍ମରେ - ସେ ତୋ ବାପାଙ୍କୁ ଭଲରେ ଭଲରେ ଫେରାଇ ଆଣିବେ।

(ତୁ ମୋତେ ଛାଡ଼ି ଯାଉଛୁ ତୋ ବାପାଙ୍କ ପାଖକୁ। ତୁ ଚାଲିଗଲେ ମୋତେ ଦଶଦିଗ ଅନ୍ଧାର ଦେଖାଯିବ। ମୁଁ ଏକୁଟିଆ ବଂଚିବି କିପରି ? ଧର୍ମପଦ କହିଲା - ବୋଉ ମୁଁ ବଡ଼ ହୋଇଗଲିଣି। ତୁମେ ମୋତେ ସବୁଦିନ ପାଖରେ ବାନ୍ଧି ରଖିବ କେମିତି ?) ତୁମେ ପରା କୁହ ଆମେ ବଢ଼େଇ ପୁଅ। ଆମ ବ୍ୟବସା ପଥର କାଟି ମୂର୍ତ୍ତି ଗଢ଼ିବା; ଦୁର୍ଗ, ଦେଉଳ ତିଆରି କରିବା। ଆମେ ପରା ବିଶ୍ୱକର୍ମାଙ୍କ ବଂଶଧର ?

ମାଆ ପୁଅ ଏମିତି କଥା କହୁ କହୁ ଶୋଇ ପଡ଼ିଛନ୍ତି ପାହାନ୍ତି ପ୍ରହରରେ ନିଦ୍ରା ଦେବୀଙ୍କ କୋଳରେ। ପଦ୍ମାଳୟା ପ୍ରଭାତରେ ପୁଅକୁ ପଠାଇବା ପାଇଁ - ସାଥିରେ ନେବାକୁ ସଜବାଜ କରି ରଖିଛନ୍ତି - ତୋଳା ଯାଇଥିବା ବାରି ବରକୋଳି, ସଂଜରେ ତିଆରି କରି ରଖିଥିବା ପୋଡ଼ପିଠା, ଆଉ ଧର୍ମପଦର ଲୁଗାପଟା।

କୋଣାର୍କ କୋଳରେ ବିଷାଦଗ୍ରସ୍ତ ବିଶୁ ମହାରଣା ବି ରାତ୍ରିରେ ଭାଳି ହେଉଛନ୍ତି - ମନ୍ଦିର ଚୂଳି ମାରିବାରେ ସେ ବ୍ୟର୍ଥ ହୋଇଛନ୍ତି ବୋଲି। କଳସ ସହିତ ମନ୍ଦିର ଚୂଡାଟି ବସିପାରୁ ନାହିଁ - ଟଳି ପଡୁଛି। ମହାରାଜାଙ୍କର ଆଦେଶ ନିର୍ଦ୍ଧାରିତ ଦିନରେ ମନ୍ଦିର କାର୍ଯ୍ୟ ସମାପ୍ତ ନହଲେ ବଢ଼େଇମାନଙ୍କର ମୁଣ୍ଡକାଟ ହେବ। ଏହି ମନ୍ଦିର ବେଢ଼ାରୁ କେହି ଫେରି ପାରିବେ ନାହିଁ - ସେମାନଙ୍କର ପରିବାର ପାଖକୁ। ତାଙ୍କ ମାନସ ଚକ୍ଷୁରେ ଭାସି ଉଠୁଛି - ପଦ୍ମାଳୟାଙ୍କ ମୁଖମଣ୍ଡଳ। ସାଥିରେ ଅନୁମାନ କରୁଥିବା ପୁତ୍ରର ମୁଖ ମଣ୍ଡଳ। କେଉଁଟିଏ ହେଲାଣି ପ୍ରିୟ ପୁତ୍ର। ସତରେ ସେ ଦେଖି ପାରିବେ ନାହିଁ, ସେହି ପ୍ରିୟ ପୁତ୍ରର ମୁଖମଣ୍ଡଳ। ମନେ ମନେ ସେ ସ୍ମରଣ କରୁଛନ୍ତି ବେଣୁଧରଙ୍କୁ। ସେ ଜାଣିଛନ୍ତି ତାଙ୍କ ହାତରେ ତିଆରି ବେଣୁଧର ତାଙ୍କର ପ୍ରତ୍ୟକ୍ଷ ଦେବତା। ତାଙ୍କରି କୃପାରୁ ସେ ସବୁ ପାଇଛନ୍ତି। ପାଇଛନ୍ତି ଶ୍ରେଷ୍ଠ ଶିଳ୍ପୀର ସମ୍ମାନ। ଆଜି ସତେ କି କରୁଣା ଉଣା ହୋଇଗଲା ତାଙ୍କର ? କଳଙ୍କ ଲାଗିବ ତାଙ୍କର ଶିଳ୍ପୀ ଶ୍ରେଷ୍ଠ କପୋଳରେ। ସତେ ହାରିଯିବେ ଦେଉଳ ସମାପ୍ତିର ଶେଷ ମୁହୂର୍ତ୍ତରେ।

କେତେବେଳେ ଟିକିଏ ଆଖିର ପତା ଲାଗି ଯାଉଛି ତ, କେତେବେଳେ ସ୍ୱପ୍ନ ଦେଖି ବିବ୍ରତ ହୋଇ ପଡୁଛନ୍ତି। ଭାଜି ଯାଉଛି ନିଦ। ଭାବୁଛନ୍ତି ଏହି ବାରଶହ ବଢ଼େଇ, ବଡ଼ଭାଇ ବୋଲି ତାଙ୍କ ଉପରେ କେତେ ଭରସା ରଖିଛନ୍ତି। ସଦାଶିବ ସାମନ୍ତରା ତାଙ୍କର ସମସ୍ତ ପରିକଳ୍ପନାକୁ ଅନୁମୋଦନ କରିଛନ୍ତି। ଆଉ ମହାରାଜା - ମହାରାଣୀ ମନ୍ଦିରର ମୂଳଦୁଆ ପଡିବା ଦିନ ତାଙ୍କ ମସ୍ତକରେ ବାନ୍ଧି ଦେଇଥିଲେ ଶ୍ରେଷ୍ଠ ଶିଳ୍ପୀର ଶିରପା। ଅଖଣ୍ଡ ବିଶ୍ୱାସ ବିଶୁ ମହାରଣା ଉପରେ। ବିଶ୍ୱ ବିଖ୍ୟାତ ସୂର୍ଯ୍ୟମନ୍ଦିର ନିର୍ମିତ ହେବ ବିଶୁ ମହାରଣାର ପରିକଳ୍ପନା ଅନୁସାରେ। ଆଜି କ'ଣ ହେବାକୁ ଯାଉଛି - ଏହି ଶେଷ ପର୍ଯ୍ୟାୟରେ - ଭାବୁଛନ୍ତି ବିଶୁ ମହାରଣା। ହତାଶାରେ ହତୋତ୍ସାହିତ ହୋଇ ବିଶୁ ମହାରଣା ଛାଡି ଦେଇଛନ୍ତି ସବୁକଥା ବେଣୁଧରଙ୍କ ଉପରେ। ରଖିଲେ ରଖିବେ। ମାରିଲେ ମାରିବେ। ତାରିଲେ ତାରିବେ ସେ।

ପାହାନ୍ତିଆ ତାରାଟି ଏବେ ବି ଫିକା ପଡ଼ିନାହିଁ। ଶୁଭୁଛି ସମୁଦ୍ରର ଢ଼େଉର ଘୋ ଘୋ ଗର୍ଜନ। ସତେ ଅବା ବିଶୁ ମହାରଣାର ମୁଣ୍ଡରେ ସେହି ଘୋ ଘୋ ଗର୍ଜନ ହାତୁଡ଼ି ପିଟୁଛି। ବନ୍ଦ ହୋଇ ଯାଇଛି ମନ୍ଦିର ବେଢ଼ାରେ ନିର୍ମାଣ କାର୍ଯ୍ୟ, ବନ୍ଦ ହୋଇ ଯାଇଛି ନିହାଣ ମୁନ ଆଉ ହାତୁଡିର ଠକ୍ ଠକ୍ ଶବ୍ଦ। ବିଶୁ ମହାରଣା ଭାବୁଛନ୍ତି ବାରଶହ ବଢ଼େଇଙ୍କ କଥା। ଅନ୍ତରରେ ଆକଳନ କରୁଛନ୍ତି - ସେମାନଙ୍କର ମାନସିକ ଯନ୍ତ୍ରଣା।

ଆଜି ସମସ୍ତଙ୍କ କାନରେ ମୃତ୍ୟୁର ପଦଧ୍ୱନି। ସମୟର ସ୍ୱରରେ ବ୍ୟର୍ଥତାର ବିଳାପ। ଉଠିଯାଇ ଦେଖୁଛନ୍ତି ଶିଳ୍ପୀ ଶ୍ରେଷ୍ଠ ବିଶୁ ମହାରଣା। ମଧ୍ୟରାତ୍ରି ପର୍ଯ୍ୟନ୍ତ ଉନ୍ମାଦଗ୍ରସ୍ତ ଶିଳ୍ପୀ ଭାଇମାନେ ନିସ୍ତେଜ ହୋଇ ଶୋଇ ପଡ଼ିଛନ୍ତି ସନ୍ନିକଟ ଶିବିର ଗୁଡ଼ିକରେ, ଭିତରେ ଜୀବନର ଶେଷ ସୁରା ସେମାନେ ପିଇ ଦେଇ ଶାନ୍ତିରେ ସ୍ୱାଗତ କରିବାକୁ ଅପେକ୍ଷା କରିଛନ୍ତି ଆଜିର ଶେଷ ପ୍ରଭାତକୁ। ତହିଁପରଦିନର ପ୍ରଭାତ ଦର୍ଶନ କରିବା ତାଙ୍କ କପାଳରେ ନାହିଁ। ଆସନ୍ତା କାଲିର ସୂର୍ଯ୍ୟର ଶେଷ ଉତ୍ତାପକୁ ସେମାନେ ଦେହରେ ମାଖି ନେବେ। ତାପରେ ରାତ୍ରିର ଶିଥିଳତା - ସେମାନଙ୍କ ନିର୍ଜୀବ ଶରୀରକୁ ସବୁଦିନ ପାଇଁ ଆବୋରି ନେବ।



# (୨୨)

ଧର୍ମପଦ ବେଢ଼ା ଭିତରକୁ ସିଂହ ଦ୍ୱାର ଦେଇ ପ୍ରବେଶ କରିବା ପରେ, ଭୁଲି ଯାଇଛି ବାପାଙ୍କୁ ଖୋଜିବାକୁ। ଆଶ୍ଚର୍ଯ୍ୟ ହୋଇ ଯାଇଛି ଅପୂର୍ବ କାରୁକଳାର କୋଣାର୍କର ଏହି ସୂର୍ଯ୍ୟମନ୍ଦିର ଛିଡା ହୋଇଥିବାର ଦେଖି। ଆନନ୍ଦରେ ବୁଲିଛି ମନ୍ଦିର ବେଢ଼ା ଭିତରେ। ମନ୍ଦିର ବେଢ଼ା ହେଉଛି ମେଘନାଦ ପାଚେରୀ ଘେରା।

ଏହି ମେଘନାଦ ପାଚେରୀ ଭିତରକୁ ପ୍ରଥମେ ପ୍ରବେଶ କରିବା ବେଳକୁ ମୁଖଶାଳାର ଦ୍ୱାର ବନ୍ଧର କାରୁକାର୍ଯ୍ୟ ଦେଖି ମୁଗ୍ଧ ହୋଇଯାଇଛି। ଏହାର ଦ୍ୱାର ବନ୍ଧରେ ପଦ୍ମ ପାଖୁଡ଼ା, ଲତା ଓ ପୁଷ୍ପମାଳା, ଅପ୍‌ସରା ଓ ବିଭିନ୍ନ ଭଂଗୀରେ ନାରୀ ଓ ପୁରୁଷଙ୍କ ମୂର୍ତ୍ତି ରହିଛନ୍ତି। କେତେକ ଯୌନ ମୂର୍ତ୍ତି ମଧ୍ୟ ଦ୍ୱାର ଦେଶରେ ଥିବାର ସେ ଦେଖିଲେ। ଦ୍ୱାରବନ୍ଧର ଉପରଭାଗରେ ଗଜମୂର୍ତ୍ତି, ରାଜା ଓ ପାତ୍ରମନ୍ତ୍ରୀଙ୍କର ମୂର୍ତ୍ତି ରହିଥିବାର ଦୃଶ୍ୟ ରହିଛି।

ଏହି ପୂର୍ବଦ୍ୱାର ବନ୍ଧର ଦୁଇ ପାର୍ଶ୍ୱରେ ଦୁଇଟି ଖମ୍ବ ରହିଛି। ଦ୍ୱାର ଦେଶ ଓ ଖମ୍ବ ମୁଖଶାଳାର କାନ୍ଥଠାରୁ ପ୍ରାୟ ୧୨ଫୁଟ ବାହାରକୁ ବାହାରିଛି। ଏହି ଦୁଇ ଖମ୍ବ ଉପରେ ବିରାଟଲୁହାକଡ଼ି ଯାହାର ଲମ୍ବ ମଧ୍ୟ ୨୧ଫୁଟ ଏବଂ ଉଚ୍ଚତା ୧ଫୁଟ ଓ ପ୍ରସ୍ଥ ୮ଇଞ୍ଚ, ଯାହା ଉପରେ ପ୍ରସିଦ୍ଧ ନବଗ୍ରହ ମୂର୍ତ୍ତି ରହିଛି। ନବଗ୍ରହ ମୂର୍ତ୍ତି ଖଣ୍ଡିଏ ବିରାଟ ପଥର ଦେହରେ କିଭଳି ସୁନ୍ଦର ଭାବରେ ନିର୍ମିତ ହୋଇଛି। ଭାବି ପାରିଲା ନାହିଁ ସେ, ଏଭଳି ପଥରରେ କେମିତି ନବଗ୍ରହ ମୂର୍ତ୍ତିଗୁଡ଼ିକ ତିଆରି ହୋଇଛି।

ଭିତରକୁ ପ୍ରବେଶ କରି ଧର୍ମପଦ ଧୀରେ ଧୀରେ ବୁଲି ବୁଲି ଯେତେବେଳେ କୌତୂହଳର ସହିତ ଦେଖୁଥିଲା, ମୁଗ୍ଧ ହେଉଥିଲା - ଦେଉଳ ପୀଠର ତଳ ପତ୍ତନର ଚତୁର୍ଦ୍ଦିଗରେ ଧାଡ଼ି ବନ୍ଧା ଖୋଦିତ ହାତୀମୂର୍ତ୍ତି ଗୁଡ଼ିକୁ ଦେଖି। ହାତୀ ପଲର କାର୍ଯ୍ୟ କଳାପ ଅତ୍ୟନ୍ତ ଚିତ୍ତାକର୍ଷକ। ଅଙ୍କିତ ପ୍ରାୟ ଦୁଇ ହଜାର ହାତୀମାନଙ୍କ ମୂର୍ତ୍ତିର କୌତୁକପୂର୍ଣ୍ଣ

ଖେଳ । ସନ୍ତାନ ପାଳନର ବାତ୍ସଲ୍ୟ ଓ ସେମାନଙ୍କର ବୀରତ୍ୱ ପ୍ରଦର୍ଶନ ଦୃଶ୍ୟ ଦେଖି ବିମୁଗ୍ଧ ହୋଇଗଲା ଧର୍ମପଦ । ଏହାବ୍ୟତୀତ ସେହି ହସ୍ତୀ ଶ୍ରେଣୀ ସହିତ ଦେଖୁଥିଲା, ଅଶ୍ୱବାହିନୀ, ପଦାତିକ ବାହିନୀ, ସବାରୀ ବାହକ, ଭାରବାହକ, ଶଗଡ଼ିଆମାନଙ୍କୁ । ଦେଖୁଥିଲା କେମିତି ପଥପ୍ରାପ୍ତ ରୋଷେଇର ଦୃଶ୍ୟ । ଶିକାରୀମାନଙ୍କର ନାନାପ୍ରକାର ଶିକାରର ଦୃଶ୍ୟ । ସର୍ବୋପରି ଯୁଦ୍ଧ ଓ ଲଢ଼େଇର ଦୃଶ୍ୟ । ଯେଉଁଠିକୁ ଆଖି ପକାଉଛି - ମନ୍ଦିର ଗାତ୍ରରେ ଶୃଙ୍ଖଳିତ ସୂକ୍ଷ୍ମ କାରୁକାର୍ଯ୍ୟ । ବିଭିନ୍ନ ମୂର୍ତ୍ତି ଏବଂ ଏପରି ପରିକଳ୍ପନା ଏକ ବିଶାଳ ମନ୍ଦିର ଗାତ୍ରରେ ସମ୍ଭବ ହେଲା କେମିତି ? ତାର ଆଖି ପାଉନାହିଁ ମନ୍ଦିର ଚୂଳକୁ । ବିଷାଦରେ ବସିଥିବା ଶିଳ୍ପୀ କେତେଜଣଙ୍କୁ ଦେଖି ବୁଝିଲା ମନ୍ଦିରର ଉଚ୍ଚତା ହେବ ୨୩୦ ଫୁଟ । ହେଲେ କଳସ ପରେ ଚୂଳିବସିବା ବାକି ଅଛି । ଦେଖୁଛି ସଂପୂର୍ଣ୍ଣ ହୋଇ ଯାଇଥିଲା ଦକ୍ଷିଣ ପଶ୍ଚିମ କୋଣର ଦେବୀ ମନ୍ଦିରକୁ । ପଚାରି ବୁଝିଲା ଏ ମନ୍ଦିରର ନାମ 'ମାୟାଦେବୀ ମନ୍ଦିର' । ତା ଦେହର କାରୁକାର୍ଯ୍ୟ ମଧ୍ୟ ଅପୂର୍ବ । ମନ୍ଦିରର ଗୋଟିଏ ମାତ୍ର ଦ୍ୱାର ଉତ୍ତରକୁ । ଭିତରକୁ ପ୍ରବେଶ କରି ଦେଖିଲା ସିଂହାସନ ଉପରେ ବସିଛନ୍ତି ଦେବୀ ମୂର୍ତ୍ତି । ମନ୍ଦିର ଭିତର କାନ୍ଥଦେହରେ ଖୋଦିତ ହୋଇଛି କେତେ ଦେବଦେବୀ ସୁନ୍ଦର ମୂର୍ତ୍ତି ଗୁଡ଼ିକ । ଖୋଦିତ ହୋଇଛି ସୂକ୍ଷ୍ମ କାରୁକାର୍ଯ୍ୟର ଲତା, ପୁଷ୍ପ । ଯାହା ମନୋମୁଗ୍ଧକର । ମନ୍ଦିରଟି ସଂପୂର୍ଣ୍ଣ ହୋଇ ଯାଇଛି ।

ତାପରେ ପୁଣି ଆସିଛି ସେହି ଚୂଳମରା ଯାଇ ନଥିବା ସୂର୍ଯ୍ୟ ମନ୍ଦିରକୁ । ଚାରିପାଖରେ ବୁଲି ବୁଝି ପାରିଲା - ମନ୍ଦିରଟି ରଥାକୃତିର । ରେଖା ଦେଉଳ । ଦୁଇ ପାର୍ଶ୍ୱରେ ବାରଗୋଟିକରି ଚକ ନିର୍ମିତ ହୋଇଛି ସୂର୍ଯ୍ୟଙ୍କ ରଥର କାରୁକାର୍ଯ୍ୟର ଚକଗୁଡ଼ିକ । ସମ୍ମୁଖରେ ସାତୋଟି ସବଳ ଅଶ୍ୱ । ଆଗ ଦୁଇ ଗୋଡ଼ରେ କଦମ ତୋଳି ସତେ ଅବା ବାହି ନେଉଛନ୍ତି ରଥଟିକୁ । ସତେ ଅବା ମନ୍ଦିରଟି ଏକ ବିଶାଳ ବିମାନ । ସମ୍ମୁଖ ଭାଗରେ ତାର ମୁଖଶାଳା । ଦୁଇଟି ମନ୍ଦିରକୁ ଦେଖିଲେ ଆକାଶ ମାର୍ଗରେ ଗତିଶୀଳ ସୂର୍ଯ୍ୟଙ୍କର ରଥର ଭ୍ରମ ସୃଷ୍ଟି କରୁଛି ।

ତାର ଠିକ୍ ସମ୍ମୁଖକୁ ପୂର୍ବ ଭାଗକୁ ଲାଗି ତିଆରି ହୋଇଛି ନାଟମନ୍ଦିର । ଯାହାର ଉପରେ ତିଆରି ହୋଇଛି ଛଅଟି ଭୈରବ ମୂର୍ତ୍ତି । ସତେ ଅବା ମୂର୍ତ୍ତିଗୁଡ଼ିକ ଜୀବନ୍ତ । ମାତ୍ର ସବୁ ମୂର୍ତ୍ତି ଗୁଡ଼ିକ ଆକାରରେ ଏକାପ୍ରକାର । ସେମାନଙ୍କ ହସ୍ତରେ ଅସ୍ତ୍ର, ଡ଼ମ୍ବରୁ, କୁଠାର, ତ୍ରିଶୂଳ ଏବଂ ପାନପାତ୍ର । ପାନ କରି ସେମାନେ ଯେମିତି ପ୍ରମତ୍ତ ମାର୍ତ୍ତଣ୍ଡ ରୂପଧାରଣ କରିଛନ୍ତି । ଦେହରେ ସେମାନଙ୍କର ରୁଦ୍ରାକ୍ଷର ମାଳା । ସେମାନେ ସମସ୍ତେ ଚତୁର୍ମୁଖ ଓ ହସ୍ତରେ ସେମାନଙ୍କର ଖର୍ପର ।

ଏହି ମୁଖଶାଳା ମନ୍ଦିରକୁ ଜଗମୋହନ ମନ୍ଦିର କୁହାଯାଏ । ଏହି ଜଗମୋହନ ମନ୍ଦିର ଊର୍ଦ୍ଧ୍ୱରେ ଦୁଇ ସ୍ତରରେ ନାରୀମୂର୍ତ୍ତି, ଯେଉଁମାନେ କି ବୀଣା, ବେଣୁ, କାହାଳୀ, ଝାଂଜ, ଗିନି, ମର୍ଦ୍ଦଳ ଆଦି ହସ୍ତରେ ଧାରଣ କରି ବାଦ୍ୟ କରିବା ଭଂଗୀରେ । ସେମାନଙ୍କର ଯୌବନଦୀପ୍ତ ସୁଗଠିତ ଶରୀର ପ୍ରକାଶରେ ସତେ ଅବା ସେମାନେ ଜୀବନ୍ତ ହୋଇ ଉଠିଛନ୍ତି । ଶିଳ୍ପ ଶାସ୍ତ୍ର ବିଶାରଦ କିଶୋର ଧର୍ମପଦ ଦେଖୁଛି, ସେଠାରେ ରୂପ ପାଇଛି, ଅଳସୀ, ଦର୍ପଣା, ପାର୍ଶ୍ୱମର୍ଦ୍ଦଳା, ଅର୍ଚ୍ଚନା, ଅଭିମାନୀ ଇତ୍ୟାଦି ଭଂଗୀରେ ବହୁ ନାରୀ ମୂର୍ତ୍ତି । ସେତେବେଳେ ମନେ ପଡ଼ି ଯାଉଛି ତାର ସର କଥା । ଶୈଶବର ଖେଳସାଥୀ, କୈଶୋରର ସହଚରୀ । ଏହି ଭଂଗୀରେ ସେ ବହୁବାର ଛିଡା ହୋଇଛି ତା ନିହଣ ମୁଗୁରୁକୁ ଖୋରାକ୍ ଯୋଗାଇବା ପାଇଁ ।

ବହୁ ଦୂରରେ ତାର ସେହି ପ୍ରିୟ ସହଚରୀ ସରକୁ ସେ ଛାଡ଼ି ଆସିଛି । ଆସିଲାବେଳେ ସେ ଅଶ୍ରୁଳ ନୟନରେ ଛିଡା ହୋଇ ଅନାଇଥିଲା ତାର ଆସିବା ପଥକୁ । ପୂର୍ବଦିନ ବାରି ବଗିଚାରେ ମୂର୍ତ୍ତି ଗଢ଼ିଲା ବେଳେ କହିଥିଲା - ମୋତେ ନେଇ ଯାଅ ତୁମ ସାଥିରେ ଭାଇ । ମୁଁ ଦେଖିବି ସମୁଦ୍ର, ଦେଖିବି କୋଣାର୍କ ଦେଉଳ କେମିତି ତିଆରି ଚାଲିଛି ।

ଧର୍ମପଦ କହିଥିଲା - ଝିଅ ପିଲାକୁ ନେଇ ରଖିବି କେଉଁଠି ?

ସର କହିଥିଲା - ତୁମେ ଯେଉଁଠି ରହିବ । ତୁମରି ପାଖେ ପାଖେ ମୁଁ ରହିବି । ତୁମକୁ ଛାଡି, ମୁଁ ଯେ ଦଣ୍ଡେ ମାତ୍ର ବଂଚି ପାରିବି ନି ଭାଇ । ତା ଆଖିରେ ଜକେଇ ଆସିଥିଲା ଅଶ୍ରୁ ।

ଧର୍ମପଦ ତାକୁ ନିଜ ପାଖକୁ ଆଉଜାଇ ଆଣି ପୋଛି ଦେଇଥିଲା ତାର ଆଖି ଦୁଇଟିକୁ । କହିଥିଲା - ଯେତେ ଚଂଚଳ ହେଉ, ମୁଁ ବାପାଙ୍କୁ ଧରି ଫେରିବି ସର । ତୁ ମାଆ କଥା ବୁଝିବୁ ।

ବଡ଼ ଦେଉଳଟିର ଗାତ୍ରରେ ବହୁ ମୂର୍ତ୍ତିକୁ ସେ ଦେଖି ଲଜ୍ଜିତ ହୋଇଛି । ସେ ମୂର୍ତ୍ତି ଗୁଡ଼ିକ ଶୃଙ୍ଗାର ରତ ।

ଶିଳ୍ପ ଶାସ୍ତ୍ରରେ ରହିଛି ମନ୍ଦିରକୁ କୁ ଦୃଷ୍ଟିର ପ୍ରଭାବରୁ ରକ୍ଷା କରିବା ପାଇଁ ଏହି ମୂର୍ତ୍ତିଗୁଡିକ ଖୋଦନ କରାଯାଇଥାଏ । ସେ ପଢ଼ିଛି, ଭୂତ, ପ୍ରେତ, ଯକ୍ଷ, ଯୋଗିନୀ, ଡାହାଣୀମାନେ ଏହି ମୂର୍ତ୍ତିଗୁଡ଼ିକୁ ଦେଖି ମନ୍ଦିରର ଅନିଷ୍ଟ ସାଧନ କରିବାକୁ ଭୁଲି ଯାଆନ୍ତି ।



ହାତୀମାନଙ୍କର କୌତୁକ



ନୃତ୍ୟରତା ନାରୀ ମୂର୍ତ୍ତି




ଦୁର୍ଗା ମୂର୍ତ୍ତିଙ୍କ ପାର୍ଶ୍ୱରେ ପାର୍ଶ୍ୱ ଦେବାଦେବୀ



ମନ୍ଦିର ଗାତ୍ରରେ ଦେବାଦେବୀ



କୋଣାର୍କ ମନ୍ଦିର ସମ୍ମୁଖରୁ ଆନୀତ ପୁରୀ ଜଗନ୍ନାଥଙ୍କର ବଡ଼ ଦେଉଳ
ସମ୍ମୁଖ ଅରୁଣ ସ୍ତମ୍ଭ ।



ମନ୍ଦିର ପାର୍ଶ୍ୱରେ ଥିବା ଯୁଦ୍ଧ ଅଶ୍ୱ



କୋଣାର୍କର ଚକ



ମହାରାଜା ଲାଙ୍ଗୁଳା ନରସିଂହ ଦେବଙ୍କ ଧନୁର୍ବିଦ୍ୟା ଅଭ୍ୟାସ



ଗଜ ସିଂହ ମୂର୍ତ୍ତି



ନର୍ତ୍ତକୀ ହସ୍ତରେ ମାଦ୍ଦଳ ବାଦ୍ୟ

ଧର୍ମପଦର ମନେ ପଡି ଯାଉଥିଲା ମାଆ ପଦ୍ମାବତୀଙ୍କ କଥା। କେତେ ମମତାମୟୀ ମାଆ। ତାର ପାଖରେ ତାକୁ ଦଣ୍ଡେ ନଦେଖିଲେ ଯାହାର ପାଟିକୁ ଦାନା ଗଣ୍ଡାଏ ଯାଏନାହିଁ। ତାହାକୁ କୋଳରେ ନ ଧରିଲେ ଆଖିକୁ ତାର ନିଦ ଆସେ ନାହିଁ। ସେହି ମାଆ, ବିଦାୟ ବେଳାରେ ଯାହାର ଆଖିରୁ ଝର ଝର ହୋଇ ଲୁହ ଝରି ପଡୁଥିଲା ତାଙ୍କର ଗଣ୍ଡ ଦେଶ ଭିଜାଇ। ତାଙ୍କରି ଆଖି ଅଗୋଚରକୁ ଆସିଲା ପର୍ଯ୍ୟନ୍ତ ସେ କେମିତି ତାହାରି ପଥକୁ ଅନେଇ ରହିଥିଲେ। କେଡ଼େ ନିରିମାଖି ମାଆ ସେ। ଆଜି ତାଙ୍କ ପାଖରେ ପୁଅ ଓ ପତି ମଧ୍ୟରୁ ଜଣେ ହେଲେ କେହି ନାହିଁ। ସେହି ମାତୃମୂର୍ତ୍ତିକୁ ଧର୍ମପଦ ଦେଖୁଥିଲା ମନ୍ଦିର ଗାତ୍ରରେ। ବିଭିନ୍ନ ଭଂଗୀରେ ନାରୀ ମୂର୍ତ୍ତିଗୁଡ଼ିକ। କେତେ ସେମାନଙ୍କର ଘର କରଣା ସରଂଜାମ। କେତେ ରୂପ, କେତେ ଢ଼ଙ୍ଗ, କେତେ ବେଶଭୂଷା ସେମାନଙ୍କର। ସ୍ୱାମୀ ସହ ଜୀବନ ଜଂଜାଳରେ ସାମିଲା ହେବା, ଶିଶୁକୁ ସ୍ତନ୍ୟ ପାନ କରାଇବା, ଶିଶୁର ହାତଧରି ବୋଝ ମୁଣ୍ଡାଇ ଚାଲିବା, ରନ୍ଧନ, ବେଣୀବନ୍ଧନ, ପ୍ରସାଧନ, ଦେବପୂଜା ଇତ୍ୟାଦି କରୁଥିବା ନାରୀମୂର୍ତ୍ତିମାନଙ୍କ ମଧ୍ୟରେ ସେ ତାର ସ୍ନେହମୟୀ ମହୀୟସୀ ମାଆକୁ ଖୋଜି ପାଉଥିଲା।

ସେ ପୁଣି ଦେଖୁଥିଲା ପ୍ରାୟ ଦେଢ଼ଶହ ଫୁଟ ଉର୍ଦ୍ଧ୍ୱରେ ବଡ଼ ଦେଉଳ ଉପରେ ଏକ ଗଜସିଂହ ମୂର୍ତ୍ତି ଶୋଭା ପାଉଛି। ସିଂହଟି ହସ୍ତୀ କବଳରୁ ରକ୍ଷା କରୁଛି ଗୋଟିଏ ମଣିଷକୁ। ଥୋଡ଼ରେ ଧରି ମଣିଷଟିକୁ କଚାଡି ସଂହାର କରିବା ପୂର୍ବରୁ ସିଂହ ତା ଉପରେ ମାଡ଼ି ବସିଛି। ଏକି ଅପୂର୍ବ ଦୃଶ୍ୟ। କେଉଁ ଏକ ମହନୀୟ ଚିନ୍ତାଧାରା ନେଇ ଶିଳ୍ପୀ ତାର ନିହାଣ ମୁଗୁର ନେଇ ପଥର କାଟି ଗଢ଼ି ଦେଇଛି ?

ଏହି ପଶୁରାଜ ସିଂହ, ହସ୍ତୀ ଓ ମଣିଷର ମୂର୍ତ୍ତିଟିଏ। ଜଗମୋହନ ମନ୍ଦିର ସମ୍ମୁଖରେ ମଣିଷକୁ ଧରିଥିବା ହସ୍ତୀଟି ଉପରେ ସେପରି ବିଶାଳ ସିଂହ ମୂର୍ତ୍ତି ମଧ ରହିଛି। ପାଖକୁ ଯାଇ ଦେଖୁଛି ବାରବର୍ଷ ବାଳକଟି, ସିଂହଟି ହାତୀଟି ଉପରେ ମାଡ଼ି ବସିଛି। ହାତୀଟି ମୁହମାଡ଼ି ପଡ଼ିଛି। ସିଂହଟି ହାତୀ ପିଠି ଉପରେ ବସି ଆଗଗୋଡ଼ ଦୁଇଟିକୁ ଦମ୍ଭରେ ଟେକି ରଖିଛି। ଏହା ବୋଧହୁଏ ମହାରାଜା ନରସିଂହ ଦେବଙ୍କର ବୀରତ୍ୱର ଭାବମୂର୍ତ୍ତି। ବଳଶାଳୀଙ୍କ କବଳରୁ ଦୁର୍ବଳକୁ ରକ୍ଷା କରିବାର ପ୍ରତାପର ପ୍ରତୀକ। ଆଶ୍ଚର୍ଯ୍ୟର କଥା ଏହି ମୂର୍ତ୍ତିଟି ଖଣ୍ଡିଏ ପଥରରେ ନିର୍ମିତ ହୋଇଛି। ଏହି ମୂର୍ତ୍ତିଟିର ଲମ୍ବ ପ୍ରାୟ ସାଢ଼େ ଆଠଫୁଟ ଓ ପ୍ରସ୍ଥ ପ୍ରାୟ ପାଂଚଫୁଟ ଏବଂ ଉଚ୍ଚତା ନଅଫୁଟ।

ଜଗମୋହନ ମନ୍ଦିରର ଶୀର୍ଷ ଭାଗରେ ଗର୍ଭ ଭାଗଟି ଅତ୍ୟନ୍ତ ଆକର୍ଷଣୀୟ ହୋଇଛି। ଏହି ଗର୍ଭ ଭାଗରେ ସୁନ୍ଦର ପଦ୍ମଫୁଲଟିଏ ଖୋଦିତ ହୋଇଛି। ଯାହାର ବ୍ୟାସ ପ୍ରାୟ ପାଞ୍ଚ ଫୁଟ। ଏହାର ଉପର ସ୍ତରର ପ୍ରତ୍ୟେକ ପାଖୁଡ଼ାରେ ନର୍ତ୍ତକୀମାନଙ୍କର ମୂର୍ତ୍ତି ଖୋଦନ କରାଯାଇଛି। ସେମାନଙ୍କର ନୃତ୍ୟ ଓ ସଂଗୀତ ଗାନ କରୁଥିବାର ଭଂଗୀ ଅତୀବ ଆକର୍ଷଣୀୟ ହୋଇଛି। ଏହି ଜଗମୋହନ ମନ୍ଦିର ଦେହର ସବୁଠୁ ସୂକ୍ଷ୍ମ ଓ ସୁନ୍ଦର କାରୁକଳା ଦେଖି ଧର୍ମପଦ ବିମୁଗ୍ଧ ହୋଇଯାଇଛି।

ବଡ଼ ଦେଉଳର ପୂର୍ବ ପାହାଚ ସନ୍ନିକଟରେ ସୁନ୍ଦର ସୁଗଠିତ ସାତୋଟି ସୁସଜ୍ଜିତ ଅଶ୍ୱମୂର୍ତ୍ତି ଶୋଭା ପାଉଛି। ଯେଉଁ ଗୁଡ଼ିକର ଲଗାମ ସୂର୍ଯ୍ୟଙ୍କର ସାରଥୀ ଅରୁଣ ଦେବଙ୍କ ହସ୍ତରେ। ଯେଉଁ ମୂର୍ତ୍ତିଟି ଉପରି ଭାଗରେ କ୍ଷୁଦ୍ର ଛାମୁଣ୍ଡି ଭଳି ଖୋଲା ମନ୍ଦିର ମଧ୍ୟରେ ଲାଗାମ ଧରି ବସିଛନ୍ତି।

କି ଅପୂର୍ବ ଏହି ସୂର୍ଯ୍ୟ ମନ୍ଦିରର ନିର୍ମାଣର ପରିକଳ୍ପନା। ଭଗବତ୍ ଗୀତାରେ ସୂର୍ଯ୍ୟଙ୍କର ଏହି ସାତୋଟି ଅଶ୍ୱ ଗାୟତ୍ରୀ, ଉଷ୍ଣିକ, ଅନୁଷ୍ଟପ, ବୃହତି, ପଂକ୍ତି, ତ୍ରିଷ୍ଟୁପ ଓ ଜଗତି ନାମରେ ପରିଚିତ। ଧର୍ମପଦ ଗୀତା ଅଧ୍ୟୟନ କରିଛନ୍ତି କି ନାହିଁ କିଏ କହି ପାରିବ। ମାତ୍ର ସେ ଦେଖୁଛନ୍ତି ସୂର୍ଯ୍ୟଙ୍କର ଅଶ୍ୱଗୁଡ଼ିକ ସବଳ, ସୁଗଠିତ ଓ ସୁନ୍ଦର ହୋଇଛି। ସେ ମନ୍ଦିରଟିର ବିଭିନ୍ନ ସ୍ଥାନରେ ଦେଖୁଛନ୍ତି ସେହି ଅରୁଣଙ୍କର ମୂର୍ତ୍ତି ଖୋଦିତ କରାଯାଇଛି। ସର୍ବାଗ୍ରେ ଅରୁଣ ରାଗରେ ପ୍ରଭାତ ପ୍ରକାଶିତ ହୁଏ। ଆଲୋକିତ ହୁଏ ଆକାଶ, ପୃଥିବୀ, ସମୁଦ୍ର, ନଦ, ନଦୀ, ସ୍ଥାବର ଜଂଗମ। ତାପରେ ସୂର୍ଯ୍ୟଙ୍କର ତପ୍ତ କାଞ୍ଚନ ବିଛାଡ଼ି ପଡ଼େ ମୁଖ୍ୟ ଦେଉଳରେ, ଯେଉଁଠି ପଦ୍ମପୀଠ ଉପରୁ ମୁଖ-ଶାଳାର କାନ୍ଥ ଆରମ୍ଭ ହୋଉଛି। ଏହି କାନ୍ଥ ପଞ୍ଚରଥ ଆକାରରେ ନିର୍ମିତ। ତିନି ସ୍ତରର ପୀଢ଼ କାନ୍ଥ ଉପରେ ଦେଖାଯାଉଛି। ଏହି କାନ୍ଥ, ଉପରୁ ବାହାରି ବାହାରକୁ ବାହାରିଛି। ଯାହାର ଚଉଡ଼ା ପ୍ରାୟ ଚାରିଫୁଟ।

ଧର୍ମପଦ ନିଠେଇ ଦେଖୁଛି ଅଦ୍ଭୁତ ନିର୍ମାଣ କୌଶଳ। ଏହି ତିନିସ୍ତର ପୀଢ଼ ମଧ୍ୟରୁ ପ୍ରଥମ ଓ ଦ୍ୱିତୀୟ ସ୍ତରର ଛଅ ପ୍ରସ୍ଥ ପୀଢ଼ ରହିଛି। ଏହି ଦୁଇ ସ୍ତରର ପୀଢ଼ର ଚତୁଃପାର୍ଶ୍ୱରେ ସମ୍ମୁଖ ଭାଗରେ ପୁଣି ଧାଡ଼ିବନ୍ଧା ଗଜବାହିନୀ, ଅଶ୍ୱବାହିନୀ ଓ ପଦାତିକ ବାହିନୀ ଓ ଯୁଦ୍ଧ ଯାତ୍ରାର ଦୃଶ୍ୟ ଶୋଭା ପାଉଛି।

✓ଦ୍ୱିତୀୟ ଓ ତୃତୀୟ ସ୍ତରର ବ୍ୟବଧାନ ମଧ୍ୟରେ ମର୍ଦ୍ଦଳ, ମଞ୍ଜିରା (ଗିନି) କରତାଳ, (ଝାଂଜ) ଓ କାହାଳୀ ବାଦ୍ୟରତା ନାରୀ ମୂର୍ତ୍ତିମାନ ରହିଛି। ପୂର୍ବ ଓ ଉତ୍ତର ପୂର୍ବ ପାର୍ଶ୍ୱରେ

ଦ୍ୱାର ଉପରକୁ ପ୍ରଥମପୀଢ଼ ଉପରେ ଦୁଇଟି ଲେଖାଏଁ ଶିବମୂର୍ତ୍ତି ରହିଛନ୍ତି। ମୂର୍ତ୍ତିମାନଙ୍କ କାନ୍ଧରେ ସର୍ପ ପଇତା ସ୍ୱରୂପ ଶୋଭା ପାଉଛି। ଏହି ଶିବ ମୂର୍ତ୍ତିମାନଙ୍କର ଚାରୋଟି ଲେଖାଏଁ ମୁଖ ରହିଛି ଏବଂ ପ୍ରତ୍ୟେକ ମୁଖରେ ତିନୋଟି ଲେଖାଏଁ ଆଖି ରହିଛି। ଧର୍ମପଦ ଭାବୁଛି - ବୋଧହୁଏ ଏମାନଙ୍କୁ ଘଣ୍ଟ-ଭୈରବ କୁହାଯାଏ। ଏମିତି ମନ୍ଦିର ବେଢ଼ା ଭିତରେ ମନ୍ଦିର ଗାତ୍ରରେ ସମୂହ ମୂର୍ତ୍ତି ଓ କାରୁକାର୍ଯ୍ୟ ଦେଖି ବିହ୍ୱଳିତ ଧର୍ମପଦ। ଭାବୁଥିଲା ଶିଳ୍ପୀ ଶ୍ରେଷ୍ଠ ବାପାଙ୍କର ଏ ମନ୍ଦିର ନିର୍ମାଣର ପରିକଳ୍ପନା। ସବୁ ଶୁଣିଛି ସେ ମାତାଙ୍କ ମୁଖରୁ। ଏ ପର୍ଯ୍ୟନ୍ତ ସେ ଭୁଲି ଯାଇଥିଲା - ସେହି ବାପାଙ୍କୁ ସେ ଖୋଜିବାକୁ ଆସିଛି ଏହି ମନ୍ଦିର ବେଢ଼ାରେ।



# (୨୩)

ବ୍ୟର୍ଥ ମନୋରଥ ହୋଇ ବିଷାଦରେ ବସିଛନ୍ତି ଶିଳ୍ପୀମାନେ । ଅପୂର୍ବ ସୁନ୍ଦର ବାଳକଟିଏ ଶିଳ୍ପୀମାନଙ୍କୁ ପଚାରି ବୁଝୁଥିଲା ମନ୍ଦିରରେ ନିର୍ମିତ ମୂର୍ତ୍ତିଗୁଡ଼ିକର କଥା । ଏବେ ପଚାରୁଛି କିଏ ସେହି ଶିଳ୍ପୀ ଶ୍ରେଷ୍ଠ ବିଶୁ ମହାରଣା । ଭାଗ୍ୟକୁ ସୁଦର୍ଶନ ସେହିଠାରେ ବସିଥିଲେ । ସେ ବାଳକଟି ଆଡକୁ ଅଗ୍ରସର ହେଲେ ଏବଂ ପଚାରିଲେ କାହାକୁ ଖୋଜୁଛ ବାବୁ । ମୁଁ ଖୋଜୁଛି ଶିଳ୍ପୀ ଶ୍ରେଷ୍ଠ ବିଶୁ ମହାରଣାଙ୍କୁ, କହିଲା ଧର୍ମପଦ । ସେ ତୁମର କିଏ ? ମୋର ବାପା ।

ଆରେ ତୁହିଁ ଆମର ଧର୍ମପଦ । ଧର୍ମପଦର ମସ୍ତକରେ ଚୁମ୍ବନଟିଏ ଆଙ୍କିଦେଲା । ଠିକ୍ ସମୟରେ ପହଞ୍ଚିଲୁ ବାପା । ଆଜିର ରାତି ପାହିଲେ ଆମ ବାରଶହ ବଢ଼େଇଙ୍କର ମୁଣ୍ଡକାଟ ହେବ ।

କାହିଁକି କି ଦୋଷ ସେମାନେ କରିଛନ୍ତି ? ଏପରି ବିଶାଳ ଅପୂର୍ବ କାରୁକଳାର ମନ୍ଦିରଟିଏ ଗଢ଼ିଛନ୍ତି ବୋଲି ?

ନାହିଁରେ ବାପା – ମନ୍ଦିରର ନିର୍ମାଣ କାର୍ଯ୍ୟ ଶେଷ ହୋଇ ପାରୁଛି କେଉଁଠି ? ତାର ଚୂଳି ମରିପାରୁ ନାହିଁ ।

ଦଧିନଉତି ନିର୍ଣ୍ଣୟ କରିବାରେ କେଉଁଠି ତ୍ରୁଟି ରହିଯାଇଛି ନିଶ୍ଚୟ । ନୋହିଲେ ଚୂଳି ମରି ପାରିବ ନାହିଁ କାହିଁକି ?

ଆରେ ବାପା, ସମସ୍ତ ଶିଳ୍ପୀଙ୍କର ତ୍ରୁଟି ରହିପାରେ । ହେଲେ ଶିଳ୍ପୀ ଶ୍ରେଷ୍ଠ ବିଶୁ ମହାରଣାର ତ୍ରୁଟି ରହିବା ଅସମ୍ଭବ ।

ମୁଁ ବାପାଙ୍କୁ ଦେଖା କଲେ ତାଙ୍କଠୁଁ ବୁଝିନେବି କ'ଣ ହୋଇଛି । ଆପଣ ଆଗେ ବାପାଙ୍କ ପାଖକୁ ନେଇ ଚିହ୍ନାଇ ଦିଅନ୍ତୁ ମୋତେ ।

ମୋତେ ତୁ ଚିହ୍ନି ପାରୁଛୁ ବାପା। ନା ଚିହ୍ନିବୁ କେମିତି ? ମୁଁ ଘରର ବାପା।

ସୁଦର୍ଶନଙ୍କ ପାଦରେ ମୁଣ୍ଡିଆ ମାରି ପ୍ରଣାମ କଲା ଧର୍ମପଦ। ତାକୁ ଉଠାଇ ଦେଇ ସୁଦର୍ଶନ ନେଇଗଲେ ବିଶୁ ମହାରଣାଙ୍କ ପାଖକୁ।

x x x x

ବିଷାଦ ବଦନରେ ବସିଛନ୍ତି ବିଶୁ ମହାରଣା। ଦେଉଳର କାନ୍ଥକୁ ଆଉଜି। ମନ୍ଦିରର ଚୂଳି ମାରିବାର ଆଶା ସେ ପରିତ୍ୟାଗ କରିଛନ୍ତି। ରୂପସା ଗଡ଼ର ଦଳବେହେରା ଆଣିଥିବା ସୁଦକ୍ଷ ଶିଳ୍ପୀ ସମେତ କମଳ ମହାରଣାଆଦି ବାରମ୍ବାର ଚେଷ୍ଟା କରି ଧରିପାରିନାହାନ୍ତି – ତ୍ରୁଟି କେଉଁଠି। ଯେଉଁ ତ୍ରୁଟି ପାଇଁ ମନ୍ଦିର ଚୂଡ଼ା ବସି ପାରୁନାହିଁ। ଶେଷରେ ବିଶୁ ତାଙ୍କର ଆପ୍ରାଣ ଉଦ୍ୟମ କରି ବ୍ୟର୍ଥ ହୋଇ ନିରାଶ ହୃଦୟରେ ବସି ରହିଛନ୍ତି। ଭାବୁଛନ୍ତି ବାରଶହ ବଢ଼େଇଙ୍କ ଭାଗ୍ୟ। ଭାବୁଛନ୍ତି, ନିଜର ପତ୍ନୀ ଓ ପୁତ୍ରର କଥା। ଏ ଜୀବନରେ ଆଉ ଦେଖା ହୋଇପାରିବ ନାହିଁ ସେମାନଙ୍କ ସହିତ।

ଇତ୍ୟବସରରେ ଅପୂର୍ବ ସୁନ୍ଦର ବାଳକଟିକୁ ଧରି ସୁଦର୍ଶନ ଆସି ପହଂଚି ବାଳକଟିକୁ ଚିହ୍ନାଇ ଦେଲେ – ଏହି ହେଉଛି ତୁମର ପିତା – ଶିଳ୍ପୀ ଶ୍ରେଷ୍ଠ ବିଶୁ ମହାରଣା।

ଧର୍ମପଦ ବିଶୁଙ୍କ ପାଦତଳେ ଭୂମିଷ୍ଠ ପ୍ରଣାମ କଲା। ବିଶୁ କହିଲେ କିଏ ତୁମେ ବାଳକ। ଧର୍ମପଦ କହିଲା, ବାପା, ମୁଁ ତୁମର ଧର୍ମପଦ।

ବାପା ଡାକ ଏହି ପ୍ରଥମ କରି ଶୁଣୁଛନ୍ତି ସେ। ବିଶୁ ଆନନ୍ଦ ବିସ୍ମୟରେ ଧର୍ମପଦକୁ କୋଳକୁ ଟାଣି ନେଇ ତା ମସ୍ତକରେ ଚୁମ୍ବନ ଆଂକି ଦେଲେ। କହିଲେ, ବେଣୁଧର ତୋତେ ପଠାଇଛନ୍ତି ପୁଅ, ଠିକ୍ ବେଳରେ ବାପାଙ୍କୁ ଭେଟିବାକୁ। ଉଦାସିଆ ଚାହାଣି ଧର୍ମପଦ ଉପରେ ଢ଼ାଳି ଦେଇ କହିଲେ, କହ ପୁଅ – ତୋ ବୋଉ କେମିତି ଅଛି ? ବୋଉ ଭଲ ଅଛନ୍ତି। ମୋ ହାତରେ ପଠାଇଛନ୍ତି ବାରି ବରକୋଳି ଆଉ ପୋଡ଼ପିଠା। ଏହା କହି ପିଠିରେ ବାନ୍ଧିଥିବା ପୁଟୁଳା ଫିଟାଇ ଧର୍ମପଦ ବାହାର କଲା ବରକୋଳି ଓ ପୋଡ଼ପିଠା।

ପାଗଳ ପ୍ରାୟ ବିଶୁ ପୋଡ଼ପିଠାରୁ କିଛି ଭାଂଗି ପାଟିରେ ପୁରାଇଲେ ଓ ସୁର୍ଦାନ ହାତକୁ ବଢ଼ାଇ ଦେଇ କହିଲେ। ଚାଖି ନିଅ ସୁଦର୍ଶନ – ପଦ୍ମାବତୀ ହାତର, କେଡ଼େ ସୁଆଦିଆ ପୋଡ଼ପିଠା। ବାଣ୍ଟିଦିଆ ଅନ୍ୟମାନଙ୍କୁ ଆମ ବାରି ବରକୋଳି। ଭାରି ମିଠା। ବିଶୁ ମହାରଣା ଏକାନ୍ତ ଦୃଷ୍ଟିଢ଼ାଳି ଦେଖୁଛନ୍ତି – ତାଙ୍କର ବାରବର୍ଷ ପୁତ୍ର ଧର୍ମପଦକୁ।

କେଡ଼େ ସୁନ୍ଦର ହୋଇଛି ପୁଅ ତାଙ୍କର। ନେଇଛି ତା ମାଆର ମୁଖମଣ୍ଡଳ। ସତେ ଅବା ଦେବ ଶିଶୁଟିଏ।

ପୁଣି ତା ବାପା ଡାକରେ ଭାବନା ତାଙ୍କର ଭାଂଗିଗଲା। ପ୍ରାଣରେ ତାଙ୍କର ସୃଷ୍ଟି ହେଲା ଚମକ। ଏହି ଡାକ ଶୁଣିବା ପାଇଁ ବିଶ୍ୱର ପୁରୁଷ ଜାତି ଅପେକ୍ଷା କରନ୍ତି। ସେ ବି ଅପେକ୍ଷା କରିଥିଲା। କେଡ଼େ ମଧୁର ଏ ଡାକ। ଏ ଡାକ ରକ୍ତର ଡାକ। ଏ ଡାକ ସ୍ପନ୍ଦନ ସୃଷ୍ଟି କରେ ପ୍ରାଣରେ। ଏ ଡାକ ଅର୍ଜ୍ଜୁନର ପୁତ୍ର ଅଭିମନ୍ୟୁର ଡାକ। ପ୍ରାଣର ପ୍ରତୀକର ଏ ଡାକ।

କହ ପୁତ୍ର କ'ଣ କହିବାକୁ ଚାହୁଁଛୁ।

ଏ ମନ୍ଦିର ଚୂଳି ମାରିବାରେ ତ୍ରୁଟି କେଉଁଠି ରହି ଯାଇଛି, ଆପଣ କ'ଣ ସେ ତ୍ରୁଟି ବାହାର କରିପାରୁ ନାହାନ୍ତି। ନାହିଁରେ ପୁଅ। ତ୍ରୁଟି କେଉଁଠି ରହି ଯାଇଛି ମୁଁ ବାହାର କରିପାରୁ ନାହିଁ। ଯେତେଥର ମୁଁ ଚେଷ୍ଟା କରିଛି ବ୍ୟର୍ଥ ହୋଇଛି। କଳସ ଉପରେ ଚୂଡାଟି ବସାଇବାକୁ ଗଲେ, ଖସି ପଡୁଛି ମନ୍ଦିରର କଳସ ଉପରୁ।

ଏ ଚୂଡା ଚୁମ୍ବକୀୟ ଚୂଡା। ତଳେ ମନ୍ଦିର ଗର୍ଭଗୃହ ମୁଣ୍ଡି ମାରିଲା ବେଳେ ସେଠାରେ ଖଂଜା ଯାଇଛି ଏକ ଶକ୍ତିଶାଳୀ ଚୁମ୍ବକ। ତା ଉପରେ ରହିଛି ପଥର ଓ ପଥର ଉପରେ ବସିଛି କଳସ। ତେବେ ସବୁ କାମ ତରବରରେ କରିବାକୁ ପଡିଛି। ଚାରିମାସର କାମକୁ ଦୁଇ ମାସରେ କରିବାକୁ ପଡିଛି।

ଠିକ୍ ଅଛି ବାପା। ମୁଁ ଥରେ ମନ୍ଦିରର କଳସ ଉପରକୁ ଯାଇ ଦେଖିଥାନ୍ତି ଦଧିନଉତି ଠିକ୍ ଭାବରେ ନିର୍ଦ୍ଧାରଣ କରାଯାଇଛି କି ନାହିଁ। ଏକେ ତ ଚୁମ୍ବକ ଖଂଜା ପାଇଛି। ତାର ଭାରକେନ୍ଦ୍ରକୁ ଯଦି ଠିକ୍ ଭାବରେ ନିର୍ଦ୍ଧାରଣ କରି ଚୂଡାଟି ଖଂଜା ଯିବ - ତାହାଲେ ଚୂଡାଟି ଠିକ୍ ଠିକ୍ ବସିପାରିବ। ପୁଅର ଯୁକ୍ତି ଶୁଣି ଆଶ୍ଚର୍ଯ୍ୟ ହୋଇଗଲେଣି ବିଶୁ। ପାଖରେ ସୁଦର୍ଶନ, କମଳ ଓ ଅନ୍ୟାନ୍ୟ କେତେକ ଶିଳ୍ପୀ ଶୁଣୁଥିଲେ ବାର ବର୍ଷ ବାଳକ ମୁଖର ବାଣୀକୁ। ବାପା, ଘରେ ଥୁଆ ହୋଇଥିବା ତୁମରି ପୋଥି ମୁଁ ପଢ଼ି ପରୀକ୍ଷା କରିଛି, ବାରିପଟ ବଗିଚାରେ କ୍ଷୁଦ୍ର ମନ୍ଦିରଟିଏ ନିର୍ମାଣ କରି।

ସୁଦର୍ଶନ କହିଲେ, ଭାଇ - ଆମ ଧରମାକୁ ନେଇ ସିଡ଼ିରେ ଚଢ଼ି ଯାଅ - ମନ୍ଦିର କଳସ ଉପରକୁ। ପିଲାଟି ଦେଖୁ - ତ୍ରୁଟି କେଉଁଠି ରହିଯାଇଛି। ଯଦି ତାହାରି ଦେଇ ସମ୍ଭବ ହୁଏ - ଚୂଡା ମାରିବା। କମଳ ମହାରଣା ଭାବୁ ଥିଲା ପିଲାଟିର କଥା।

ପାଖରେ ଛିଡ଼ା ହୋଇଥିବା ଶିଳ୍ପୀ ସଦାନନ୍ଦ କହିଲା - ଶିଳ୍ପୀ ଶ୍ରେଷ୍ଠ ବିଶୁଭାଇ ଯାହା କରି ପାରିଲା ନାହିଁ - ଦେଖି ପାରିଲା ନାହିଁ, କେଉଁଠି ତ୍ରୁଟି ରହିଯାଇଛି, ଏହି ବାଳକ - ତାହା କରି ପାରିବ - ଅସମ୍ଭବ। ଅନ୍ୟ ଶିଳ୍ପୀମାନେ କହି ଉଠିଲେ ଅସମ୍ଭବ - ଅସମ୍ଭବ। ଶାନ୍ତ ସ୍ନିଗ୍ଧ କମଳ ମହାରଣା କହିଲା - ଆମେ ତ କେହି ପାରିଲୁ ନାହିଁ। ଯଦି ବାଳକଟି ପାରିବ - ସେଥିପାଇଁ ତାକୁ ସୁଯୋଗ ଦେବାରେ ଆପତ୍ତି କ'ଣ ? ବଂଚି ଯିବ - ବାରଶ ବଢ଼େଇର ପ୍ରାଣ। ସଙ୍ଗେ ସଙ୍ଗେ ସମବେତ ସ୍ୱରରେ ସମସ୍ତେ କହିଲେ ଆପତ୍ତି ନାହିଁ। ସିଡ଼ିର ପାହାଚ ପାହାଚ ଚଢ଼ି ବାପା ଓ କମଳ ମହାରଣାଙ୍କ ପରି ଅନ୍ୟ କେତେଜଣ ମୁଖ୍ୟ ଶିଳ୍ପୀଙ୍କ ସହିତ କଳସ ଉପରକୁ ଚଢ଼ିଗଲା ଧର୍ମପଦ। କଳସ ଉପରେ ମାପଚୁପ କରି କହିଲା - କଳସ ବସାଇବାରେ ତ୍ରୁଟି ରହି ଯାଇଛି। ତରବରରେ ବସିଛି ବୋଲି ଏମିତି ଘଟିଛି। ସେହି ଅନୁସାରେ ଆପଣମାନେ ଯେଉଁ ଭାରକେନ୍ଦ୍ର ନିର୍ଣ୍ଣୟ କରିଛନ୍ତି - ସେଥିରେ ମଧ୍ୟ ତ୍ରୁଟି ରହିଯାଇଛି।

ସେ ନିର୍ଦ୍ଧାରଣ କରିଥିବା ଭାରକେନ୍ଦ୍ରର ବିନ୍ଦୁଟିକୁ ଚୁମ୍ବକୀୟ ଚୂଡ଼ାର କେନ୍ଦ୍ରବିନ୍ଦୁରେ ସ୍ଥାପନ କରିବାର ନିଷ୍ପତ୍ତି ହେଲା। ତଳକୁ ଖସି ଆସିଥିବା କଳସ ସହ ଚୂଡ଼ାକୁ ପୁଣି ଉପରକୁ ଉଠାଗଲା। ଲାଗିଗଲା କଳସ ଉପରେ ମନ୍ଦିରର ଚୂଡ଼ା। ଶହ ଶହ ଶିଳ୍ପୀ ବେଢ଼ାରୁ ଅନାଇ ଦେଖୁଥିଲେ ବାରବର୍ଷର ବାଳୁତ କେମିତି ହାତରେ ନିହାଣ ମୁଗୁର ଧରି ପଥର ଦେହରେ ଭାରକେନ୍ଦ୍ର ବିନ୍ଦୁ ନିର୍ଣ୍ଣୟ କରୁଛି। କେମିତି ତାହାରି ନିର୍ଦ୍ଦେଶରେ ବସିଗଲା ମନ୍ଦିରର ଚୂଡ଼ା। ଶିଳ୍ପୀବୃନ୍ଦଙ୍କର ଜୟ ଜଗନ୍ନାଥ ଧ୍ୱନିରେ କମ୍ପି ଉଠିଲା ମନ୍ଦିର ଚତ୍ୱର।

ଯେତେବେଳେ ଚୂଳି ମାରି ବାପା ଓ ଅନ୍ୟଶିଳ୍ପୀ ମାନ୍‌ଙ୍କ ସହିତ ଓହ୍ଲାଇ ଆସିଲା ଧର୍ମପଦ। ଧର୍ମପଦକୁ କାନ୍ଧରେ ବସାଇ ନାଚିବାକୁ ଆରମ୍ଭ କଲେ ଜଣେ ଶିଳ୍ପୀ ଅନ୍ୟମାନେ ଆନନ୍ଦରେ ନାଚିଲେ।

ଧନ୍ୟ ବିଶୁ ମହାରଣା। ଧନ୍ୟ ଏ ଭଳି ପୁତ୍ରକୁ ତୁ ଜନ୍ମ ଦେଇଛୁ। ଆଜି ସେ ବାରଶହ ବଢ଼େଇଙ୍କ ପ୍ରାଣ ବଂଚାଇ ଦେଲା। ଧର୍ମପଦ ଶିଳ୍ପୀମାନଙ୍କର ଭାବୋଚ୍ଛ୍ୱାସରେ ଭାସି ନଯାଇ ଅନ୍ତର ଭିତରେ ଅସ୍ୱସ୍ତି ଅନୁଭବ କରୁଥିଲା ସେ।

କହିଲା, ମୋତେ ଛାଡ଼ି ଦିଅ। ମୁଁ ବାପାଙ୍କ ପାଖକୁ ଯିବି। ସେମାନେ କହିଲେ, ବାପରେ ତୁହି ଆମର ଭଗବାନ। ତୁହିଁ ଆମ୍ଭମାନଙ୍କୁ ଆସନ୍ନ ମୃତ୍ୟୁ କବଳରୁ ବଂଚାଇଲୁ।

ତୋ ବାପା ମାଆ, କେଉଁ ପୁଣ୍ୟ କରିଥିଲେ - ତୋଭଳି ପ୍ରତିଭାଧାରୀ ପୁତ୍ରକୁ ସେମାନେ ଜନ୍ମ ଦେଇଛନ୍ତି।

x x x x

ଶିଳ୍ପୀମାନଙ୍କର ଘେର ଭିତରୁ ବାହାରି ଆସିଛି ଧର୍ମପଦ ବାପା ବିଶୁଙ୍କ ପାଖକୁ। ବାପା ବିଶୁର ମନର ଆନନ୍ଦ କହିଲେ ନସରେ। ପଦ୍ମାବତୀ ପାଖରେ ଥିଲେ କେତେ ଆନନ୍ଦ ଅନୁଭବ କରି ନଥାନ୍ତେ ଅନ୍ତରରେ। ଏମିତି ପୁଅ କୋଟିକରେ ଗୋଟିଏ କେବେ ଜନ୍ମ ହୁଏ। ଆତ୍ମ ସନ୍ତୋଷରେ ପୁଅ ଧରମାର ହାତଧରି ନେଇ ଯାଇଛନ୍ତି ବିଶୁ ତାଙ୍କର ଶିବିରକୁ।

ଶାନ୍ତିରେ କଥାବାର୍ତ୍ତା ହେଉଛନ୍ତି ବାପ ପୁଅ। କଥା ହେଉଛନ୍ତି ଖୁଡ଼ୀ, ସର କଥା। ଗାଆଁର ଚାଟଶାଳୀ ଓ ଅବଧାନଙ୍କ କଥା। ସର୍ବୋପରି ବେଣୁଧରଙ୍କ କଥା। ଆଜି ବେଣୁଧରଙ୍କ ଅପାର କରୁଣାରୁ କୋଣାର୍କର ଚୂଳି ମରି ପାରିଛି। ବିଶୁ ମହାରଣା କହୁଛନ୍ତି - ବେଣୁଧର କୃପା କରି ତୋତେ ପଠାଇଲେ ବାରଶହ ବଢ଼େଇଙ୍କ ପ୍ରାଣ ରକ୍ଷା ପାଇଁ।



# (୨୪)

ଆସନ୍ନ ମୃତ୍ୟୁ କବଳରୁ ରକ୍ଷା ପାଇଥିବା ଶିଳ୍ପୀମାନେ ଶିବିର ମାନଙ୍କରେ ଆନନ୍ଦ ମନାଉଛନ୍ତି । ମହାରାଜାଙ୍କ ନିର୍ଦ୍ଦେଶ ଥିଲା ମନ୍ଦିର ନିର୍ମାଣ କାର୍ଯ୍ୟ ସେହିଦିନ ସମାପ୍ତ ନ କଲେ ଶିଳ୍ପୀମାନଙ୍କର ମୁଣ୍ଡକାଟ ହେବ । ମନ୍ଦିର ଚୂଳି ମରିଯାଇଛି । ଟଳି ଯାଇଛି ମୁଣ୍ଡକାଟର ଭୟ ଭାବନା । ହୃଦୟ ପରିପୂର୍ଣ୍ଣ ଆନନ୍ଦରେ ଭରପୂର । ଫେରିଯିବେ ନିଜ ନିଜର ପରିବାର ପାଖକୁ । ଆତ୍ମୀୟ ସ୍ୱଜନଙ୍କ ପାଖକୁ । ନିଜ ଜନ୍ମିତ ଛବିଳ ଗାଁ ମାଟିକୁ । ଯେଉଁ ଗାଁ ମାଟିର ସାଗୁଆ ବନଲତା ସେମାନଙ୍କ କଣ୍ଠରେ ଭରି ଦେଇଛି କଥା । ସେମାନଙ୍କ ଆଖିରେ ଦେଇଛି ନୂଆ ଚାହାଣି । ଯେଉଁ ଚାହାଣୀ ସେମାନଙ୍କ ନିହାଣ ମୁନରେ ଫୁଟି ଉଠୁଛି ।

ବିଶୁ ମହାରଣା ଭାବୁଛନ୍ତି – ଯେଉଁ ବେଣୁଧରଙ୍କ ଅପାର କରୁଣାରେ ଏପରି ମନ୍ଦିରଟିଏ ନିର୍ମାଣର ଦାୟିତ୍ୱ ନେଇଥିଲେ – ତାହା ସେ ତୁଲାଇ ପାରିଛନ୍ତି । ପାଇ ପାରିଛନ୍ତି ପ୍ରିୟ ପୁତ୍ରକୁ ପାଖରେ । ଆସନ୍ତା କାଲି ପଦ୍ମାବତୀଙ୍କ ପାଖରେ ସେ ପହଂଚି ଯାଇଥିବେ । ଆନନ୍ଦରେ ଫାଟି ପଡ଼ିବ ତାଙ୍କ ସଂସାର । ଏମିତି ଜୀବନରେ କେବେ ଆତ୍ମ ସନ୍ତୋଷ ସେ ଲାଭ କରିନାହାନ୍ତି ।

ଏପରି ସମୟରେ ହଠାତ୍ ଶୁଭିଲା କୋଳାହଳ । ତାହାରି ଶିବିର ଆଡକୁ ମାଡି ଆସୁଛନ୍ତି ଶିଳ୍ପୀର ଦଳ । ବିଶୁ ଭାବୁଛନ୍ତି ବୋଧହୁଏ ଆସୁଛନ୍ତି ବଧେଇ ଜଣାଇବା ପାଇଁ ପୁତ୍ର ଧର୍ମପଦକୁ । ସେମାନେ ଆସି ଶିବିର ମୁହଁରେ ରୁଣ୍ଡ ହୋଇଛନ୍ତି । ବିଶୁ ମହାରଣା ବାହାରି ଆସିଛନ୍ତି ଶିବିର ଭିତରୁ । ଆଗରେ ସାଥୀ ଶିଳ୍ପୀବୃନ୍ଦ ।

ଜଣେ ଶିଳ୍ପୀ ବିଶୁଙ୍କୁ କହୁଛି – ବିଶୁଭାଇ – ସମର୍ପି ଦିଅ ତୁମ ପୁଅକୁ ଆମରି ହାତରେ । ଆବାକାବା ହୋଇ ଚାହିଁ ରହିଛନ୍ତି ବିଶୁ । ସମସ୍ତ ଶିଳ୍ପୀଙ୍କ ମୁଖମଣ୍ଡଳରେ ହିଂସ୍ରତା ଫୁଟି ଉଠୁଛି ।

ଅନ୍ୟ ଜଣେ ଶିଳ୍ପୀ କହୁଛି – କୁହ ଶିଳ୍ପୀ ସର୍ଦ୍ଦାର । ଆମ ବାରଶ ବଢ଼େଇରେ ଦାୟୀ ନା ପୁଅରେ ଦାୟୀ ?

ତଥାପି ବୁଝି ପାରୁନାହାନ୍ତି ବିଶୁ ମହାରଣା କ'ଣ କହିବାକୁ ଚାହାନ୍ତି ଶିଳ୍ପୀବୃନ୍ଦ। କ'ଣ ହୋଇଛି ମୋତେ ଖୋଲି କରି କୁହ ଭାଇମାନେ। ତୁମେ ସବୁ ଏମିତି ଉତ୍ତ୍ୟକ୍ତ ଅବସ୍ଥାରେ କାହିଁକି ? କହିଲେ ବିଶୁ ମହାରଣା। ରାତି ପାହିଲେ ପ୍ରଚାରିତ ହେବ - ବ୍ୟର୍ଥ ବାରଶହ ବଢ଼େଇ ସୂର୍ଯ୍ୟ ମନ୍ଦିରର ଚୂଡା ମାରିବା ପାଇଁ। ତୁମର ବାରବର୍ଷର ଏ ବାଳୁତ ପୁଅ ଚୂଡା ମାରିଛି ମନ୍ଦିରର। ଆମର ଆଉ ମୁଣ୍ଡ ରହିବ ତ ? ରାଜାଦେଶରେ ସମସ୍ତଙ୍କର ମୁଣ୍ଡ କାଟ ହେବ। ଜଣେ ଶିଳ୍ପୀ କହିଲେ।

ବିଶୁ ମହାରଣା କହିଲେ, ତୁମେ ସବୁ ଏ କ'ଣ କହୁଛ। ତୁମରି ପୁଅ ଚୂଳି ମାରିଲା। ଏଥିରେ ରାଜା କାହିଁକି ତୁମର ମୁଣ୍ଡ କାଟିବେ ?

କିଛି ସମୟ ଆଗରୁ ଜଣେ ଶିଳ୍ପୀ ତୁଣ୍ଡରୁ ଏହି କଥା ବାହାରିଥିଲା। ହେଲେ, ସେମାନଙ୍କ ଛାଉଣିରେ ଜଣେ, କେତେଜଣଙ୍କ ଆଗରେ ଉପସ୍ଥାପନ କରିଥିଲା - ଆରେ ଆନନ୍ଦରେ ବିଭୋର ହୋଇଯାଉଛ।, ମନ୍ଦିରର ଚୂଡା ମାରିଛି ବୋଲି, ସବୁ ପ୍ରଶଂସା ତ ଯିବ ବିଶୁର ବାଳୁତ ପୁଅ ପାଖକୁ। ବାରଶହ ବଢ଼େଇ ବ୍ୟର୍ଥତା ସମସ୍ତେ ଜାଣିବେ। ରାଜା ମଧ୍ୟ ଜାଣିବେ - କାହାରିର ମୁଣ୍ଡ ଗଣ୍ଡି ଉପରେ ରହିବ ନାହିଁ। ରାଜା ବାନ୍ଧିବେ ସେହି ବାଳକ ମୁଣ୍ଡରେ ଶିଳ୍ପୀର ଶ୍ରେଷ୍ଠ ଶିରପା।

ସମସ୍ତଙ୍କ ଆନନ୍ଦପୂର୍ଣ୍ଣ ମୁଖମଣ୍ଡଳରେ ବିଷାଦ କାଳିମା ଲେପି ହୋଇ ଗଲା। କଥାଟି ଅନ୍ୟପ୍ରକାରେ ନେଇଥିଲେ ଜଣେ ବୟୋଜ୍ୟେଷ୍ଠ ଶିଳ୍ପୀ। ଆମର ମୁଣ୍ଡ ଭୂଲୁଣ୍ଠିତ ହେଉ - ହେଲେ ଉତ୍କଳୀୟ ଶିଳ୍ପୀର ଗୌରବ ଧ୍ୱଜା ତ ସବୁଦିନ ପାଇଁ ଫର ଫର ହୋଇ ଉଡିବ ମନ୍ଦିର ଚୂଡ଼ାରେ। ଉତ୍କଳ ଶିଳ୍ପୀର ବାରବର୍ଷ ପୁଅ ଏପରି ବିଶାଳ ମନ୍ଦିରର ଚୂଳ ମାରିଛି ବୋଲି।

ଅନ୍ୟମାନେ ସମସ୍ତେ ଉତ୍ୟକ୍ତ ହୋଇ ଉଠିଲେ। ଆମ ସମସ୍ତଙ୍କ ମୁଣ୍ଡ କାଟ ହେବ। ଆଉ ଜଣେ ବାଳକ ମୁଣ୍ଡରେ ରାଜା ବାନ୍ଧିବେ ଶିରପା ? ଚାଲ ସମସ୍ତେ ଆମ ସର୍ଦ୍ଦାର ବିଶୁଭାଇ ପାଖକୁ। ସମସ୍ତେ ସେଥିପାଇଁ କାଳ ବିଳମ୍ବ ନକରି ଦ୍ରୁତ ଗତିରେ ପହଞ୍ଚିଛନ୍ତି ବିଶୁର ଶିବିରରେ।

ବିଶୁର କଥା ଶୁଣି ସେମାନଙ୍କ ଭିତରୁ କେହି କେହି ଉତ୍ୟକ୍ତ ହୋଇ କହୁଛନ୍ତି - ଆମେ ମାଗୁଛୁ, ତୁମ ପୁଅକୁ ଆମ ହାତରେ ଟେକି ଦିଅ। ଆମ ବାରଶହ ଭାଇଙ୍କୁ ବଂଚାଅ। ଜଣେ କହୁଛି - ନ ରହୁ ବାଉଁଶ - ନ ବାଜୁ ବଇଁଶୀ। ରାଜା ଜାଣିବା ପୂର୍ବରୁ ତା ପୁଅକୁ ଶେଷ କରିଦିଅ। କେତେକ କହୁଛନ୍ତି - ହଁ ହଁ ଶେଷ କରିଦିଅ।

ବିଶୁ ଆଖି ଆଗରେ ଯେମିତି ଅନ୍ଧାର ଘୋଟି ଆସୁଛି । ତାର ପ୍ରିୟ ପୁତ୍ରକୁ ହତ୍ୟା କରିବାର ଏ ଏକ ଷଡଯନ୍ତ୍ର । ସେ ଶିବିର ମୁହଁରେ ଛିଡା ହୋଇ ସେମାନଙ୍କୁ ଆକୁଳ ନିବେଦନ କରୁଛି । ମୋତେ ତୁମ୍ଭେମାନେ ମାରିଦିଅ - ହେଲେ ମୋ ଧରମା ଦେହରେ ହାତ ଦିଅ ନାହିଁ ।

ଜଣେ ଶିଳ୍ପୀ କହିଲା - ତୁମକୁ ମାରି ଦେଲେ ଲାଭ କ'ଣ ? ରାଜା କ'ଣ ଜାଣିବେ ନାହିଁ - ତୁମ ପୁଅ ଚୂଳି ମାରିଛି ବୋଲି ?

ଶିବିର ଦ୍ୱାର ଦେଶରେ ଛିଡା ହୋଇଛି ବିଶୁ ମହାରଣା । ପୁଅକୁ ତାର ସୁରକ୍ଷା ଦେବ । ଭିତରକୁ ପଶିବାକୁ ଚେଷ୍ଟା କରୁଛନ୍ତି କିଛି ଶିଳ୍ପୀ । ଧର୍ମପଦକୁ ସେମାନେ ଜୋର କରି ଛଡ଼ାଇ ନେବେ ବିଶୁ ପାଖରୁ । ବିଶୁର ଚିତ୍କାର ଓ ଶିଳ୍ପୀଙ୍କ କୋଳାହଳ ଶୁଣି, ସୁଦର୍ଶନ, କମଳ, ସଦାନନ୍ଦ, ସୁମନ୍ତ ପ୍ରଭୃତି କିଛି ଶିଳ୍ପୀ ନିଜ ଶିବିରରୁ ଧାଇଁ ଆସିଛନ୍ତି ବିଶୁ ଶିବିର ସମ୍ମୁଖକୁ । ଦେଖୁଛନ୍ତି ବିଶୁକୁ ଶିଳ୍ପୀମାନେ ମଧ ଆକ୍ରମଣ କରିବାକୁ ପଛେଇବେ ନାହିଁ । ବିଶୁଙ୍କ ପଛରେ ଧର୍ମପଦ । ସେ ସବୁ ଶୁଣୁଛି । ସେ ବିଶୁକୁ କହୁଛି ବାପା, ମୋତେ ଛାଡି ଦିଅ । ବାରଶହ ବଢ଼େଇଙ୍କ ଜୀବନ ରହୁ । ବିଶୁ କହୁଛନ୍ତି - ମୁଁ ମରିଯିବି ପଛେ, ତୋତେ ମୁଁ ଛାଡି ପାରିବି ନାହିଁ । ଏ ଜହ୍ଲାଦମାନେ ତୋତେ ପ୍ରାଣରୁ ମାରିଦେବେ । ଆରେ ତୋ ମାଆ ଆଗରେ ମୁଁ କ'ଣ କୈଫିୟତ୍ ଦେବି । ସିଂହ ବଂଚି ଥାଉଁ ଥାଉଁ ତା ମୁହଁରୁ ତାର ଶାବକକୁ ଛଡ଼ାଇ ନେଇଯିବେ ଏହି ଶୃଗାଳର ଦଳ ।

ସେତେବେଳକୁ କ୍ରୋଧରେ ଗର୍ଜନ କରୁଛି ବିଶୁ ମହାରଣା । ତା ମୁଗୁର ଧରୁ ଥିବା ଶକ୍ତ ବାହୁର ମାଂସେପେଶୀ ଯେମିତି ପଥର ପରି ଶକ୍ତ ଦେଖା ଯାଉଛି । ଆସ କିଏ ମୋ ସାମ୍ନାକୁ ଆସ । ମୁଁ ବି କାହାକୁ ଛାଡିବି ନାହିଁ । ତାର ପ୍ରାଣ ନେଇଯିବି ।

ତାହାରି ପାଖରେ ପହଂଚି ଯାଇଛନ୍ତି ସୁଦର୍ଶନ, କମଳ, ସଦାନନ୍ଦ ଓ ସୁରେନ୍ଦ୍ର ଆଦି ତାର ସମର୍ଥକ ବୃନ୍ଦ । ତାର ଭକ୍ତବୃନ୍ଦ । ଯେଉଁ ଶିଳ୍ପୀମାନେ ତାକୁ ପ୍ରଭୁ ବୋଲି ଭାବନ୍ତି । ସେମାନେ ଦଳବାନ୍ଧି ଆସିଥିବା ଷଡଯନ୍ତକାରୀ ଶିଳ୍ପୀକୁ ଏଡାଇ ଦେବକୁ ଚେଷ୍ଟା କରୁଛନ୍ତି । ଧସ୍ତା ଧସ୍ତି ଓ ଠେଲା ପେଲା ଆରମ୍ଭ ହୋଇ ଯାଇଛି ସେମାନଙ୍କ ଭିତରେ । ଏତିକି ବେଳେ ଧର୍ମପଦକୁ ନେଇ ଶିବିରର ଦ୍ୱାର ଭିତରୁ ବନ୍ଦ କରି ଦେଇଛନ୍ତି ବିଶୁ ମହାରଣା । କୋଳାହଳ ଶୁଣି କିଛି ସମୟ ପରେ ବିଷାଦଗ୍ରସ୍ତ ଶିଳ୍ପୀମାନଙ୍କୁ ବୁଝାଇବା ପାଇଁ ଆସିଛନ୍ତି ସଦାଶିବ ସାମନ୍ତରା । ସଦାଶିବ ସାମନ୍ତରାକୁ ଦେଖି ନିରାଶାରେ ଫେରି ଯାଇଛନ୍ତି - ମେଳି କରି ଆସିଥିବା ଉତ୍ୟକ୍ତ ଶିଳ୍ପୀବୃନ୍ଦ । ଶାନ୍ତ ପଡ଼ି ଯାଇଛି ଶିଳ୍ପୀମାନଙ୍କର ଶିବିର ।



## (୨୫)

ପାହାନ୍ତିଆ ତାରାଟି ଫିକା ପଡିଗଲାଣି । ପୂର୍ଣ୍ଣମୀର ପୂର୍ଣ୍ଣଚନ୍ଦ୍ରଟି ବାରୁଣି ଦିଗବଳୟରେ ଲୁଚି ଯାଉଛନ୍ତି । ସୂର୍ଯ୍ୟୋଦୟର ଅରୁଣିମା ପ୍ରାଚୀ ଆକାଶର ସମୁଦ୍ରର ସୀମାକୁ ରଂଜିତ କରିଛି । ଉପରେ ସ୍ୱର୍ଣ୍ଣାଭ ଲୋହିତ ଛଟ୍ୱା । ଯାହା ବଦଳିବାକୁ ଆରମ୍ଭ କରିଛି । ବଦଳି ଯାଉଛି ସବୁ କେଉଁ ଅଦୃଶ୍ୟ କଳାକାରର ତୂଳୀରେ ।

ଶୁଭୁଛି ସମୁଦ୍ର ଚଢ଼େଇ ମାନଙ୍କର କଳ-କାକଳି; ସମୁଦ୍ର ଢ଼େଉର ଘୋ ଘୋ ଗର୍ଜନ । ଧରମା, ଧରମା ବୁକୁଫଟା ଚିତ୍କାର କରି ଧାବମାନ ମୁଖ୍ୟ ଶିଳ୍ପୀ ବିଶୁ ମହାରଣା । ଏହି ଶବ୍ଦ-ସିତ୍କାର ପ୍ରତିଧ୍ୱନିତ ହେଉଛି ସମୁଦ୍ର ବେଳାଭୂମିରେ; ଆଉ ସଦ୍ୟ ମୁଣ୍ଡଟେକି ଥିବା କୋଣାର୍କ ସୂର୍ଯ୍ୟମନ୍ଦିର ଗାତ୍ରରେ ।

ମନ୍ଦିର ଚୂଡ଼ା ଉପରେ ବିଂଚି ପଡିଛି ଈଷତ୍ ଅବିରଛଟା । ଦିଗ୍‌ବଳୟର ଉପର ଆକାଶଟି ବଦଳିବାକୁ ଲାଗିଛି । ଛିଣ୍ଡା ମେଘମାଳା ଉପରର ଅରୁଣିମାକୁ ଢ଼ାଂକି ଧୂଆଁଳିଆ ହୋଇ ମେଲି ଯାଉଛି ଆକାଶକୁ । ବହୁ ରଂଗ ଫେଣ୍ଟା ଫେଣ୍ଟି ହୋଇ ବିଚିତ୍ର ବର୍ଣ୍ଣଛଟା ସୃଷ୍ଟି କରୁଛି । ସତେ ଅବା ଶିଳ୍ପୀଟିଏ ତାର ରଂଗ ତୂଳୀ ବୁଲାବାରେ ଲାଗିଛି ।

ନିକଟରେ ବେଳାଭୂମିରେ ମତ୍ସ୍ୟଜୀବୀ ଓ ଡଙ୍ଗାରୁ ମାଛ ବୋହି ଆଣିଥିବା ମାଛଧରାଳୀ ଏବଂ ସୂର୍ଯ୍ୟ ମନ୍ଦିର ନିର୍ମାଣର କିଛି ଶ୍ରମିକଙ୍କର ଭିଡ । ବହୁ ଦର୍ଶକବୃନ୍ଦ ଘେରି ରହିଛନ୍ତି ଏକ ମୃତ ବାଳକର ଶବକୁ । ସମୁଦ୍ର ପାଣି ଢେଉ ଉପରେ ଭାସୁଥିବା ସଦ୍ୟ ମୃତ ବାଳକଟିର ଶବକୁ ଉଦ୍ଧାର କରିଛନ୍ତି ମାଛ ମାରି ସମୁଦ୍ରରୁ ନିଜ ଡଙ୍ଗାରେ ଫେରୁଥିବା କିଛି ମାଛଧରାଳୀ । ଡଙ୍ଗା ଉପରକୁ ନେଇ ଚେଷ୍ଟା କରିଛନ୍ତି - ବାଳକଟିର ପେଟରୁ ପାଣି ବାହାର କରିବାକୁ । କାଳେ ବାଳକଟି ବଂଚି ଯିବ । ଜଣାପଡୁଛି ପ୍ରଭାତପୂର୍ବରୁ ବାଳକଟିର ମୃତ୍ୟୁ ଘଟିଛି । ଅପୂର୍ବ ସୁନ୍ଦର ସଦ୍ୟ ଶବଟିଏ ।

ଏପରି ଅପୂର୍ବ ସୁନ୍ଦର ବାଳକଟିର ଶବକୁ ଦେଖି, କୁଳରେ ଭିଡ଼ ଜମାଇଥିବା ଦର୍ଶକମାନେ ହାୟ, ହାୟ କରୁଛନ୍ତି। କେହି କେହି କହୁଛନ୍ତି – କେଉଁ ପିତାମାତାଙ୍କ କୋଳ ଉଜାଡି ହୋଇଗଲା। କେହି ବା କହୁଛି ଏହି ପାହାନ୍ତିଆ ସମୟରେ ପିଲାଟିକୁ କେହି ମାରି ସମୁଦ୍ରକୁ ଫିଙ୍ଗି ଦେଇଯାଇଛି।

ଜଣେ ବୁଢ଼ୀ କେଉଟୁଣୀ, ହାୟ ହାୟ କରି କହୁଛି – ଯମ ଟିକିଏ ବି ଚିନ୍ତା କଲା ନାହିଁ, ଏପରି ଅପୂର୍ବ ସୁନ୍ଦର ଛୁଆଟାର ପ୍ରାଣ ନେଇଯିବା ପାଇଁ। କେଉଁ ଅଭାଗିନୀ ମାଆ ଏପରି ପୁଅଟିକୁ ଜନ୍ମ ଦେଇ ଛାଡି ଦେଇଛିରେ। ଜଣେ କହୁଛି ନିଶ୍ଚୟ କେହି ଶତ୍ରୁ ବାଳକଟିକୁ ମାରି ସମୁଦ୍ରରେ ଭସାଇ ଦେଇଛି। ଆଉ ଜଣେ କହୁଛି – ଏପରି ସୁନ୍ଦର ସୁଠାମ ବାଳକଟି କେବେ କାର ଶତ୍ରୁ ହୋଇପାରେ ? ଯେତେ ନିଷ୍ଠୁର, ନିର୍ଦ୍ଦୟ ମଣିଷଟିଏ ହେଲେ ବି ଏହାକୁ ଦେଖିଲେ ତାର ମାରିବାକୁ ହାତ ଉଠିବ ନାହିଁ। ବାଳକଟିର ଆଖିପତା ମୁଦି ହୋଇଯାଇଛି। ସତେ ଅବା ଗୋଟିଏ ଛାଞ୍ଚରେ ଗଢ଼ା ତାର ସମଗ୍ର ଅବୟବ। ଭ୍ରୂଲତା ଉପର କପାଳ ଉପରେ ଭିଜା କୁଂଚିତ କେଶ, ପାର୍ଶ୍ୱର ସୁନ୍ଦର କୁଣ୍ଡଳ ଥିବା କର୍ଣ୍ଣ ଦୁଇଟିକୁ ଢ଼ାଙ୍କି ପକାଇଛି। କେଡ଼େ ସୁନ୍ଦର ଉନ୍ନତ ନାସିକା ତଳେ ଗୋଲାପ ପାଖୁଡା ପରି କୋମଳ ଓଷ୍ଠାଧାର। ଏବେ ବି ଓଷ୍ଠାଧାରର ଗୋଲାପି ରଂଗ ଫିକା ପଡିନାହିଁ। ହାତ ଗୋଡ଼ଠାରୁ ଆରମ୍ଭ କରି ମସ୍ତକ ପର୍ଯ୍ୟନ୍ତ, ସମଗ୍ର ଶରୀରଟି କିଏ ଯେମିତି କୁନ୍ଦରେ ଗଢ଼ି ଦେଇଛି। ଅଣ୍ଟାରେ ଲାଗି ରହିଥିବା ତାର ପରିଧାନଟି ଓଦା ସରସର। ଦର୍ଶକର ଭିଡ଼ ଭିତରକୁ ଧାବମାନ ହେଉଛନ୍ତି ବିଶୁ, ବିଷଣ୍ଣ ହୃଦୟରେ।

ଗତ ସଂଧ୍ୟାରେ ସଇତାନମାନଙ୍କ କବଳରୁ ବଞ୍ଚାଇବା ପାଇଁ ତାର ପ୍ରାଣର ପୁତ୍ର ଧରମାକୁ, ଶିବିର ଛାଡି ଅବ୍ୟବହୃତ ବିଶାଳ ବିଶାଳ ପଥର ଖଣ୍ଡ ଗୁଡ଼ିକର ଘେର ଭିତରେ ତାକୁ ଧରି ସେ ରାତ୍ରିରେ ଶୋଇଥିଲେ। ତାଙ୍କର ଚାରିପାଖରେ ସୁଦର୍ଶନ, କମଳ ଓ ସଦାନନ୍ଦ ଇତ୍ୟାଦି ଶୋଇବାକୁ ଗୋପନରେ ଅନୁରୋଧ କରିଥିଲେ ସେ। ଯେମିତି ବାପ ପୁଅକୁ ଅନ୍ୟ କେହି ଦେଖିପାରିବେ ନାହିଁ। ରାତ୍ରି ପାହିଲେ ସେ ଧରମାକୁ ଧରି ବାହୁଡ଼ିଯିବେ ତାଙ୍କର ପ୍ରାଣପ୍ରିୟା ପଦ୍ମାଳୟାଙ୍କ ପାଖକୁ।

ଉପରେ ଅସଂଖ୍ୟ ନକ୍ଷତ୍ର ଖଚିତ ଅନନ୍ତ ନୀଳ ଆକାଶରେ ଚାନ୍ଦୁଆ। ଦଶମୀର ଜହ୍ନ ଆଲୁଅରେ ଡୋ଼ଫା ଦେଖାଯାଉଛି ଦିନ ପରି ରାତ୍ରିଟି। ତାଙ୍କ ବାହୁର ତକିଆ ଉପରେ ମୁଣ୍ଡ ରଖି ନିରାପଦରେ ନିଶ୍ଚିନ୍ତରେ ଶୋଇ ପଡ଼ିଛି ପୁତ୍ର ଧରମା। ଧରମାକୁ କୋଳରେ ଧରି ତା

ମୁହଁକୁ ଚାହିଁ ଆକାଶ ଛାତିରେ ଶୋଭା ପାଉଥିବା ଛନଛନିଆ ଜହ୍ନ ସହିତ ତୁଳନା କରୁଛନ୍ତି - ତାଙ୍କ ପୁଅର ସୌନ୍ଦର୍ଯ୍ୟକୁ। ଭାବୁଛନ୍ତି ମନେ ମନେ, ଭଗବାନ ବେଣୁଧରଙ୍କ ଅପାର କରୁଣାରୁ ସେ ଲାଭ କରିଛନ୍ତି ଏପରି ସର୍ବଗୁଣ ସମ୍ପନ୍ନ ସନ୍ତାନଟିଏ। ଚିନ୍ତା କରୁଛନ୍ତି ପ୍ରାଣପ୍ରିୟା ପତ୍ନୀ ପଦ୍ମାଳୟାଙ୍କ କଥା। ବାରବର୍ଷ ତଳେ ଘରଛାଡି ଆସିଲାବେଳେ ସୁନ୍ଦରୀ ତରୁଣୀ ପଦ୍ମାଳୟାଙ୍କ ଜହ୍ନ ପରି ସୁନ୍ଦର ମୁଖ ପଦ୍ମଟି କେମିତି ଝାଉଁଳି ପଡ଼ିଥିଲା। ତାଙ୍କର ଆୟତ ଆଖିରେ ଢ଼ଳ ଢ଼ଳ ହେଉଥିଲା ଅଶ୍ରୁର ମୁକ୍ତା ବିନ୍ଦୁ ଗୁଡ଼ିକ। ସେତେବେଳେ ଏହି ଧରମୁ ଥିଲା ତାଙ୍କରି ଜଠରରେ।

ସେଦିନ ପ୍ରଭାତରେ ବିଦାୟ ନେଇ ଆସିଥିଲେ ସେ - ସେହି ପ୍ରାଣପ୍ରିୟା ପଦ୍ମାଳୟାଙ୍କଠାରୁ। ଆଜି ଏଠାରେ ପାଖରେ ପଦ୍ମାଳୟା ଥିଲେ ଦେଖିଥାନ୍ତେ ବାରଶହ ବଢ଼େଇଙ୍କ ପ୍ରାଣରକ୍ଷା କରିଥିବା ବାରବର୍ଷର ପୁଅ ଧରମାର ଧୀଶକ୍ତି। କୋଣାର୍କର ଏହି ସୂର୍ଯ୍ୟ ମନ୍ଦିରର ଚୂଡା ମାରି କି ଶାନ୍ତରେ ଶୋଇ ପଡିଛି ସେ, ତାହାରି ପିତାଙ୍କ କୋଳରେ।

କେଡ଼େ ସୌଭାଗ୍ୟବାନ ନିଜକୁ ମଣୁଥିଲେ ବିଶୁ ମହାରଣା। ଆଖିକୁ ନିଦ ନ ଆସିବା ପର୍ଯ୍ୟନ୍ତ ପୁଣି ଭାବୁଛନ୍ତି - ତାଙ୍କରି ଅନୁଗତ ଶିଳ୍ପୀମାନଙ୍କ କଥା। ଯେଉଁମାନେ କି ମନ୍ଦିରର ଚୂଳ ବସିଲାପରେ ଏହି ପୁତ୍ର ଧରମାକୁ ନେଇ କାନ୍ଧରେ ବସାଇ ଆନନ୍ଦରେ ଉନ୍ମତ୍ତ ହୋଇ ନୃତ୍ୟ କରୁଥିଲେ - ତାର ଜୟଗାନରେ ମନ୍ଦିର ବେଢ଼ା ମୁଖିତ କରୁଥିଲେ; ସେହିମାନେ କିଛି ସମୟ ପରେ ପୁଣି ଆସିଥିଲେ ସେହି ପୁତ୍ରକୁ ତାଙ୍କର ହତ୍ୟା କରିବା ପାଇଁ। ବିଚିତ୍ର ଏ ମଣିଷର ହୃଦୟ। ପୋକାରବର୍ଣ୍ଣ ପରି ବଦଳି ଯାଏ ତାର ପ୍ରକୃତି।

x x x x

ରାଜାଙ୍କର ନିର୍ଦ୍ଦେଶ, ନିର୍ଦ୍ଧାରିତ ତାରିଖରେ ମନ୍ଦିରର ନିର୍ମାଣ କାର୍ଯ୍ୟ ଶେଷ କରିବାକୁ। ନିର୍ଦ୍ଧାରିତ ତାରିଖ ଅତିକ୍ରମ କଲେ, ବାରଶହ ବଢ଼େଇଙ୍କ ମୁଣ୍ଡକାଟ ହେବ। ରାଜାଦେଶକୁ ଲଂଘନ କରିବ କିଏ ? ନିର୍ଦ୍ଧାରିତ ଦିନ ଅତିକ୍ରମ କରିବାକୁ ଗୋଟିଏ ଦିନ ବାକି ଥିଲା, ବ୍ୟର୍ଥତାରେ ସମସ୍ତେ ବ୍ୟତିବ୍ୟସ୍ତ ହୋଇ ପଡୁଥିଲେ। ମନ୍ଦିର ଚୂଳ ବସି ପାରୁନାହିଁ। ଯେତେଥର ସଜାଡି ବସାଇବାକୁ ଚେଷ୍ଟା କରିଛନ୍ତି - ଖସି ପଡୁଛି କଳସ ଉପରୁ। ମହା ମହା ଶେରା ଶିଳ୍ପୀ ଚେଷ୍ଟା କରିଛନ୍ତି - ହେଲେ ବ୍ୟର୍ଥ ହୋଇଛନ୍ତି ସେମାନେ। ଆଶା ଛାଡ଼ି ଦେଇ ମଥାରେ ହାତ ଦେଇ ବସିଛନ୍ତି ସମସ୍ତେ। ଆସନ୍ନ ମୃତ୍ୟୁ ଚିନ୍ତାରେ ପୀଡିତ।

ଭାବିଲେ, ଭାଳିଲେ କି ହେବ ? ମନକୁ ସେମାନଙ୍କର ଆସିଛି, ବଂଚିଥିବା ବାକି କେଇ ଦଣ୍ଡକ ପ୍ରମତ୍ତ ହେବେ ଆନନ୍ଦରେ। ପିଇଯିବେ ଜୀବନର ଶେଷ ସୁରାତକ। ସେଥିପାଇଁ କେହି କେହି ସୁରାପାନ କରି, କେହି କେହି ନୃତ୍ୟ ଗୀତରେ ମନ୍ଦିର ବେଢ଼ାକୁ ମୁଖରିତ କରୁଛନ୍ତି। ବିଶୁ ମହାରଣାଙ୍କ ସମେତ ଆଉ କେତେଜଣ ଶିଳ୍ପୀ ଅଙ୍କ କଷିଛନ୍ତି ସେମାନଙ୍କ ବିଫଳତାର। ଭାରାକ୍ରାନ୍ତ ମନ ନେଇ ଭାବିଛନ୍ତି କେଉଁଠି ଭୁଲ ତ୍ରୁଟି ରହିଗଲା ସେମାନଙ୍କର। କେହି କେହି ବା ଘର ଓ ଆତ୍ମୀୟଙ୍କ ଚିନ୍ତାରେ ବିଭୋର ହୋଇ ରହିଥିଲେ। ମରଣ ମୁହଁରୁ ଖସି ଯିବାର ଉପାୟ ନାହିଁ। ସେମାନଙ୍କୁ ଜଗିଛନ୍ତି ରାଜାଙ୍କର ବିଶ୍ୱସ୍ତ ପ୍ରହରୀବୃନ୍ଦ। ପଳାୟନର ଚେଷ୍ଟା ପ୍ରାଣଦଣ୍ଡ। ବିଶୁଙ୍କର ବିଶ୍ୱସ୍ତ ସହଯୋଗୀ କମଳ, ସୁଦର୍ଶନ ସଦାନନ୍ଦ ଆଦି ବେଢ଼ି ରହିଛନ୍ତି ବିଶୁଙ୍କ ପାଖେ ପାଖେ।

ଏପରି ସଂକଟ ମୁହୂର୍ତ୍ତରେ ଆସି ପହଞ୍ଚି ଥିଲା ବିଶୁର ବାରବର୍ଷର ପୁତ୍ର ଧରମା। ଗୃହଛାଡ଼ି ଆସିବା ସମୟରେ ପ୍ରାଣପ୍ରିୟା ପଦ୍ମାବତୀଙ୍କୁ କହି ଆସିଥିଲେ ବିଶୁ। ପୁତ୍ର ସନ୍ତାନ ଭୂମିଷ୍ଠ ହେଲେ, ନାମ ଦେବ ଧର୍ମପଦ। ଧର୍ମ ହିଁ ସତ୍ୟ, ଧର୍ମ ହିଁ ଈଶ୍ୱର, ଧର୍ମ ହିଁ ଏ ବିଶ୍ୱକୁ ଧାରଣ କରିଛି। ଧର୍ମରେ ସୃଷ୍ଟି କରିଛନ୍ତି ବିଶ୍ୱସ୍ରଷ୍ଟା ତାଙ୍କ ସୃଷ୍ଟିକୁ। ଧର୍ମର ଜୟ କାଳ କାଳକୁ। ଶିଳ୍ପକଳାର ଜୟ। କଳାର ମୃତ୍ୟୁ ନାହିଁ। କାଳଜୟୀ କଳା। ସେହି କଳାରେ ତିଆରି ଏ ଜୀବଜଗତ। ପ୍ରାଣୀ ଜଗତ। ଭୂମିଷ୍ଠ ହେବାର ବାରବର୍ଷ ପରେ ପୁତ୍ର ଧରମା ଆସିଛି ବାପାଙ୍କ ପାଖକୁ। ବାପାଙ୍କର କୁଶଳା କୁଶଳ ନେଇ ପୁଣି ପହଞ୍ଚାଇବ ମାତା ପଦ୍ମାଳୟାଙ୍କ ପାଖରେ; ଯିଏ କି ଏତେ କାଳ ପୁତ୍ର ମୁଖକୁ ଚାହିଁ ରହିଥିଲେ ସ୍ୱାମୀଙ୍କ ବାହୁଡ଼ା ପଥର ପ୍ରତୀକ୍ଷାରେ।

x x x x

କୋଣାର୍କ ମନ୍ଦିରକୁ ଦେଖି ଧର୍ମପଦ ଆନନ୍ଦରେ ବିଭୋର ହୋଇ ଯାଇଛି। ଦେଖୁଛି, ସୂର୍ଯ୍ୟମନ୍ଦିରର ସବୁ ନିର୍ମାଣ କାର୍ଯ୍ୟ ସମାପ୍ତ ହୋଇ ଯାଇଛି, କେବଳ ଚୂଳି ମାରିବା ଛାଡି। ମନ୍ଦିର ବେଢ଼ାରେ ନିର୍ମିତ ହୋଇଥିବା ମନ୍ଦିର ଗୁଡିକର ନିର୍ମାଣ କାର୍ଯ୍ୟ ବୁଲି ବୁଲି ଦେଖୁଛି ସେ। ତାପରେ ଖୋଜିଛି ତାର ପିତାକୁ। ପଚାରିବାରୁ, ଗାଲରେ ହାତ ଦେଇ ବସିଥିବା ସୁଦର୍ଶନ ଯେତେବେଳେ ଜାଣିଲା ଆଗନ୍ତୁକ ବାଳକଟି ବିଶୁଙ୍କର ପୁତ୍ର, ସଂଗେ ସଂଗେ ନେଇ ଯାଇଛି ଧର୍ମପଦକୁ ବିଶୁଙ୍କ ପାଖକୁ। ପିତା ପୁତ୍ରର ମିଳନ ଘଟିଛି। ପିତାର ପାଦ ଦେଶରେ ମସ୍ତକ ଲଗାଇ ପ୍ରଣାମ କରୁଥିବା ପୁତ୍ରକୁ କୋଳେଇ ଛନ୍ତି ବିଶୁ।

ଆନନ୍ଦାଶ୍ରୁରେ ଭିଜି ଯାଇଛି ତାଙ୍କର ବୁକୁ। ମନ ଭିତରେ ଗଭୀର ଦୁଃଖ ଓ କ୍ଷୋଭର ଯନ୍ତ୍ରଣା। ଏ ଧରାରୁ ବିଦାୟ ନେବାର ଶେଷ ମୁହୂର୍ତ୍ତରେ ପୁତ୍ର ଆସି ପହଞ୍ଚିଛି ପିତା ପାଖରେ। ଧରମାର ସମଗ୍ର ଶରୀରରେ ହାତ ବୁଲାଇ ବିମୁଗ୍ଧ ହୋଇ ଦେଖୁଛନ୍ତି ପୁତ୍ରର ମୁଖମଣ୍ଡଳକୁ। ଆଲିଙ୍ଗନରେ କରି ହଜାଇ ଦେଇଛନ୍ତି ଧର୍ମପଦର ସୁକୋମଳ ଶରୀରକୁ। ପଦ୍ମାଳୟାକୁ ନେଇ ଅତୀତରେ କେତେ ସ୍ମୃତି ଭାସି ଉଠୁଛି ତାଙ୍କ ମନର ଆଇନାରେ।

x x x x

ଆଜି ପଦ୍ମାଳୟାର ପୁତ୍ର ଏହି ପଦ୍ମତୋଳା ଗଣ୍ଡ ଉପରେ ଶିଳ୍ପୀ କୁଳର କୁଶଳୀ ହାତରେ ତିଆରି ହୋଇଥିବା ଅସମାପ୍ତ ମନ୍ଦିରର ଚୂଡ଼ା ବସାଇ ବାରଶ ବଢ଼େଇଙ୍କ ପ୍ରାଣ ରକ୍ଷା କରିଛି ସେ। ସେହି ପ୍ରାଣର ପୁତ୍ରକୁ ଚାହୁଁଥିଲେ ଶିଳ୍ପୀମାନେ ଚିରଦିନ ପାଇଁ ଧରା ଧାମରୁ ବିଦାୟ ଦେବାକୁ। ସେମାନଙ୍କ ମନରେ ଜାଗିଛି - ରାଜା ଜାଣିବେ ନାହିଁ - ମନ୍ଦିର ଚୂଳି ମାରିବାରେ ଶିଳ୍ପୀ କୂଳର ବିଫଳତା। ନଥିବ ବାଉଁଶ, ବାଜିବ ନାହିଁ ବାଁଶରୀ। ଧର୍ମପଦ ବୋଲି କିଏ ଜଣେ ମନ୍ଦିରର ଚୂଳ ମାରିଛି - ତାକୁ ଜାଣିବା ପାଇଁ - ଦେଖିବା ପାଇଁ ସେ ନଥିବ। ପ୍ରଥମେ ହାତପାତି ସେହି ପ୍ରାଣର ପୁତ୍ରକୁ ପିତା ବିଶୁଙ୍କଠାରୁ ଭିକ୍ଷା କରିଥିଲେ ସେମାନେ। ତାପରେ ଯାହାକୁ ଜହ୍ଲାଦ ଭଳି ହତ୍ୟା କରି ସେମାନଙ୍କର ବଂଚିବାର ପଥକୁ ନିଷ୍କଣ୍ଟକ କରିବା ଥିଲା ସେମାନଙ୍କର ମୂଳ ଲକ୍ଷ୍ୟ।

ସେମାନେ ହାରି ଯାଇଛନ୍ତି ଚିରଦିନ ପାଇଁ ପିତାର ମମତାସିକ୍ତ ହୃଦୟ ପାଖରେ। ଚେଷ୍ଟା କରି ବିଫଳ ହୋଇଛନ୍ତି ଜୋର କରି ପିତା କୋଳରୁ ପୁତ୍ରକୁ ଛଡାଇ ନେଇ ହତ୍ୟା କରିବାକୁ। ପାରି ନାହାନ୍ତି ବିଶୁର ବିଶ୍ୱସ୍ତ ସହକର୍ମୀମାନଙ୍କର ସତର୍କ ଘେର ଭିତରୁ ତାଙ୍କ ପ୍ରାଣର ପୁତ୍ରକୁ କାଢ଼ି ନେଇ ଯିବାରେ। ହେଲେ ପିତାର ମମତାସିକ୍ତ ବନ୍ଧନକୁ ଛିନ୍ନ କରି ନିଶ୍ଚିନ୍ତ ନିଦ୍ରାରେ ନିମଗ୍ନ ଥିବା ପିତା କୋଳରୁ ଉଠି ଯାଇଛି ଧର୍ମପଦ ତୀରକୁ। ତା ଭିତରେ ଅନନ୍ତ ସମୁଦ୍ରର ଆହ୍ୱାନ ସେ ଶୁଣିବାକୁ ପାଇଛି। ଶୁଣିବାକୁ ପାଇଛି - ଆତ୍ମା ଅବିନଶ୍ୱର। ଗୀତାର ବାଣୀ - ନୈନଂ ଛିନ୍ଦନ୍ତି ଶସ୍ତ୍ରଣି, ନୈନଂ ଦହତି ପାବକଃ ନ ଚୈନ କ୍ଲେଦୟନ୍ତ୍ୟାପୋ ନ ଶୋଷୟତି ମାରୁତଃ।

✓ତା ହୃଦୟ ଭିତରେ ଆନ୍ଦୋଳିତ ହୋଉଛି ବାରଶହ ବଢ଼େଇର ପ୍ରାଣରକ୍ଷା। ନିଜ ପ୍ରାଣ ବିନିମୟରେ ଶିଳ୍ପୀ କୁଳକୁ ରକ୍ଷା କରିବାର ଚିନ୍ତା। ଲମ୍ଫ ପ୍ରଦାନ କରିଛି ସମୁଦ୍ରର ଦାନ୍ତ ସଦୃଶ ଘୋ ଘୋ ଗର୍ଜନ କରୁଥିବା କରାଳ ଲହରୀ ଭିତରକୁ। କରିଛି ବିସର୍ଜନ ତାର ସୁକୁମାର ପ୍ରାଣକୁ।

ରାତି ପାହି ଆସୁଛି । ସମୁଦ୍ର ପକ୍ଷୀର କଳ କାକଳିରେ ନିଦ୍ରାଭଂଗ ହୋଇଛି ବିଶୁ ମହାରଣାଙ୍କର । ଖୋଜୁଛନ୍ତି – ଅଣ୍ଡାଳି ହେଉଛନ୍ତି – ବାହୁରେ ମଥା ଥାପି ଶୋଇଥିବା ପ୍ରାଣର ପୁତ୍ର ଧରମା କାହିଁ ? ଭାବିଥିଲେ ସେ ହୁଏତ ନିଦ୍ରାଭଂଗ ହେଲାପରେ ମନ୍ଦିର ବେଢ଼ାରେ ବୁଲୁଥିବ । ବୁଲି ବୁଲି ସଂଦର୍ଶନ କରୁଥିବ ମନ୍ଦିର ଗାତ୍ରର କାରୁକଳା । ହେଲେ ଧରମା କାହିଁ ? ଚିତ୍କାର କରି ଡାକ ପକାଇଲେ ଧରମା, ଧରମା ବୋଲି । ମନରେ ଶଂକା ଜାଗୁଛି । ଏହି ଦୁର୍ବୃତ୍ତ ନିଷ୍ଠୁର ପ୍ରାଣ ହିଂସୁକ ଶିଳ୍ପୀମାନେ ତାକୁ କବଳିତ କରି ନାହାନ୍ତି ତ ? ଚିତ୍କାର କରି ଅଣ୍ଡାଳି ହେଉଛନ୍ତି ପ୍ରଭାତରେ ପ୍ରାଣର ପୁତ୍ରକୁ । ହଠାତ୍ ଅଦୂରରେ ଦେଖିବାକୁ ପାଇଲେ, ସମୁଦ୍ର ବେଳାଭୂମିରେ ଏକ ଭିଡ଼ ଜମିଛି । ଭାବିଲେ ବୋଧହୁଏ – ପୁତ୍ର ତାଙ୍କର ସେହିଠାରେ ଥିବ । ଧରମା ଧରମା, ଚିତ୍କାର କରି ସେହି ଆଡକୁ ଧାଇଁଲେ ସେ । ଜନ ଗହଳି ମଧ୍ୟକୁ ପ୍ରବେଶ କରି ଯାହା ଦେଖିଲେ, ସେ ଦୁଃଖରେ ହୃଦୟ ତାଙ୍କର ଫାଟି ପଡିଲା । ଧରମାର ଫୁଲପରି ସୁନ୍ଦର ସୁଠାମ ଶରୀର ଧୂଳି ଧୂସରିତ ହୋଇ ଲୋଟି ପଡିଛି ବେଳାଭୂମିର ବାଲି ଶେଯ ଉପରେ । ଆଶା କରି ନଥିଲେ ଶୁଭ ପ୍ରଭାତରେ ଏପରି ବୁକୁଫଟା ମର୍ମନ୍ତୁଦ ଦୃଶ୍ୟ ସେ ଦେଖିବେ ବୋଲି । ଧରମା, ଧରମା, କହି କଣ୍ଠ ଫଟାଇ କରୁଣ କ୍ରନ୍ଦନରେ ଫାଟି ପଡି ଲୋଟି ପଡ଼ିଲେ ପୁତ୍ରର ମୃତ ଶବ ଉପରେ । ତାଙ୍କ ଆଖି ଆଗରେ ଅମା ଅନ୍ଧକାରର ଘନଘଟା । ସତେ ଅବା ଶୋକରେ ସଂଜ୍ଞା ହରାଇ ବସିବେ ସେ । ପାଗଳ ପ୍ରାୟ ଚିତ୍କାର କଲେ – ଧରମୁ, ଧରମୁ, କଥା କହ । ହସି ଦେ । ଏତେ ବଡ଼ କାମଟା କଲୁ – ଚୂଳି ମାରିଲୁ ସୂର୍ଯ୍ୟ ମନ୍ଦିରର – ବାରଶହ ବଢ଼େଇଙ୍କୁ ବଂଚାଇ ଦେଲୁ । ହସି ପଦେ କଥା କହ ।

ହଲାଉଛନ୍ତି କୋଳକୁ ନେଇ ଧର୍ମପଦର ମୁଖ ମଣ୍ଡଳକୁ । ନା କଥା କହିବ ନାହିଁ । ରାଗି ଯାଇଛି ତା ବାପା ଉପରେ । ତୋ ବଢ ରାଣ । କଥା କହ, କଥା କହ । ନା କଥା କହିବୁ କେମିତି ? ଇଏ ସଇତାନମାନେ....ମୋର ଧରମାର ଏହି ଦଶା କରିଛନ୍ତି । କ'ଣ ଜବାବ ଦେବି ତା ମାଆ ପାଖରେ । ବିକଳ ସ୍ୱରରେ ବିଳାପ କରୁଛନ୍ତି ବିଶୁ – କିଏ ବଂଚାଇ ଦେଇ ପାରିବ – ମୋ ସଙ୍ଖାଳି ଧରମୁକୁ ? ସମସ୍ତଙ୍କ ଆଡକୁ ଚାହିଁଛନ୍ତି ଆର୍ତ୍ତ ଚାହାଣିରେ । 'ପାରିବ କେହି ଅଛ ?

ପୁଣି ଧରମାର ଶବକୁ କାନ୍ଧକୁ ଉଠାଇ ନେଇ କହୁଛନ୍ତି, ନା ନା ମୋ ଧରମୁକୁ କେହି ମାରିବ ପାରିବ ନାହିଁ । କେହି ମୋଠାରୁ ମୋ ଧରମୁକୁ ଛଡାଇ ନେଇ ପାରିବ

ନାହିଁ। ହାଃ ହାଃ କରି ପାଗଳ ପ୍ରାୟ ପୁଣି ହସି ଉଠିଛନ୍ତି ବିଶୁ ମହାରଣା। ନା ନା ମୋ ଧରମୁ ବଂଚିଛି। ତୁମେ ସଇତାନମାନେ ମୋ ପୁତ୍ରକୁ ଆଉ ଛୁଇଁ ପାରିବ ନାହିଁ। କେହି ମାରି ପାରିବ ନାହିଁ - ହାଃ ହାଃ - ମୋ ଧରମୁ ବଂଚିଛି। ଏହି ଅଟ୍ଟହାସ୍ୟ ଭିତରେ ବିଶୁଙ୍କର ଆଖି ପତା ଫାଟି ଯେମିତି ଶରୀରର ସବୁ ରକ୍ତ ଅଶ୍ରୁ ହୋଇ ଝରି ଯାଉଛି।

ଆଉ ନୁହେଁ ଆଉ ନୁହେଁ - କହି ମୃତ ପୁତ୍ରର ଶବକୁ ପକାଇ ଧାଇଁଛନ୍ତି ବିଶୁ ସମୁଦ୍ର ସୈକତର ବାଲିକୂଦ ଆଡୁଆଲକୁ। ଶୋକାକୁଳ ଦର୍ଶକବୃନ୍ଦ ସ୍ତମ୍ଭୀଭୂତ - ସେ କରୁଣ ଦୃଶ୍ୟରେ। କାହାରି କାହାରି ଆଖିପତା ଭିଜାଇ ଝରି ଯାଉଛି - ତତଲା ଅଶ୍ରୁ।

ପୂର୍ବରୁ ଶୁଣିଥିଲେ ସେମାନେ ଶିଳ୍ପୀ କୁଳର ଜୀବନର କରୁଣ ସଙ୍ଗୀତ। ଆଜି ସେମାନଙ୍କ ହୃଦୟ ଦ୍ରବୀଭୂତ ହୋଇଗଲା, ପିତା ହୃଦୟର ଦାରୁଣ ବେଦନାର ମର୍ମିଳ ମୂର୍ଚ୍ଛନାରେ।

ଦୂରରୁ ଶୁଭୁଛି ତୂର୍ଯ୍ୟନାଦ। ମନ୍ଦିର ନିର୍ମାଣର ସମାପ୍ତିର ଖବର ପାଇଁ ଆସୁଛନ୍ତି ପାତ୍ରମନ୍ତ୍ରୀ ପରିବେଷ୍ଟିତ ସଦଳବଳେ ମହାରାଜା ନରସିଂହ ଦେବ। ମନ୍ଦିର ପରିଦର୍ଶନରେ। ତାଙ୍କର ହୃଦୟରେ ଆଜି ଆନନ୍ଦର ଉଦ୍‌ବେଳନ। ଦୀର୍ଘ ବାରବର୍ଷ ପରେ ତାଙ୍କ ସାଧନାର ସଉଧ ଆଜି ଆକାଶକୁ ମୁଣ୍ଡଟେକି ଛିଡା ହୋଇଛି। ମୁଣ୍ଡଟେକିଛି କାରୁକଳାର ଇମାରତ ସଦମ୍ଭରେ।



## (୨୬)

ମହାରାଜା ମହାରାଣୀ ପ୍ରଭାତରୁ ବଧେଇ ଜଣାଇବାକୁ ଆସିଛନ୍ତି ବିଶୁଙ୍କୁ। ଯାହାଙ୍କ ଉପରେ ମହାରାଜା ସୂର୍ଯ୍ୟ ମନ୍ଦିରର ଭିତ୍ତି ପ୍ରସ୍ତର ସ୍ଥାପନ ଉତ୍ସବରେ ବାନ୍ଧି ଦେଇଥିଲେ ଶିରପା। ଆଜି ଆସିଛନ୍ତି ସେହି ମନ୍ଦିର ପରିଦର୍ଶନ ସହିତ ତାଙ୍କରି ମୁଣ୍ଡରେ ବାନ୍ଧି ଦେବେ ଶ୍ରେଷ୍ଠ ଶିଳ୍ପୀର ସମ୍ମାନର ଶିରପା।

ତାଙ୍କରି ସ୍ୱପ୍ନର ସଉଧ ଆଜି ଆକାଶକୁ ମୁଣ୍ଡ ଟେକିଛି। ସେହି ସଉଧ ଉପରେ ବାଳସୂର୍ଯ୍ୟର ରକ୍ତିମ ଆଭା ବିଂଚି ପଡ଼ିଛି। ହେଲେ କାହିଁ ସେହି ରାଜ୍ୟର ଶିଳ୍ପୀଙ୍କର ମଉଡ଼ମଣି ? କ'ଣ ଅଭିମାନ କରି ଲୁଚିଛନ୍ତି - ବାରବର୍ଷର କୁଚ୍ଛ୍ର ସାଧନା ପରେ ? ନା, ଭଗ୍ନ ହୃଦୟରେ ସେ ଲୁଚିଛନ୍ତି ମୃତ ପୁତ୍ରର ଶବକୁ କାନ୍ଧରେ ପକାଇ ସାଗର ସୈକତର ବାଲୁକା ସ୍ତୁପ ପଛରେ।

କିଏ କହିଲା - ହଁ ଧର୍ମପଦକୁ ଖୋଜି ଖୋଜି ଧାଇଁଛନ୍ତି ସେ ସାଗର ସୈକତ ଆଡକୁ। କିଏ ଏହି ଧର୍ମପଦ - ପ୍ରଶ୍ନ କରିଛନ୍ତି ମହାରାଜା। ଉତ୍ତର ଆସିଛି ଯିଏ ଏ ବିଶାଳ ସୂର୍ଯ୍ୟମନ୍ଦିରର ଚୂଳି ମାରିଛି। ବିଶୁ ମହାରଣାଙ୍କର ବାରବର୍ଷର ପୁତ୍ର।

କାଳବିଳମ୍ବ ନକରି ମହାରାଜା, ମହାରାଣୀ ପହଞ୍ଚି ଯାଇଛନ୍ତି ସାଗର ସୈକତର ସେହି ଜନଗହଳି ନିକଟରେ। ଯେଉଁଠି ଦର୍ଶକ ବୃନ୍ଦ ଅନାଇ ରହିଛନ୍ତି ଅଶ୍ରୁଳ ନୟନରେ। ଯେଉଁଠି ବାଲିସ୍ତୁପର ଆଢୁଆଳରେ ଲୁଚି ଯିବାକୁ ଚେଷ୍ଟା କରୁଛନ୍ତି - ମୃତପୁତ୍ରର ଶବକୁ କାନ୍ଧରେ ପକାଇ ବିଶୁ ମହାରଣା। ସବୁରି ମୁଖ ମଣ୍ଡଳରେ ବିଷାଦର ଅଶ୍ରୁ ଟଳ ଟଳ କରୁଛି। ସେମାନେ ଦେଖାଇ ଦେଇଛନ୍ତି - ଏହି ସେହି ଶିଳ୍ପୀ ଶ୍ରେଷ୍ଠ ବିଶୁ ମହାରଣା। ଆଉ ତା କାନ୍ଧରେ ସୂର୍ଯ୍ୟମନ୍ଦିରର ଚୂଳି ମାରିଥିବା ବାରବର୍ଷର ପୁତ୍ର ଧର୍ମପଦର ଶବ।

ଦଣ୍ଡେ ସେହି ଆଡକୁ ଚାହିଁ ଦୀର୍ଘ ଶ୍ୱାସଟିଏ ପକାଇ ସେହି ଆଡକୁ ଆଗେଇବାକୁ ଲାଗିଲେ ମହାରାଜା। ସାଥିରେ ମହାରାଣୀ ଅନୁସୂୟା ଓ ପାତ୍ରମନ୍ତ୍ରୀ। ମନ୍ଦିର ବେଢ଼ା ସନ୍ନିକଟରେ ଗଜ ଓ ଅଶ୍ୱ ସମୂହକୁ ଛାଡି ଆସିଛନ୍ତି ସେମାନେ। ଖାଲି ପାଦରେ ଆଗକୁ ଆଗକୁ ଆଗଉଛନ୍ତି ସେମାନେ। ସେମାନଙ୍କୁ ଦେଖି ମୃତ ପୁତ୍ରର ଶବକୁ କାନ୍ଧରେ ସେମିତି ଧରି ଧାଇଁଛନ୍ତି ବିଶୁ ମହାରଣା। କେତେବେଳେ ଲୁଚି ଯିବାକୁ ଚେଷ୍ଟା କରୁଛନ୍ତି ବାଲି କୂଦ ଉହାଡରେ। ପୁଣି ଯେତେବେଳେ ରାଜାରାଣୀ ପାଖେଇ ଆସୁଥିବାର ଦେଖୁଛନ୍ତି - ଧାଇଁ ଯାଉଛନ୍ତି ଆଉ ଗୋଟିଏ ବାଲିକୂଦର ଆଢୁଆଳକୁ। ବ୍ୟସ୍ତ ବିବ୍ରତ ମହାରାଜା ନରସିଂହ ଦେବ ହାରି ଯାଇଛନ୍ତି ପୁତ୍ରହରା ପାଗଳ ପିତାକୁ ଅନୁଧାବନ କରିବାରେ। ପଛରେ ଚାଲିଥିବା ପାଇକ ସୈନ୍ୟମାନଙ୍କୁ ନିର୍ଦ୍ଦେଶ ଦେଇଛନ୍ତି ଚତୁର୍ଦ୍ଦିଗରୁ ବିଷାଦଗ୍ରସ୍ତ ପାଗଳପ୍ରାୟ ଧାଉଁଥିବା ବିଶୁ ମହାରଣାଙ୍କୁ ଘେରି ଯିବା ପାଇଁ। ବିଶୁ ମହାରଣାକୁ ନପାଇଲା ପର୍ଯ୍ୟନ୍ତ କୋଣାର୍କର ସୂର୍ଯ୍ୟମନ୍ଦିରରେ ସୂର୍ଯ୍ୟଦେବଙ୍କୁ ସତେ ଅବା ସେ ପାଇପାରିବେ ନାହିଁ। ସତେ ଅବା ବିଶୁ କାନ୍ଧରେ ପକାଇ ବୋହି ନେଉଛନ୍ତି ଶିଶୁ ସୂର୍ଯ୍ୟର ଶବଟିକୁ। ପଛରେ ପଡ଼ି ଯାଉଛି ସୂର୍ଯ୍ୟମନ୍ଦିର। ଚାରିକଡ଼ରୁ ଘେରି ଦେଇଛନ୍ତି ପାଇକମାନେ।

ବିଶୁ ଯେଉଁଆଡକୁ ଯିବାକୁ ଚେଷ୍ଟା କରୁଛନ୍ତି - ସମ୍ମୁଖରେ ପାଇକମାନଙ୍କୁ ଦେଖୁଛନ୍ତି। ଧରମାର ଶବକୁ କାନ୍ଧରେ ଧରି ଧାଇଁବାକୁ ଚେଷ୍ଟା କରୁଛନ୍ତି ଏ ଦିଗ ସେ ଦିଗକୁ। ତାଙ୍କ ପାଖକୁ ମାଡ଼ି ଆସୁଛନ୍ତି ମହାରାଜା ମହାରାଣୀ ଓ ପାତ୍ରମନ୍ତ୍ର। ଶେଷରେ ବିଶୁ ନିଜ କୋଳରେ ଧରମାର ଶବକୁ ନେଇ ତା ଉପରେ ନିଜର ବାହୁ ପ୍ରସାରଣ କରି ଢ଼ାଙ୍କି ପକାଇବାକୁ ଚେଷ୍ଟା କରୁଛନ୍ତି। ଚିତ୍କାର କରୁଛନ୍ତି, ଛାଡି ଦିଅ, ଛାଡିଦିଅ ମୋ ଧରମୁକୁ।

ପାଖରେ ପହଞ୍ଚି ମହାରାଜା ମହାରାଣୀ ପାରିଷଦବର୍ଗଙ୍କ ସହିତ ଏ ଦୃଶ୍ୟରେ ଶୋକରେ ମୁହ୍ୟମାନ ହୋଇ ଯାଇଛନ୍ତି, ଉତ୍କଳର ଶିଳ୍ପୀ କୁଳର ଶିରୋମଣିର ଏ ଦୁର୍ଦ୍ଦଶା ଦେଖି। ବିଶେଷ କରି, ତାଙ୍କରି କୋଳରେ ଅପୂର୍ବ ସୁନ୍ଦର ପୁତ୍ରର ଶବକୁ ଦେଖି। ସେମାନଙ୍କ ପ୍ରଶ୍ନିଳ ଆଖି ସଜଳ ହୋଇ ଉଠିଛି। କିଏ ବିଶୁଙ୍କର ପୁତ୍ରକୁ ହତ୍ୟା କରିଛି ? ହାଉଁ ମାଉଁ କରି କାନ୍ଦି ବାଚାଳ ପ୍ରାୟ ବିଶୁ ଚିତ୍କାର କରୁଛନ୍ତି - ନା ମହାରାଜ, ମୋ ପୁତ୍ରକୁ ଛଡ଼ାଇ ନିଅ ନାହିଁ। ହାଃ - ହାଃ ମୋରି ପୁଅ ଚୂଳି ମାରିଲା...। ପୁଣି କରୁଣ କ୍ରନ୍ଦନ କରି କହିଲେ, କ'ଣ କହିବି ମାଆକୁ ତାର ? ପଠାଇଥିଲା ପିତା ପାଖକୁ ପୁଅକୁ ତାର।

ରାଜା ରାଣୀ ଦେଖୁଛନ୍ତି ମୃତ ପୁତ୍ରର ଶବକୁ ଧରି ପ୍ରଳାପ କରୁଛନ୍ତି ବିଶୁ; ଶିଳ୍ପୀ ଶିରୋମଣି।

ପାଖରେ ଛିଡା ହୋଇଥିବା ସଦାଶିବ ସାମନ୍ତରା କହୁଛନ୍ତି - ଏହି ବାରବର୍ଷର ବାଳକ ଚୂଳି ମାରିଛି ସୂର୍ଯ୍ୟମନ୍ଦିରର। ଆମର ଶିଳ୍ପୀଙ୍କର ଶିଳ୍ପ ଶାସ୍ତ୍ରର ଜ୍ଞାନ ହାର ମାନି ଯାଇଛି ଏହି ବାଳକର ଜ୍ଞାନ ଆଗରେ।

ମୁଁ ଏକଥା ଶୁଣିବାକୁ ଚାହେଁ ନାହିଁ ସାମନ୍ତରା। କୁହ ମୋତେ, କେଉଁମାନେ ବିଶୁଙ୍କର ଏ ବାଳୁତ ପୁତ୍ରକୁ ହତ୍ୟା କରିଛନ୍ତି ? ମୁଁ ସେମାନଙ୍କର ମୁଣ୍ଡ କାଟ କରିବି। କ୍ରୋଧରେ ଗର୍ଜନ କଲେ ମହାରାଜା।

ଚିତ୍କାର କରୁଛନ୍ତି ବିଶୁ। ନା - ମୁଣ୍ଡ କାଟ କରନାହିଁ ମହାରାଜା। ପୁଅ ମୋର ସେହିମାନଙ୍କୁ ବଞ୍ଚାଇବା ପାଇଁ ସବୁଦିନ ପାଇଁ ଆଖି ବୁଜି ଦେଇଛି। ଆଉ ଫେରିବ ନାହିଁ ତା ମାଆ କୋଳକୁ। ଚାଲିଯାଇଛି ପ୍ରଭୁ ଜଗନ୍ନାଥଙ୍କ ପାଖକୁ।

ପ୍ରଳାପ କରୁଥିବା ବିଶୁଙ୍କର କଣ୍ଠରେ ଏ କେଉଁ ପିତୃତ୍ୱର ସ୍ୱର ? ମହାରାଜାଙ୍କ ହୃଦୟ ଭିତରେ ଆନ୍ଦୋଳିତ ହେଉଛି - ଏଇଥି ପାଇଁ ସତେ, ଏ ତ୍ୟାଗର ମାଟିରେ ପ୍ରଭୁ ଜଗନ୍ନାଥ ବିଜେ କରିଛନ୍ତି।

x x x x

ମହାରାଜାଙ୍କ କଣ୍ଠରେ ଭାଷା ନଥିଲା ପୁତ୍ରହରା ପିତାକୁ ସାନ୍ତ୍ୱନା ଦେବାକୁ। କମ୍ପିତ କଣ୍ଠରେ ସେ କହିଛନ୍ତି - ମୁଁ ରାଜ୍ୟ ପରେ ରାଜ୍ୟ ଜୟ କରି ବିଜୟ ଧ୍ୱଜା ଉଡାଇଛି। ହେଲେ ମୁଁ ହାରି ଯାଇଛି - ତୁମରି ପାଖରେ ବିଶୁ। ମୋର ମୁଣ୍ଡ ନଇଁ ଯାଇଛି ତୁମରି ଏ ବାଳୁତ ପୁତ୍ରର ଶବ ନିକଟରେ। ଏହା କହି ସେ ନିଜର ପଗଡ଼ି ବାହାର କରି, ଦୁଇ ହାତ ଯୋଡି ନମସ୍କାର କରି ସମ୍ମାନ ପ୍ରଦର୍ଶନ କରିଛନ୍ତି ଧରମାର ଶବକୁ। ରାଜାଙ୍କ ଆଖିରୁ ଝରି ପଡୁଛି ଧରମାର ଶରୀର ଉପରେ ଟୋପା ଟୋପା ମୁକୁତା ବିନ୍ଦୁ ପରି ଲୁହ। ଅଶ୍ରୁଳ ଆଖିରେ ମହାରାଣୀ ଅନୁସୂୟା କହୁଛନ୍ତି - ସେହି ଚିରବରେଣ୍ୟା ମାଆ - ଯିଏ କି ଏପରି ପୁତ୍ରଟିକୁ ଜନ୍ମ ଦେଇଛି - ତାକୁ କ'ଣ କହି ସାନ୍ତ୍ୱନା ଦେବେ ମହାରାଜା ?

ଭାବୁଛନ୍ତି ମହାରାଜା ପୂଣ୍ୟ ଅର୍ଜନ କରିବା ପାଇଁ ସେ ତରବରରେ ନିର୍ଦ୍ଧାରିତ ସମୟ ମଧ୍ୟରେ ମନ୍ଦିର ନିର୍ମାଣ କାର୍ଯ୍ୟ ସମାପ୍ତ କରିବାକୁ ନିର୍ମମ ନିର୍ଦ୍ଦେଶ ଦେଇ କେଡ଼େ

ଭୁଲ କରିଛନ୍ତି। ଉତ୍କଳର ଶିଳ୍ପୀମାନଙ୍କର କଳାର ସ୍ୱାଧୀନତା କେବଳ ଅପହରଣ କରି ନାହାନ୍ତି, ଭୁଲ କରିଛନ୍ତି ବାରଶ ବଢ଼େଇଙ୍କର ମୁଣ୍ଡକାଟ କରିବାର ନିର୍ଦ୍ଦେଶ ଦେଇ। ସେହି ବାରଶହ ବଢ଼େଇର ପ୍ରାଣରକ୍ଷା କରିବାକୁ ଯାଇ ଶିଳ୍ପୀ କୁଳର ସୂର୍ଯ୍ୟ ଶିଶୁଟିଏ ଆତ୍ମତ୍ୟାଗର ଆହୂତି ଯଜ୍ଞରେ ନିଜକୁ ଆତ୍ମାହୂତି ଦେଇଗଲା। ସେଥିପାଇଁ ମହାରାଜା ଦାୟୀ ମଣୁଥିଲେ ନିଜକୁ। କେତେ ଶିଳ୍ପୀ ଓ ଶ୍ରମିକ ପରିବାରର ଆଖିରେ ସେ ଅଶ୍ରୁର ବନ୍ୟା ବୁହାଇ ଦେଇଛନ୍ତି - କେବଳ ଏ ଜାତିର କୀର୍ତ୍ତିକଳାର ଗୌରବଧ୍ୱଜା ବିଶ୍ୱ କଳାର ଦରବାରରେ ଉଡାଇବା ପାଇଁ। ନିଷ୍ଠୁର ହୃଦୟରେ ସେ ଯାହା କରିଛନ୍ତି - ଲାଭ କ୍ଷତିର ହିସାବର ଅଙ୍କ ସେ କଷୁଛନ୍ତି। ପ୍ରଜାପାଳନର କର୍ତ୍ତବ୍ୟ ଭିତରେ ଜାତି ଉଦ୍ଦେଶ୍ୟରେ ସେ ଯାହା କରିଛନ୍ତି ଇତିହାସ ତାକୁ କେତଦୂର ମର୍ଯ୍ୟାଦା ଦେବ, ତାହା ସେ କଳ୍ପନା କରିପାରୁ ନାହାନ୍ତି। ସର୍ବୋପରି ମର୍ମ ବେଦନାରେ ମଥିତ ହୋଇ ଉଠୁଛି ମହାରାଜାଙ୍କ ହୃଦୟ - ବିଶୁ ମହାରଣା ଓ ତାର ପତ୍ନୀଙ୍କ କଥା ଭାବି। ସେମାନଙ୍କ ପ୍ରତି ଓ ତାର ଏହି ପ୍ରତିଭାଧର ପୁତ୍ରର ଶବ ପ୍ରତି ସେ କେଉଁ ମର୍ଯ୍ୟାଦାର ଅର୍ଘ୍ୟ ବାଢ଼ି ଦେଇ ପାରିବେ ?



# (୨୭)

ସାରା ରାତି ମାଆ ପଦ୍ମାଳୟାଙ୍କ ଆଖିକୁ ନିଦ ନାହିଁ। ତାଙ୍କ କୋଳ ଯେମିତି ଶୂନ୍ୟ କରି ଚାଲିଯାଇଛି ପ୍ରାଣର ପୁତ୍ର ଧରମା ବାପାଙ୍କ ପାଖକୁ। ସଂଧ୍ୟା ପୂର୍ବରୁ ଫେରି ଆସିବ ବାପାଙ୍କୁ ସାକ୍ଷାତ କରି। ଫେରି ନାହିଁ।

ଦିନଟିଏ ଯାଇ ପୁଣି ସୂର୍ଯ୍ୟ ବୁଡ଼ିବାକୁ ବସିଛନ୍ତି - କିଛି ସମୟ ପରେ ସଂଜ ନଇଁ ଆସିବ। ମାଆ ପଦ୍ମାଳୟାଙ୍କର ପ୍ରତୀକ୍ଷାର ଅନ୍ତ ନାହିଁ। ଆକାଶର ଦିଗ୍‌ବଳୟ ଆଡକୁ ଅନେଇ ଦେଖୁଛନ୍ତି - ଦିଗ୍‌ବଳୟର ଆକାଶରେ କିଏ ଯେମିତି ବିଷର୍ଣ୍ଣତାର ଅବିର ବୋଳି ଦେଇଛି। ଅନେଇ ଦେଖୁଛନ୍ତି ଗାଆଁ ଭୂଇଁର ବୃକ୍ଷଲତା ଉପରେ ସେହି ଅରୁଣିମାର ଆଭା ବିଂଚି ପଡିଛି। ସଂଜବତୀ ଲାଗିବାକୁ ବାକି ଅଛି। ସେଥିପାଇଁ ବେଣୁଧରଙ୍କ ପିଣ୍ଡାରେ ବସି ଇନ୍ଦୁମତୀଙ୍କ ସହିତ ଅନେଇ ବସିଛନ୍ତି ପୁଅ ଧର୍ମପଦର ପ୍ରତ୍ୟାବର୍ତ୍ତନ ପଥକୁ। ଇନ୍ଦୁମତୀ ଅପେକ୍ଷା କରିଛନ୍ତି ଧର୍ମପଦ ଫେରିଲେ ତା ମୁଖରୁ ଶୁଣିବେ ସ୍ୱାମୀ ସୁଦର୍ଶନଙ୍କ 'ସୁଖବର। ଇନ୍ଦୁମତୀ କହୁଛନ୍ତି କାଲିଠୁଁ ଝିଅ ପେଟକୁ ଦାନା ଯାଉନାହିଁ। ରାତିରେ ନିଦ ବାଉଳାରେ ବି ଧରମା ଭାଇ, ଧରମା ଭାଇ, ହେଉଛି।

ଏପରି ସମୟରେ କୋଳାହଳ ଶୁଭିଲା। ସତେ ଅବା ଏକ ନୀରବ ପଟୁଆର ତାଙ୍କ ଘର ଆଡକୁ ମାଡି ଆସୁଛି। ଧୀରେ ଧୀରେ ସେ ପଟୁଆର ଆସି ବିଶୁଙ୍କ ଘର ଆଗରେ ପହଞ୍ଚିଲା। ପ୍ରଥମେ ଆଗରେ ଆସୁଥିବା ହସ୍ତୀ ପୃଷ୍ଠରୁ ଓହ୍ଲାଇଲେ ମହାରାଜା ଏବଂ ମହାରାଣୀ।

ଆବା କାବା, ଭୟ ଭୀତ ହୋଇ ପିଣ୍ଡା ତଳକୁ ଓହ୍ଲାଇ ଆସିଲେ ପଦ୍ମାଳୟା ଓ ଇନ୍ଦୁମତୀ। ପାଖ ଘରୁ ଝିଅ ସର ମଧ୍ୟ ଧାଇଁ ଆସିଲା ମାଆ ପାଖକୁ।

ପରେ ପରେ ଅନ୍ୟ ଗୋଟିଏ ହସ୍ତୀରୁ ସୁସଜ୍ଜିତ ଶବାଧରଟିଏ ରାଷ୍ଟ୍ରୀୟ ମର୍ଯ୍ୟାଦାରେ ଓହ୍ଲାଇଲେ ପାଇକମାନେ। ସେହି ହସ୍ତୀପୃଷ୍ଠରୁ ଓହ୍ଲାଇ ଆସିଲେ ବିଶୁ ମହାରଣା। ପଛରେ

ଅସମ୍ଭବ ଜନ ଗହଳି । ଏ ଭଳି ଏକ କ୍ଷୁଦ୍ର ପଲ୍ଲୀରେ ମହାରାଜାଙ୍କର ଆବିର୍ଭାବ କଥା ଭାବି ପାରୁନଥିଲେ ପଦ୍ମାଳୟା ଏବଂ ଇନ୍ଦୁମତୀ । ବିଷର୍ଣ୍ଣ ବଦନରେ ବିଶୁ ଆଗେଇ ଆସୁଛନ୍ତି । ପଦ୍ମାଳୟା ସ୍ୱାମୀଙ୍କର ବିଷଣ୍ଣ ମୁଖମଣ୍ଡଳକୁ ଦେଖି ବିବ୍ରତ ହୋଇ ପଡିଲେ । ସ୍ୱାମୀଙ୍କର ନୟନରୁ ଅଶ୍ରୁ ଝରି ଯାଇ, ତାଙ୍କର ଗଣ୍ଡ ଦେଶ ଉପରେ ଅଲିଭା ଦାଗ ଆଙ୍କି ଦେଇ ଯାଇଛି । ଭୟ ଆଶଙ୍କାରେ ଶିହରି ଉଠିଲେ ପଦ୍ମାଳୟା । ଅଣ୍ଡାଳି ହେଉଛନ୍ତି ପ୍ରାଣର ପୁତ୍ରକୁ ସ୍ୱାମୀଙ୍କର ସଜଳ ଆଖିର ଆଇନାରେ । ଲାଜ ସଂକୋଚକୁ ପରିହାର କରି ଧାଇଁଗଲେ - ଚିତ୍କାର କରି - ମୋ ଧରମୁ କାହିଁ ? ଧରମୁ କାହିଁ ?

ହାଉଁ ମାଉଁ କରି କାନ୍ଦି ଉଠିଲେ ବିଶୁ । ଆଖିରୁ ତାଙ୍କର ତତଲା ଲୁହ ଝରି ପଡିଲା । ବାଷ୍ପରୁଦ୍ଧ କଣ୍ଠରୁ ବାକ୍ୟ ସ୍ଫୁରିଲା ନାହିଁ । ଅଙ୍ଗୁଳି ନିର୍ଦ୍ଦେଶ କରି ଦେଖାଇ ଦେଲେ ଧର୍ମପଦର ଶବାଧାରକୁ ।

ପ୍ରଥମେ ବୁଝି ପାରିଲେ ନାହିଁ ପଦ୍ମାଳୟା । ତାପରେ ଧାଇଁ ଗଲେ ଧର୍ମପଦର ଶବାଧାର ପାଖକୁ । ଶବାଧାରରେ ଶାୟିତ ଧର୍ମପଦର ଶବ ଉପରେ କଚାଡି ପଡ଼ିଲେ, ମୋ ଧରମୁ କହି । ଇନ୍ଦୁମତୀ ଓ ସର ନିର୍ବାକ ହୋଇ ସଜଳ ଚକ୍ଷୁରେ କେବଳ ଅନାଇ ରହିଥାନ୍ତି । ଏ କ'ଣ ଦେଖୁଛନ୍ତି ସେମାନେ । ବିଶୁକୁ ଚାହିଁ ସର ପାଟିରୁ କ୍ରନ୍ଦନର ସ୍ୱର ବାହାରି ଆସିଲା - ମୋ ଧରମା ଭାଇ କାହିଁ ମଉସା ? ବିଶୁ ଥର ଥର କଣ୍ଠରେ କହିଲେ, ମାଆ ତୋ ଧରମା ଭାଇ ସବୁଦିନ ପାଇଁ ଆମକୁ ଛାଡି....ଆଉ ତାଙ୍କ କଣ୍ଠରୁ ବାକ୍ୟ ସ୍ଫୁରିଲା ନାହିଁ । ଇନ୍ଦୁମତୀ ଓ ସର ଧାଇଁଗଲେ ପଦ୍ମାଳୟାଙ୍କ ପାଖକୁ - ଧର୍ମପଦର ଶବାଧାର ନିକଟକୁ ।

ଧର୍ମପଦର ଶବକୁ କୋଳକୁ ଉଠାଇ ଚିତ୍କାର କରି କାନ୍ଦୁଛନ୍ତି ପଦ୍ମାଳୟା । ମୋ ଧରମୁ । କଥା କହ, କଥା କହ, କଥା କହ । ସର, ମାଆ ଇନ୍ଦୁମତୀଙ୍କୁ ଧରି କାନ୍ଦି କାନ୍ଦି କହୁଛି - ମାଆ, ମୋ ଧରମା ଭାଇର କ'ଣ ହୋଇଛି ବୋଉ ? ଇନ୍ଦୁମତୀଙ୍କ ଆଖିରେ ଅଶ୍ରୁର ବନ୍ୟା - ପାଟିରେ ପଦୁଟିଏ ବି କଥାନାହିଁ ।

ଏହି ହୃଦୟ ବିଦାରକ ଦୃଶ୍ୟ ଦେଖୁଥାନ୍ତି ଛିଡାହୋଇ ମହାରାଜା ମହାରାଣୀ । ପୁତ୍ରହରା ପଦ୍ମାଳୟାଙ୍କ ଦୁର୍ଦ୍ଦଶା ଦେଖି ମହାରାଣୀ ଅନୁସୂୟାଙ୍କ ନରମ ନାରୀ ହୃଦୟ ମଥିତ ହୋଇଯାଉଛି । ସେ ଯେ ରାଜ୍ୟର ମହାରାଣୀ, ସେ କଥା ଭୁଲି ଯାଇଛନ୍ତି ସେ । ପଦ୍ମାଳୟାଙ୍କ ପାଖକୁ ଯାଇ ତାଙ୍କୁ ଶବାଧାର ଉପରୁ ଉଠାଇ ନିଜ ବକ୍ଷରେ ଜାବୋଡ଼ି ଧରି ତାଙ୍କୁ ପ୍ରବୋଧନା ଦେବାକୁ ଚେଷ୍ଟା କରୁଛନ୍ତି । ହେଲେ ପାଗଳିନୀ ପ୍ରାୟ ପଦ୍ମାଳୟା ପୁତ୍ରର ଶବକୁ ବକ୍ଷରେ ଜାବୋଡ଼ି ଧରି କରୁଣ କ୍ରନ୍ଦନରେ ଭାଙ୍ଗି ପଡୁଥିଲେ ।

ମହାରାଣୀ କରୁଣ କଣ୍ଠରେ କହୁଛନ୍ତି, ଭଉଣୀ, ତୁମେ ଜଣେ ନାରୀ ନୁହଁ। ତୁମେ ଜଣେ ଦେବୀ। ସେଥିପାଇଁ ତୁମରି ଗର୍ଭରୁ ଏପରି ଦେବଶିଶୁଟିଏ ଜନ୍ମ ଗ୍ରହଣ କରିଛି। ସେହି ଦେବଶିଶୁ ଆଜି ସୂର୍ଯ୍ୟମନ୍ଦିରର ଚୂଡା ମାରି ସାରା ବିଶ୍ୱରେ ଶିଳ୍ପୀକୁଳର ଗୌରବଧ୍ୱଜା ଉଡାଇ ଯାଇଛି। ବାରଶହ ବଢ଼େଇର ପ୍ରାଣ ରକ୍ଷା କରିବା ଲାଗି ନିଜକୁ ସେ ନିଃଶେଷ କରି ଦେଇଯାଇଛି। କିଏ ଭଉଣୀ ଏ ଜଗତରେ ଜୀଇଁଥିବ ଚିରଦିନ? ଜନ୍ମ ହେଲେ ମୃତ୍ୟୁ ଯେ ଅବଧାରିତ। ହେଲେ ତାହାରି ଜନ୍ମ ସାର୍ଥକ, ଯାହା ପାଇଁ ସବୁଦିନ ଝୁରୁଥିବ ଗୁଡ଼ିମାଟି। ଭଗବାନ ବୁଦ୍ଧ ସେ ଦିନ ପରା ପୁତ୍ରହରା ଜନନୀଙ୍କୁ କହିଥିଲେ, ମାଆ ମୁଁ ତୁମର ପୁତ୍ରକୁ ବଞ୍ଚେଇ ଦେବି। ତୁମେ ଯଦି ମୁଠାଏ ସୋରିଷ ସେହି ଘରୁ ଆଣିଦେବ - ଯେଉଁ ଘରେ କେହି କେବେ ମୃତ୍ୟୁ ବରଣ କରିନାହିଁ। ପୁତ୍ରହରା ଜନନୀ ଯାଇଛି - ଘର ଘର ବୁଲି ସେ ପୁଣି ଫେରି ଆସିଛି ଭଗବାନ ବୁଦ୍ଧଙ୍କ ପାଖକୁ ରିକ୍ତ ହସ୍ତରେ। ସମସ୍ତଙ୍କ ଘରେ ଆଜି ନହେଲେ କାଲି କେହିନା କେହି ମୃତ୍ୟୁବରଣ କରିଛନ୍ତି।

ଯିଏ ଚାଲିଗଲା ସେ ଫେରିବ ନାହିଁ। ତାର ଆସିବା ଓ ଚାଲିଯିବା ଏକ ଛଳନା।

ଭଉଣୀ ତୁମେ ଦେବୀ। ତୁମେ ଏ ଜାତିର ଜନନୀ। ତୁମେ ହିଁ ଧନ୍ୟା। ଏହା କହି ପଦ୍ମାଳୟାଙ୍କର ଆଖିର ଅଶ୍ରୁ ସେ ପୋଛି ଦେବାକୁ ଚେଷ୍ଟା କରିଛନ୍ତି।

ପୁତ୍ରହରା ଜନନୀର ଲୁହ ଯେ ବଞ୍ଚିଥିବା ତକେ ଝରୁଥିବ। ସେ ଲୁହ ଅସରନ୍ତି। ମହାରାଣୀ ବା ସେ ଲୁହ କେମିତି ପୋଛି ପାରିବେ? ବହୁ ସମୟ ପରେ, ମହାରାଜାଙ୍କ ଅନୁରୋଧରେ, ପୁତ୍ରହରା ବିଶୁ, ପଦ୍ମାଳୟାଙ୍କୁ ବୁଝାଇବାକୁ ଚେଷ୍ଟା କଲେ। ତାଙ୍କରି କୋଳରୁ କାନ୍ଦୁ କାନ୍ଦୁ ପୁତ୍ରର ଶବକୁ ନେଇଗଲେ ରାଷ୍ଟ୍ରୀୟ ମର୍ଯ୍ୟାଦାରେ ସତ୍କାର କରିବାପାଇଁ। ସେହି ସଜଳ ସଂଧ୍ୟାର କରୁଣ ମର୍ମିଳ ଦୃଶ୍ୟରେ ଉପସ୍ଥିତ ସମସ୍ତଙ୍କ ହୃଦୟ ମଥିତ ମୁହ୍ୟମାନ ହୋଇ ଯାଇଥିଲା। ସମସ୍ତେ କରିଥିଲେ ଅଶ୍ରୁ ତର୍ପଣ, ଏ ଜାତିର ସୂର୍ଯ୍ୟଶିଶୁଟି ଅସ୍ତାଚଳ ଗାମୀ ହେବାରେ।



# (୨୮)

ମହାରାଜା ନରସିଂହ ଦେବଙ୍କ ପୂଣ୍ୟ ଅର୍ଜନର ଅଭିପ୍ସା ହଜି ଯାଇଛି ଅନ୍ତର ମଧ୍ୟରୁ। ତଥାପି ସଂକଳ୍ପ ସିଦ୍ଧି ପାଇଁ ନିର୍ମିତ ମନ୍ଦିରଟି ପ୍ରତିଷ୍ଠା କରିବାକୁ ପଡିବ। ସୂର୍ଯ୍ୟଦେବଙ୍କର ପୂଜାର୍ଚ୍ଚନା, ଯାଗ ଯଜ୍ଞ, ଦାନ, ଧ୍ୟାନ ଯାହା ପୁରୋହିତ ବିଧାନ ଦେଇଛନ୍ତି ସେହି ଅନୁସାରେ ସମସ୍ତ କିଛି ଆୟୋଜନ କରିବାକୁ ନିର୍ଦ୍ଦେଶ ଦେଇଛନ୍ତି ସଦାଶିବ ସାମନ୍ତରାଙ୍କୁ। ମହାରାଣୀ ଅନୁସୂୟାଙ୍କ ସହିତ ମଧ୍ୟ ପରାମର୍ଶ କରିଅଛନ୍ତି। ନିର୍ଦ୍ଧାରିତ ଦିବସ ଆସନ୍ତା ମାଘ ମାସ, ଶୁକ୍ଳ ସପ୍ତମୀ ତିଥିରେ ମନ୍ଦିର ପ୍ରତିଷ୍ଠା ହେଲେ ତାଙ୍କୁ ମୋକ୍ଷ ପ୍ରାପ୍ତି ହେବ, ବ୍ରାହ୍ମଣମାନେ ଭାସ ଦେଇଛନ୍ତି। ହେଲେ ସେ ନିଜ ମନକୁ ବୁଝାଇ ପାରୁନାହାନ୍ତି। ଏହି ମନ୍ଦିର ପୃଥିବୀରେ କାରୁକଳାର ଅପୂର୍ବ ଅତୁଳନୀୟ ମନ୍ଦିର ହୋଇପାରେ। ଏହି ମନ୍ଦିର ନିର୍ମାଣ କରିବାକୁ ଯାଇ କେତେ ଲୋକ ପ୍ରାଣରେ ସେ ଆଘାତ ଦେଇଛନ୍ତି। କେତେ ପ୍ରାଣର ସୁଖ ଶାନ୍ତି ସେ ଅପହରଣ କରିଛନ୍ତି। କେତେ ଶିଳ୍ପୀ ଓ ଶ୍ରମିକର ଦେହାବସାନ ଘଟାଇଛନ୍ତି - ମହାରାଜାଙ୍କର କ୍ଷମତା ପ୍ରୟୋଗ କରି । ସେ କଥା ଭାବିଲା ବେଳକୁ ସେ ନିଜକୁ ନିଜେ ଦୋଷୀ ମଣୁଛନ୍ତି। ରାଜା ହୋଇ ପ୍ରଜାଙ୍କର ସୁଖ ଦୁଃଖ ଦେଖିବା ବଦଳରେ - ସୁଖ ଦୁଃଖରେ ଭାଗୀଦାର ହେବା ବଦଳରେ ସେ ସେମାନଙ୍କର ପାଳକ ହିସାବରେ ସେବକ ହିସାବରେ କର୍ତ୍ତବ୍ୟ ପାଳନ କରିବା ବଦଳରେ ସେମାନଙ୍କୁ ପଳ ପଳ କରି ଦୁଃଖ ଯାତନାରେ ଜର୍ଜରିତ କରିଛନ୍ତି। ସେଥିପାଇଁ କେଉଁ ପୁଣ୍ୟଫଳ ତାଙ୍କୁ ମିଳିବ ଭାବି ପାରୁନାହାନ୍ତି। ମହାରାଣୀ ଅନୁସୂୟା ତାଙ୍କୁ ଆଶ୍ୱାସନା ଦେଇଛନ୍ତି। ରାଜ୍ୟର ରାଜା - ରାଜ୍ୟରକ୍ଷା ପାଇଁ ତାଙ୍କର ସୈନ୍ୟମାନଙ୍କୁ ମୃତ୍ୟୟନ କରନ୍ତି। ରାଜ୍ୟକୁ ସୁରକ୍ଷିତ କରିବା ପାଇଁ ସେହି ସୈନ୍ୟମାନଙ୍କୁ କେତେବେଳେ ଯୁଦ୍ଧରେ ପ୍ରାଣ ଦେବାକୁ ପଡେ। ସେଥିରେ ରାଜାଙ୍କର ଦୋଷ କ'ଣ ? ସେହିଭଳି ଭାବ୍‌ରେ ରାଜ୍ୟର ଗୌରବ ବୃଦ୍ଧି କରିବା ରାଜାଙ୍କର ଧର୍ମ। ସେହି ଗୌରବ ବୃଦ୍ଧି ପାଇଁ କଳାର ଇମାରତଟିଏ ତିଆରି ହେଲା - ସେଥିରେ ଶିଳ୍ପୀ ଓ ଶ୍ରମିକ ବୃନ୍ଦ ମୃତ୍ୟୟନ ହୋଇଥିଲେ - ସେମାନଙ୍କର ପରିବାରର ହାନୀଲାଭ

ବୁଝିବା ପାଇଁ ରାଜା ଯାହା ଚେଷ୍ଟା କରିବାର କଥା କରିଛନ୍ତି । ଏଠାରେ ରାଜାଙ୍କର କର୍ତ୍ତବ୍ୟ ପାଳନରେ ତ୍ରୁଟି କେଉଁଠି ରହିଗଲା ? ମହାରାଜା ନରସିଂହ ଦେବ କହିଲେ, ଶୁଣ ପ୍ରିୟତମା, ମୁଁ ମୋ ମନକୁ ଯେ ବୁଝାଇ ପାରୁନାହିଁ । ଶିଳ୍ପୀ ନୀଳ ମହାରଣାର ମୃତ୍ୟୁ ବା ଅନ୍ୟ ଶିଳ୍ପୀ ଓ ଶ୍ରମିକଙ୍କର ମୃତ୍ୟୁ ମୋ ଅନ୍ତରକୁ ଯେତେ ଆଲୋଡ଼ିତ କରି ନାହିଁ - ବାରବର୍ଷର ବାଳକ ଶିଳ୍ପୀକୁଳର ଚନ୍ଦ୍ରମା ଧର୍ମପଦର ମୃତ୍ୟୁରେ ମୁଁ ବିଚଳିତ । କ'ଣ କଲେ ମୋ ଆତ୍ମା ଶାନ୍ତି ପାଇବ ?

ଏଥିପାଇଁ ତାଙ୍କର ଆଧ୍ୟାତ୍ମିକ ଗୁରୁ ଭବ ସଦାଶିବଙ୍କର ପରାମର୍ଶ ନେବାକୁ ଆଗ୍ରହ ପ୍ରକାଶ ପାଇଲା ତାଙ୍କ ଭିତରେ । ଏହି ଭବ ସଦାଶିବ ଗୁରୁଙ୍କ ପରାମର୍ଶରେ ସେ ମାୟାଦେବୀଙ୍କର ଅନ୍ତ୍ୟେଷ୍ଟିକ୍ରିୟା ସମ୍ପନ୍ନ କରିଥିଲେ । ତାଙ୍କରି ଉପଦେଶକୁ ପାଥେୟ କରି ସେ ଦ୍ୱାଦଶ ବର୍ଷ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରିଥିଲେ । ପ୍ରଜାମାନଙ୍କୁ ସେ ଈଶ୍ୱର ତୁଲ୍ୟ ଜ୍ଞାନ କରୁଥିଲେ । ଯେମିତି ଭକ୍ତ ଭଗବାନଙ୍କର ପ୍ରାଣଧନ । ସେମିତି ପ୍ରଜା ରାଜାଙ୍କର ପ୍ରାଣଧନ । ରାଜଧର୍ମ କେମିତି ପାଳନ କରିବାକୁ ହେବ ସେ ଏହି ଗୁରୁ ଭବ ସଦାଶିବଙ୍କ ଉପଦେଶକୁ ସେ ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ ।

ଏହି ଭବ ସଦାଶିବ କାଶୀରେ ବାସ କରୁଥିଲେ । ତାଙ୍କରି ନିର୍ଦ୍ଦେଶ କ୍ରମେ ମହାରାଜା ରାଢ଼ ଏବଂ ଗୌଡଦେଶରୁ ଆସିଥିବା ସନ୍ନ୍ୟାସୀମାନଙ୍କ ପାଇଁ ଭୁବନେଶ୍ୱରରେ ଏକ ଆଶ୍ରମ ପ୍ରତିଷ୍ଠା କରିଥିଲେ - ଯାହାର ନାମ ହେଲା ସଦାଶିବ - ଆଶ୍ରମ । ଯେଉଁ ଆଶ୍ରମରେ ଏହି ସନ୍ନ୍ୟାସୀ ମାନଙ୍କର ବାସ ଓ ଖାଦ୍ୟପେୟର ବ୍ୟବସ୍ଥା କରିଥିଲେ ।

ତେଣୁ ମହାରାଜା, ମହାରାଣୀ ଏହି ଗୁରୁ ଭବ ସଦାଶିବଙ୍କ ଚରଣ ଦର୍ଶନ ପାଇଁ କାଶୀଯାତ୍ରା କରିଥିଲେ । ସେଠାରେ ଗୁରୁଙ୍କର ଦର୍ଶନ କରି ଆଶୀର୍ବାଦ ଲାଭ କରି ତାଙ୍କର ପରାମର୍ଶ ଅନୁସାରେ ତୋଳା ମହାଦାନ କରିବାର ସିଦ୍ଧାନ୍ତ ନେଇଥିଲେ । କାଶୀରୁ ଫେରି ସେହି ମନ୍ଦିର ପ୍ରତିଷ୍ଠା ଉତ୍ସବରେ ମହାଦାନ କରିବାର ନିର୍ଦ୍ଦେଶ ଦେଇଥିଲେ ସଦାଶିବ ସାମନ୍ତରାଙ୍କୁ । ଶାସ୍ତ୍ର ମତେ ଯେମିତି ତୋଳା ମହାଦାନ କରାଯାଏ - ମନ୍ଦିର ପ୍ରତିଷ୍ଠା ଦିନ ସେହି ତୋଳା ମହାଦାନ କରାଯିବ ।

ସଦାଶିବ ସାମନ୍ତରାୟ, ଭୁବନାନନ୍ଦ ରାଜଗୁରୁ ପୁରୋହିତଙ୍କ ସହିତ ପରାମର୍ଶ କରି ତାଙ୍କରି ପାଖରୁ ସେ ତାଲିକା ସଂଗ୍ରହ କରିଥିଲେ - ପୂଜାର୍ଚ୍ଚନା, ଯାଗଯଜ୍ଞ ସହିତ ତୋଳା ମହାଦାନର ଫର୍ଦ୍ଦ । ମହାରାଜ, ସେଥିପାଇଁ ସଦାଶିବ ସାମନ୍ତରାଙ୍କୁ କୌଣସି କିଛିର ଯେମିତି ତ୍ରୁଟି ନରହେ ବୋଲି ତାଗିଦ କରିଥିଲେ ।

ସାରା ରାଜ୍ୟରେ ଜଣାଇ ଦିଆ ଯାଇଥିଲା - ଚନ୍ଦ୍ରଭାଗା ତୀରରେ ନୂତନ ନିର୍ମିତ ହୋଇଥିବା ସୂର୍ଯ୍ୟମନ୍ଦିରରେ ଆସନ୍ତା ମାଘ ମାସ ଶୁକ୍ଳପକ୍ଷ ସପ୍ତମୀ ତିଥିରେ ସୂର୍ଯ୍ୟଦେବଙ୍କ ଶୁଭ ପ୍ରତିଷ୍ଠା ଉତ୍ସବ ଅନୁଷ୍ଠିତ ହେବ। ସ୍ୱୟଂ ମହାରାଜା - ମହାରାଣୀ ସେହିଦିନ ପ୍ରଥମେ ସୂର୍ଯ୍ୟଦେବଙ୍କର ପୂଜା କରିବେ। ବିଶାଳ କାରୁକଳା ମଣ୍ଡିତ ମନ୍ଦିର ଦର୍ଶନ କରିବା ସହିତ ପବିତ୍ର ମାଘ ସପ୍ତମୀରେ ସମୁଦ୍ରରେ ବୁଡ଼ ପକାଇବାକୁ ଆସୁଥିବା ଯାତ୍ରୀମାନଙ୍କ ପାଇଁ ପ୍ରସାଦ ସେବନର ବ୍ୟବସ୍ଥା କରାଯାଇଛି।

ଏକେ ଏହି ପବିତ୍ର ଦିନରେ ସମୁଦ୍ରରେ ବୁଡ଼ ପକାଇବାକୁ ଲୋକେ ଆସିବେ - ତା ସହିତ ନୂଆ କରି ଗଢ଼ି ଉଠିଥିବା ସୂର୍ଯ୍ୟ ମନ୍ଦିରରେ ସୂର୍ଯ୍ୟଙ୍କୁ ଦର୍ଶନ କରିବେ। ଏହି ଆଗ୍ରହ ମନରେ ଜାଗି ଉଠିଛି।

କେତେକ ଆସିଛନ୍ତି ରାତ୍ରିରୁ-ପ୍ରଭାତରେ ସୂର୍ଯ୍ୟୋଦୟର ଦୃଶ୍ୟ ଦେଖିବେ। ବିଭିନ୍ନ ପ୍ରକାରର ଦୋକାନୀ ପୂର୍ବଦିନ ଅପରାହ୍ନରୁ ଆସି ଦୋକାନ ମାରିଛନ୍ତି। କୋଣାର୍କ ମନ୍ଦିର ଅପୂର୍ବ ସାଜ ସଜ୍ଜାରେ ପୂର୍ବ ଦିନରୁ ସଦର୍ପରେ ଛିଡ଼ା ହୋଇଛି।

ବାରବର୍ଷ ଧରି ମନ୍ଦିରର କାମ ଚାଲିଥିଲା। ସଂପୂର୍ଣ୍ଣ ମନ୍ଦିରଟିକୁ ବେଢ଼ା ବାହାରୁ ଯାତ୍ରୀମାନେ ଘେରି ଯାଇ ଦେଖୁଛନ୍ତି। ମହାରାଜା ମହାରାଣୀ ଆସିଲା ପରେ ଆରମ୍ଭ ହେବ ଯାଗଯଜ୍ଞ ଓ ତୋଳା ମହାଦାନ। ସେଥିପାଇଁ ଯାତ୍ରୀମାନଙ୍କ ପାଇଁ ଏବେ ମନ୍ଦିର ଭିତରକୁ ଜଗୁଆଳି ସୈନ୍ୟମାନେ ଛାଡ଼ୁ ନାହାନ୍ତି। ପାହାନ୍ତିଆ ପ୍ରହରରୁ ମାଘ ଜାଡ଼ ବାଘ ପରି ଯାତ୍ରୀମାନଙ୍କୁ କଲ ବଲ କରୁଛି। ସୂର୍ଯ୍ୟୋଦୟରେ ସେମାନେ ଆଶ୍ୱସ୍ତ ହୋଇ ସୂର୍ଯ୍ୟୋଦୟର ଦୃଶ୍ୟ ଦେଖୁଛନ୍ତି। ଲୋହିତ ଆଭା ବିଞ୍ଚି ପଡ଼ିଛି ଦିଗ୍‌ବଳୟର ଆକାଶରେ - ଯେଉଁଠି ଲୋହିତ କନ୍ଦୁକ ଭଳି ମୁଣ୍ଡ ଟେକୁଛନ୍ତି ବାଳସୂର୍ଯ୍ୟ। ସୂର୍ଯ୍ୟ ଉପରକୁ ଉଠିବା ସହିତ ଆକାଶର ରଙ୍ଗ ବଦଳି ଯାଉଛି।

ସମୁଦ୍ରର ଢେଉ ଆନନ୍ଦରେ ଗର୍ଜନ କରୁଛି। ସମୁଦ୍ର ପକ୍ଷୀର କଳ କାକଳି ତା ସହିତ ମିଶି ଅପୂର୍ବ ଶବ୍ଦ ସୃଷ୍ଟି କରୁଛି। କୂଳରେ ସ୍ନାନ କରୁଥିବା ହଜାର ହଜାର ଯାତ୍ରୀ ଆନନ୍ଦରେ ବୁଡ଼ମାରି ଢେଉ ଭାଙ୍ଗୁଛନ୍ତି।

କ୍ରମେ ଜନ ଗହଳି ଜମୁଛି। ମନ୍ଦିର ଭିତରେ ପୂଜାର ଆୟୋଜନ କରା ଯାଉଛି। ପୁରୋହିତ ବ୍ରାହ୍ମଣମାନେ ପୂଜାର ଆୟୋଜନ କରିଛନ୍ତି। ମନ୍ଦିର ବେଢ଼ାରେ ବହୁ ପରିମାଣର ଭୋଗରାଗ ପ୍ରସ୍ତୁତ ହେଉଛି। କାହାଳିଆ, ବାଦ୍ୟକାର ସମସ୍ତେ ବାଦ୍ୟଯନ୍ତ୍ର ଧରି ଅପେକ୍ଷାରେ।

ଦୂରରୁ ମହାରାଜା ଓ ମହାରାଣୀ ହସ୍ତୀ ପୃଷ୍ଠରେ ଆସୁଛନ୍ତି । ଆଗରେ ଅଶ୍ୱାରୋହୀ-ସୈନ୍ୟ । ଏକ ସଂକ୍ଷିପ୍ତ ପଟୁଆର । ସିଂହଦ୍ୱାର ସନ୍ନିକଟରେ ହାତୀରୁ ମହାରାଜା ମହାରାଣୀ ହସ୍ତୀ ପୃଷ୍ଠରୁ ଅବତରଣ କରି ମନ୍ଦିର ବେଢ଼ାରେ ପ୍ରବେଶ କଲେ । ମହାରାଜା ଓ ମହାରାଣୀଙ୍କ ଜୟଧ୍ୱନୀରେ ମନ୍ଦିର ବେଢ଼ା ପ୍ରକମ୍ପିତ ହେଲା । କାହାଳୀ ସହିତ, ଶଙ୍ଖ, ଘଣ୍ଟା, ମୃଦଙ୍ଗ, ଝାଞ୍ଜ, ମହୁରୀ ଶବ୍ଦ ମନ୍ଦିର ପରିସରକୁ ମୁଖରିତ କଲା । ମନ୍ଦିର ଭିତରେ ପାତ୍ର ମନ୍ତ୍ରୀଙ୍କ ସହ ପ୍ରବେଶକଲେ ମହାରାଜା ମହାରାଣୀ । ମନ୍ଦିରରେ ଆରମ୍ଭ ହୋଇଗଲା-ପୂଜାର୍ଚ୍ଚନା ଯାଗଯଜ୍ଞ ।

ସମସ୍ତ କାର୍ଯ୍ୟ ରାଜକୀୟ ଆଡମ୍ବରରେ ସଂପନ୍ନ ହେଲା । ମହା ତୋଳା ଦାନ କରି ମହାରାଜା ନରସିଂହ ଦେବ ଆଶ୍ୱସ୍ତି ଲାଭ କରିନପାରି ମନେ ମନେ ଚିନ୍ତା କଲେ; ଯେଉଁମାନଙ୍କ ଅବଦାନରେ ଏ ଅଭିନବ ଅତୁଳନୀୟ ମନ୍ଦିର ନିର୍ମିତ ହେଲା, ସେମାନଙ୍କ ପାଇଁ କ'ଣ କଲେ ସେ ? ସଦାଶିବ ସାମନ୍ତରାକୁ ଡାକି କହିଲେ, ନାଟମନ୍ଦିର ଗାତ୍ରରେ ନୃତ୍ୟ ଗୁରୁ ସୌମ୍ୟଶ୍ରୀ ଦତ୍ତଙ୍କର ମୂର୍ତ୍ତି ଓ ନାମ ଖୋଦିତ ହେଲା । ଖୋଦିତ ହେଲା ଶ୍ରୀ ବ୍ୟୟ-ଭଣ୍ଡାର ରକ୍ଷକ ବଳାଇ ନାୟକ - ଭଣ୍ଡାର ନାୟକ । ଦ୍ୱିତୀୟ ଧାଡ଼ିରେ ଖୋଦିତ ହେଲା - ଅଲଲୁ ନାୟକ - କୋଷ୍ଠ କରଣ ଅଙ୍ଗାଇ ନାୟକଙ୍କର ନାମ । ସବୁଦିନ ପାଇଁ ମୋ ମନର ଆକାଶରେ ଆତ୍ମ ଗ୍ଲାନିର ବାଦଲର କୃଷ୍ଣ ଘନାଘଟା ଛାଇ ହୋଇ ରହିଲା । ଶିଳାର ପଦ୍ମଗୁଡ଼ିକ ଏହି କୃଷ୍ଣ ଘନାଘଟାର ଛାଇରେ ଆଚ୍ଛନ୍ନ ହୋଇ ରହିଗଲା । ଏ ସୂର୍ଯ୍ୟମନ୍ଦିର ରହିଗଲା କୃଷ୍ଣ ପାଗୋଡା ହୋଇ । ଯେଉଁମାନେ ଅନ୍ତତଃ ଆତ୍ମଦାନ କରି ଯାଇଛନ୍ତି - ସେମାନଙ୍କର ନାମ ଲିପି ବଦ୍ଧ ହେଲା ନାହିଁ । ମନ୍ଦିର ଗାତ୍ରରେ ନ ହେଲେ ମଧ୍ୟ ଏକ ଶିଳାଲେଖରେ ମନ୍ଦିର ସମ୍ମୁଖରେ ସେମାନଙ୍କର ନାମ ଯେମିତି ଖୋଦନ କରାଯାଏ । ନ ହେଲେ ସେହି ସମସ୍ତ ଆତ୍ମାଗୁଡ଼ିକ ଶାନ୍ତି ପାଇବେ ନାହିଁ ।

ସଦାଶିବ ସାମନ୍ତରାୟ ମନ୍ଦିର ଗାତ୍ରରେ ଓ ଶିଳାସ୍ତମ୍ଭରେ ପରବର୍ତ୍ତୀ ସମୟରେ କେତେକ ଶିଳାଲେଖ ଶିଳ୍ପୀମାନଙ୍କ ଦ୍ୱାରା ଖୋଦନ କରାଇ ଥିଲେ । ହେଲେ ଉତ୍କଳୀୟ ଶିଳ୍ପୀମାନଙ୍କର କୀର୍ତ୍ତିସ୍ତମ୍ଭର ଶିଳାଲିପି ଅପେକ୍ଷା ମନ୍ଦିର ଗାତ୍ରରେ କାରୁ-କଳାର ଭାସ୍କର୍ଯ୍ୟ ଭିତରେ ଚିରଦିନ ଦେଦୀପ୍ୟମାନ ହୋଇ ରହିଲା । ରହିଲା ଲାଙ୍ଗୁଳା ନରସିଂହ ଦେବଙ୍କ ଅକ୍ଷୟ କୀର୍ତ୍ତି ।



# ଉପସଂହାର

ମାନବ ସମାଜ ସେଦିନ ସ୍ୱୀକାର କରିଥିଲା ପୃଥିବୀର ସପ୍ତାଶ୍ଚର୍ଯ୍ୟ ଭିତରେ ଚନ୍ଦ୍ରଭାଗା ତୀରର ଏହି ସୂର୍ଯ୍ୟମନ୍ଦିର ଅନ୍ୟତମ। ଏହା ହେଉଛି ସ୍ଥାପତ୍ୟ ଶିଳ୍ପ କଳାର ଏକ ଶ୍ରେଷ୍ଠକୃତି। ଏହା ଏକ ସ୍ୱପ୍ନର ସଉଧ ହେଲେ ବି, ସେହି ସଉଧ ଦେହରେ ପଥରମାନେ କଥା କହନ୍ତି, ହସନ୍ତି, ନୃତ୍ୟ କରନ୍ତି, ସଙ୍ଗୀତ ଗାନ କରନ୍ତି। ମଣିଷର ଭାଷା, ଭାବନା ସବୁକିଛି ଏହି ମନ୍ଦିରର ଶିଳା ଗାତ୍ରରେ ଫୁଟି ଉଠେ। କିନ୍ତୁ ସେ ଭାଷା ଓ ଭାବନା, ବୁଝି ହୁଏନା କି ବୁଝାଇ ହୁଏନା। ମଣିଷ ବିସ୍ମୟରେ ବିସ୍ଫାରିତ ଚକ୍ଷୁରେ କେବଳ ଚାହିଁ ରହେ। କ'ଣ କହୁଛନ୍ତି ମୂର୍ତ୍ତିଗୁଡ଼ିକ। ସତେ ଅବା ସେମାନଙ୍କର ନୃତ୍ୟ ସଙ୍ଗୀତ କାଳଜୟୀ। ଥକି ଯାଏ ନା ମୂର୍ତ୍ତିଗୁଡ଼ିକର ଅଙ୍ଗଭଙ୍ଗୀ, ସେମାନଙ୍କର ହସ୍ତ, ପଦର ଛନ୍ଦ। ଅଟକି ଯାଏନା ସେମାନଙ୍କ ଭାବ ପ୍ରକାଶର ଭାଷା। ଯାହା କାଳଜୟୀ କଳାର ପରିପ୍ରକାଶ। ସତେ ଅବା ଏହି କୋଣାର୍କ ଏକ ଅକୁହା କାହାଣୀର ମନ୍ଦିର। ଆମ ଜାତୀୟ ଇତିହାସର କେବଳ ନୁହେଁ ମାନବ ଜାତିର ଏହି ମନ୍ଦିର ମହା ସମ୍ପଦ ଏକ ମହାକାବ୍ୟ। ଯେଉଁ କାବ୍ୟ ଜୀବନର ଅସରନ୍ତି ଅଧ୍ୟାୟର ଆଲେଖ୍ୟ। ଏହା ଏକ ସମାଜର ସମକାଳୀନ ସାହିତ୍ୟ – ଯେଉଁ ସାହିତ୍ୟ କାବ୍ୟିକ ଧାରାରେ ଛନ୍ଦମୟ।



# ଇତିହାସର ଫସଲ କୋଣାର୍କ

ଏହି ସୂର୍ଯ୍ୟମନ୍ଦିର ଆଜି ଐତିହାସିକ, ଗବେଷକ, ଶିଳ୍ପୀ, ସାହିତ୍ୟିକ ବୃନ୍ଦଙ୍କର କେବଳ ନୁହେଁ ସାଧାରଣ ମଣିଷର ଏକ ତୀର୍ଥ କ୍ଷେତ୍ର। ଦିନ ଯାଏ - ଚିହ୍ନ ରହେ। ଭଗ୍ନ ମନ୍ଦିର ଏବେ ବି ଅତୀତର କାରୁକଳାର ଗୌରବମୟ ଇତିହାସ କେବଳ ବହନ କରି ଆସୁନାହିଁ ଏହି ମାନବ ସମାଜର ସେହି ଅତୀତ ଦିନର ଅଲେଖ୍ୟ ବହନ କରି ଆସୁଛି। ପୁରୀର ବଡ଼ ଦେଉଳ ପରି ଯଦି ଅକ୍ଷୁର୍ଣ୍ଣ ଅବସ୍ଥାରେ ଆଜି ଏହି ସୂର୍ଯ୍ୟମନ୍ଦିର ରହିଥାନ୍ତା ତାହାଲେ, ବିଶ୍ୱବାସୀ ଏବେବି ଏକ ମାତ୍ର ଅତ୍ୟାଶ୍ଚର୍ଯ୍ୟ ଭିତରେ ତାକୁ ସ୍ଥାନ ଦେବାକୁ କୁଣ୍ଠା ବୋଧ କରନ୍ତେ ନାହିଁ।

୧୬୦୯ ଖ୍ରୀଷ୍ଟାବ୍ଦରେ ମନ୍ଦିରର ଧ୍ୱଜପଦ୍ମ ଖସି ପଡ଼ିଥିବାର ଜଣାଯାଏ। ତାହା ପୂର୍ବରୁ ମନ୍ଦିରଟି ସଂପୂର୍ଣ୍ଣ ଅକ୍ଷତ ଅବସ୍ଥାରେ ରହିଥିଲା।

୧୫୫୬ରୁ ୧୬୬୫ ପର୍ଯ୍ୟନ୍ତ ସମ୍ରାଟ ଆକବରଙ୍କ ଦରବାରରେ ରହିଥିବା ବିଖ୍ୟାତ ଐତିହାସିକ ଆବୁଲ ଫାଜଲ ତାଙ୍କର ଆଇନ-ଇ-ଆକବର (Ain-i-Akbar) ବହିରେ ଏହି ବିଖ୍ୟାତ ସୂର୍ଯ୍ୟ ମନ୍ଦିର ସଂପର୍କରେ ନିମ୍ନ ଲିଖିତ ପଙ୍‌କ୍ତି ଲିପି ବଦ୍ଧ କରି ଯାଇଛନ୍ତି। ତାହା ହେଲା -

"ଜଗନ୍ନାଥ ମନ୍ଦିରର ଅନତିଦୂରରେ ସୂର୍ଯ୍ୟଙ୍କୁ ସମର୍ପିତ ଏକ ମନ୍ଦିର ଅବସ୍ଥିତ। ଯାହାକୁ ନିର୍ମାଣ କରିବାପାଇଁ ପ୍ରଦେଶର ବାର ବର୍ଷର ରାଜସ୍ୱ ଖର୍ଚ୍ଚ ହୋଇଛି। ଏପରିକି ଦୋଷ ଦର୍ଶୀମାନେ ମଧ୍ୟ ଏହି ମନ୍ଦିରକୁ ଦେଖି ଆଶ୍ଚର୍ଯ୍ୟରେ ଅନେଇ ରହୁଛନ୍ତି। ଏହାର କାନ୍ଥର ଉଚ୍ଚତା ୧୫୦ ହାତ ଏବଂ ମୋଟେଇ ୧୯ ହାତ। ଏହାର ତିନୋଟି ଫାଟକ ଅଛି। ପୂର୍ବ ଫାଟକରେ ଦୁଇଟି ସୁନ୍ଦରାକୃତିର ହସ୍ତୀ ରହିଛି। ପ୍ରତ୍ୟେକେ ସେମାନଙ୍କର ଶୁଣ୍ଢରେ ଗୋଟିଏ କରି ମଣିଷକୁ ବହନ୍ କରିଛନ୍ତି।

● କଥା କହେ କୋଣାର୍କ

ପଶ୍ଚିମ ଫାଟକରେ ଦୁଇଜଣ ଅଶ୍ୱରୋହୀ ସହିତ ସୁସଜ୍ଜିତ ଜିନ ଏବଂ ଅଳଙ୍କାର ପରିହିତ ଅଶ୍ୱ ଓ ଜଣେ କରି ଅଶ୍ୱରକ୍ଷକ।

ଉତ୍ତର ଫାଟକରେ ଦୁଇଟି ବ୍ୟାଘ୍ର, ଯେଉଁ ବ୍ୟାଘ୍ର ହାତୀ ଉପରେ ମାଡ଼ି ବସିଛି। ସମ୍ମୁଖରେ ଅଷ୍ଟାକୋଣ ବିଶିଷ୍ଟ କଳା ମୁଗୁନି ପଥରର ୫୦ ଗଜ ଉଚ୍ଚତାର ଫାଟକ। ନଅଟି ପାବଚ୍ଛ ଫାଟକ ମଧ୍ୟ ଦେଇ ଗଲାପରେ ଗୋଟିଏ ବଡ଼ ଦରବାର। ଉପରେ ଯାର ସୂର୍ଯ୍ୟ ଓ ଅନ୍ୟାନ୍ୟ ଗ୍ରହ ଗୁଡ଼ିକ ରହିଛି। ସେମାନଙ୍କୁ ବିଭିନ୍ନ ପ୍ରକାରର ପୂଜକ ମୁଣ୍ଡ ନୁଆଇ ବେଢ଼ି ରହିଛନ୍ତି। କିଏ ଛିଡ଼ା ହୋଇ ରହିଛନ୍ତି, କିଏ ବସିଛନ୍ତି, କିଏ ଭୂମିଷ୍ଠ, କିଏ ହସୁଛନ୍ତି, କେହି ବା କାନ୍ଦୁଛନ୍ତି। ସମସ୍ତେ ବିସ୍ମୟାଭିଭୂତ କିମ୍ବା ଧ୍ୟାନସ୍ଥ। ସେମାନଙ୍କୁ ଆନୁସରଣ କରି ସମସ୍ତେ ନିମଜ୍ଜମାନ ବାଦକ ଏବଂ ସ୍ୱପ୍ନର ଥିବା ବିସ୍ମୟକର ପ୍ରାଣୀମାନେ ଯେଉଁମାନେ କେବେ ନାହାନ୍ତି।

ଏ କଥା କୁହାଯାଏ, ପ୍ରାୟ ୭୩୬ ବର୍ଷ ତଳେ ରାଜା ନରସିଂହ ଦେବ ଏହି ବିଶାଳ କୋଠା (ମନ୍ଦିର) ନିର୍ମାଣ କରିଥିଲେ ଏବଂ ବିରାଟ ସଉଧ ଜନପଦକୁ ଉତ୍ସର୍ଗ କରିଥିଲେ। ଏହାର ପରିସର ଭିତରେ ଅଠେଇଶଟି ମନ୍ଦିର ଓ ପ୍ରବେଶ ପୂର୍ବରୁ ଛଅଟି ଏବଂ ବାଇଶଟି ପରିସର ବାହାରେ ମନ୍ଦିର ରହିଛି। ପ୍ରତ୍ୟେକଟି ସ୍ୱତନ୍ତ୍ର କାହାଣୀ ବହନ କରୁଛି।"

ତାଙ୍କ ପ୍ରଦତ୍ତ ଏହି ମନ୍ଦିରର ବିବରଣୀ ସମସ୍ତ ସତ୍ୟ। କେବଳ ଦୁଇଟି ହାତୀ, ଘୋଡ଼ା, ହସ୍ତୀ ଉପରେ ସିଂହର କଥା ଗୁଡ଼ିକୁ ବାଦ ଦେଲେ ଚଳିବ। ପ୍ରକୃତରେ ଦେଖିଲେ, ଯେଭଳି ଭାବରେ ସେଗୁଡ଼ିକର ଅବସ୍ଥିତି, ସେତେବେଳେ ପର୍ଯ୍ୟନ୍ତ ମନ୍ଦିର ଏ ଭଳି କ୍ଷତିର ସମ୍ମୁଖୀନ ହୋଇ ନଥିଲା।

ସମଗ୍ର ଭାରତ ବର୍ଷରେ ଓଡ଼ିଶା, ମନ୍ଦିର ନିର୍ମାଣ କ୍ଷେତ୍ରରେ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଥିଲା। ଯେଉଁଥିପାଇଁକି ଏବେ ବି ଐତିହାସିକ ବୃନ୍ଦ ଓଡ଼ିଶାର ରାଜଧାନୀ ଭୁବନେଶ୍ୱରକୁ ମନ୍ଦିରମାଳିନୀ ନଗରୀବୋଲି ଅଭିହିତ କରିଥାନ୍ତି। ଏକଦା କୋଣାର୍କର ଯେଉଁ ସୂର୍ଯ୍ୟ ମନ୍ଦିର, ପୃଥିବୀର ସପ୍ତାଶ୍ଚର୍ଯ୍ୟମାନଙ୍କ ମଧ୍ୟରେ ଅନ୍ୟତମ ବୋଲି ସ୍ଥାନ ପାଇଥିଲା ଆଜି ବି ଭଗ୍ନାବସ୍ଥାରେ ବିଶ୍ୱର କାରୁକଳା, ଭାସ୍କର୍ଯ୍ୟର ଶ୍ରେଷ୍ଠ ସ୍ମାରକୀ ବହନ କରି ଚାଲିଛି।

ପ୍ରକୃତିର କରାଳ-ଗ୍ରାସ ଅପେକ୍ଷା, ମଣିଷର ଲୋଭିଲା ହସ୍ତ-ଦ୍ୱାରା କ୍ଷତ ବିକ୍ଷତ ହୋଇଥିବା ଏହି ଭଗ୍ନ ଅବସ୍ଥାର ଅପୂର୍ବ ସୂକ୍ଷ୍ମକାରୁ-କଳା-କୀର୍ତ୍ତିକୁ ବଞ୍ଚାଇ ରଖିବା ପାଇଁ ବିଶେଷ ଭାବରେ ଉଦ୍ୟମ କରିଥିଲେ ଇଂରେଜ ସରକାର।

ଦୀଲ୍ଲୀର ସମ୍ରାଟ ଜାହାଙ୍ଗୀରଙ୍କ ରାଜତ୍ୱ କାଳରେ, ତାଙ୍କର ପ୍ରତିନିଧି ବାଖର ଖାଁ ଓଡ଼ିଶା ସୁବାର ଶାସକ ଥିଲେ। ତାଙ୍କ ପୂର୍ବରୁ ଯବନମାନଙ୍କର ଏହି ମନ୍ଦିର ଉପରେ ଲୋଲୁପ ଦୃଷ୍ଟି ପଡ଼ିଥିଲା। ଓଡ଼ିଶା ଆକ୍ରମଣ କାଳରେ ଯବନ ମାନଙ୍କ ଦ୍ୱାରା ଓଡ଼ିଶାର ବହୁ ମନ୍ଦିର ଧ୍ୱସ୍ତ ବିଧ୍ୱସ୍ତ ଓ କ୍ଷତିଗ୍ରସ୍ତ ହୋଇଥିଲା।

ପୁରୀର ମହାରାଜା ୧୬୨୮ରେ ଏହି ସୂର୍ଯ୍ୟ ମନ୍ଦିର ପରିଦର୍ଶନରେ ଯାଇଥିଲେ। ସେ ଯବନମାନଙ୍କ ଦ୍ୱାରା ଏହି ମନ୍ଦିରକୁ ଆକ୍ରମଣର ଆଶଙ୍କା କରି ଏହି ସୂର୍ଯ୍ୟ ମନ୍ଦିରରେ ପ୍ରତ୍ୟହ ପୂଜା ପାଉଥିବା ସୂର୍ଯ୍ୟ ଦେବତା-ମର୍ତ୍ତ୍ୟାଦିତ୍ୟ-ବିରଞ୍ଚିଦେବ ବିଗ୍ରହଙ୍କୁ ପୁରୀ ଜଗନ୍ନାଥ ମନ୍ଦିର ପ୍ରାଙ୍ଗଣ ନିଳାଦ୍ରୀ ମହୋତ୍ସବ ମନ୍ଦିରକୁ ସ୍ଥାନାନ୍ତରିତ କରିଥିଲେ। ଜଗନ୍ନାଥ ମନ୍ଦିରର ପରିଚାଳନା ଦାୟିତ୍ୱରେ ଥିବା ନୀଳ ମହାପାତ୍ର କୋଣାର୍କର ଶୂନ୍ୟ ମନ୍ଦିର, ମୁଖଶାଳା, ନାଟ ମନ୍ଦିର, ସମସ୍ତର ମାପଯୋଖ କରି ସେ ମହାରାଜାଙ୍କୁ ଏକ ବିବରଣୀ ପ୍ରଦାନ କରିଥିଲେ। ସେଥିରେ ସେ ମନ୍ଦିର ଭିତରେ ଥିବା ସୂର୍ଯ୍ୟଦେବଙ୍କ ଶୂନ୍ୟ ସିଂହାସନ ଓ ସମ୍ମୁଖ ଭାଗରେ ଥିବା ଅରୁଣ ସ୍ତମ୍ଭଟିର ମାପଯୋଖ ଦେବାକୁ ଭୁଲି ନଥିଲେ।

ମୁକୁନ୍ଦଦେବଙ୍କ ରାଜତ୍ୱ ପରେ, ଯବନ ମାନେ ତାଙ୍କର ଆକ୍ରମଣ କାଳରେ ଏହି ସୂର୍ଯ୍ୟ ମନ୍ଦିରର କଳସ, କଳସ ଉପରେ ଥିବା ପଦ୍ମ ଓ ପଦ୍ମଧ୍ୱଜକୁ ଭାଙ୍ଗି ସେଥିରୁ ଲଗା ଯାଇଥିବା ସମସ୍ତ ତମ୍ବା ପାତକୁ ଖୋଲି ବାହାର କରି ନେଇ ଯାଇଥିଲେ।

ଅଷ୍ଟାଦଶ ଶତାବ୍ଦୀରେ ମରହଟ୍ଟା ଶାସକ ଗୁରୁ କ୍ଲୋରାଇଟରେ ତିଆରି ମନ୍ଦିର ସମ୍ମୁଖରେ ଥିବା ସେହି ଅରୁଣ ସ୍ତମ୍ଭଟିକୁ ଆଣି ପୁରୀର ବଡ଼ ଦେଉଳର ସିଂହ ଦ୍ୱାର ସମ୍ମୁଖରେ ସ୍ଥାପନ କରିଥିଲେ।

ଆବୁଲ ଫାଜଲଙ୍କ ବିବରଣୀରୁ ଜଣାଯାଏ, ଯବନ ମାନଙ୍କର କୋଣାର୍କର ସୂର୍ଯ୍ୟ ମନ୍ଦିର ମଧ୍ୟକୁ ପ୍ରବେଶ ଫଳରେ, ମନ୍ଦିରର ପବିତ୍ରତା ନଷ୍ଟ ହୁଏ, ତା ସହିତ ମଧ୍ୟ ମନ୍ଦିରରେ ବିଗ୍ରହ ନ ଥିବାରୁ ପ୍ରତ୍ୟହ ପୂଜା ଚିରଦିନ ପାଇଁ ବନ୍ଦ ହୋଇଯାଏ। ଯାତ୍ରୀ ସମାଗମ କ୍ରମଶଃ ଲୋପ ପାଇ ଯାଏ। ମନ୍ଦିରର ରକ୍ଷଣାବେକ୍ଷଣ, ମରାମତି ପାଇଁ କେହି ମଧ୍ୟ ଧ୍ୟାନ ଦିଅନ୍ତି ନାହିଁ, ସେଇଠୁଁ ଦ୍ରୁତ ଭାବରେ ମନ୍ଦିରର କ୍ଷୟିଷ୍ଣୁ ପ୍ରକ୍ରିୟା ଆରମ୍ଭ ହୁଏ।

କେହି କେହି ମତ ଦିଅନ୍ତି, ମନ୍ଦିର ଭିତର ଶୀର୍ଷରେ ଥିବା ପଥର ଗାତ୍ରର ପଦ୍ମ ସହିତ କଳସକୁ ଭେଦ କରି ରହିଥିବା ଚୁମ୍ବକର ଧାରଣା ଇଂରେଜ ବଣିକ ମାନଙ୍କର ଜାହାଜକୁ ସମୁଦ୍ରରୁ ଆକର୍ଷଣ କରୁଥିବା ହେତୁ, ସେମାନେ, ଏହାକୁ ଭାଙ୍ଗି ନେଇ ଯାଇଥିଲେ।

ମାତ୍ର ଏହାର ସତ୍ୟତା ଜଣାପଡ଼େ ନାହିଁ। କାରଣ ପରବର୍ତ୍ତୀ ସମୟରେ ଏହି ବ୍ରିଟିଶ ବଣିକ ସଂଘ (Marine Board) ୧୮୦୬ରେ ଭାରତ ବର୍ଷର ଜାତୀୟ ସଂରକ୍ଷଣ ସମିତିର ଉପସଭାପତିଙ୍କୁ ଏହି ବିଶ୍ୱ ବିଖ୍ୟାତ ମନ୍ଦିର, ଯାହାକୁ ସେମାନେ Black Pagoda ବା କୃଷ୍ଣ ପାଗୋଡ଼ା ବୋଲି ଆଖ୍ୟା ଦେଇଥିଲେ, ସେହି ମନ୍ଦିର ପ୍ରାଙ୍ଗଣରୁ ଖଣ୍ଡିଏ ବୋଲି ପଥର ସ୍ଥାନାନ୍ତରିତ ନ କରାଯାଉବୋଲି ପତ୍ର ଲେଖି ଅନୁରୋଧ କରିଥିଲେ। ଯାହାର ଫଳ ସ୍ୱରୂପ ବଡ଼ଲାଟ୍, ଜିଲ୍ଲାପାଳଙ୍କୁ ନିର୍ଦ୍ଦେଶ ଦେଇଥିଲେ; କେହି ଯେମିତି ସେହି ମନ୍ଦିର ପ୍ରାଙ୍ଗଣରୁ ଖଣ୍ଡିଏ ବୋଲି ପଥର ସ୍ଥାନାନ୍ତରିତ ନ କରନ୍ତି।

ଏହି ନିର୍ଦ୍ଦେଶ ନାମା ପୂର୍ବରୁ ଖୋର୍ଦ୍ଧାର ରାଜା ସୁନ୍ଦର କାରୁକାର୍ଯ୍ୟ ଯୁକ୍ତ ସିଂହ ଦ୍ୱାର ଓ ମନ୍ଦିର ଦେହର ପଥରକୁ ଖୋର୍ଦ୍ଧା ଦୁର୍ଗକୁ ସ୍ଥାନାନ୍ତରିତ କରି ସାରିଥିଲେ। ସେ ଗୁଡ଼ିକୁ ସେ ଦୁର୍ଗ ଭିତରେ ଏକ ନୂତନ ମନ୍ଦିର ନିର୍ମାଣରେ ଲଗାଇ ଥିଲେ।

ଏହା ବ୍ୟତୀତ ଏହି ମନ୍ଦିରରେ ଅପୂର୍ବ କାରୁକଳା ମଣ୍ଡିତ କେତେକ ପଥର ମୂର୍ତ୍ତି ଇଂଲଣ୍ଡର ବ୍ରିଟିଶ ସଂଗ୍ରହାଳୟକୁ, ଭାରତବର୍ଷର ଦିଲ୍ଲୀ ଓ କଲିକତାର ଜାତୀୟ ସଂଗ୍ରହାଳୟକୁ ସ୍ଥାନାନ୍ତରିତ ହୋଇ ସାରିଥିଲା।

ବିଖ୍ୟାତ ବ୍ରିଟିଶ ଲେଖକ କିଟୋ ତାଙ୍କର ଚାକ୍ଷୁସ ପ୍ରମାଣର ବିବରଣୀରେ ଏ କଥା ଉଲ୍ଲେଖ କରିଛନ୍ତି। ଖୋର୍ଦ୍ଧାର ରାଜା ମନ୍ଦିର ମଧ୍ୟକୁ ତିନୋଟି ପ୍ରବେଶଦ୍ୱାରର ତୋରଣକୁ ଭାଙ୍ଗି ସେଥିରୁ କାରୁକାର୍ଯ୍ୟ ଖଚିତ ପଥର ମାନ ନେଇ ଯାଇଥିଲେ। ସେ ଲେଖିଛନ୍ତି ପ୍ରକୃତି ଅପେକ୍ଷା ଲୋଭିଲା ମଣିଷରହସ୍ତ ମନ୍ଦିରର କ୍ଷୟ କ୍ଷତି ପାଇଁ ବିଶେଷ ଭାବରେ ଦାୟୀ।

ଇଂରେଜମାନେ ଗୋଟିଏ ପ୍ରକାଣ୍ଡ ପଥରର ସଂରକ୍ଷଣ ପାଇଁ କୋଣାର୍କରୁ କଲିକତା ଜାତୀୟ ସଂଗ୍ରହାଳୟକୁ ନେବାରେ ବ୍ୟର୍ଥ ହୋଇଛନ୍ତି। ତାହା ହେଉଛି ନବଗ୍ରହ ମୂର୍ତ୍ତି ଖୋଦିତ ପଥର ଖଣ୍ଡିକ। ସେହି କୋଣାର୍କ ମନ୍ଦିର ସନ୍ନିକଟରେ, ପରେ ଅବଶ୍ୟ ସେମାନେ ପ୍ରତ୍ନତତ୍ତ୍ୱ ବିଭାଗ ତରଫରୁ ସଂଗ୍ରହାଳୟଟିଏ ନିର୍ମାଣ କରିଥିଲେ। ଏହି ନବ ଗ୍ରହ ମୂର୍ତ୍ତି ଖୋଦିତ ପଥର ଖଣ୍ଡ ସେଠାରେ ସ୍ଥାପନ କରିବା ପୂର୍ବରୁ ପୁଣି ଚେଷ୍ଟା କରିଥିଲେ, କଲିକତାର ଜାତୀୟ ସଂରକ୍ଷଣକୁ ନେବାକୁ। ତାଙ୍କର ପ୍ରଚେଷ୍ଟା ମଧ୍ୟ ବିଫଳ ହୋଇଥିଲା।

କଲିକତା ଜାତୀୟ ସଂଗ୍ରହାଳୟକୁ ନେବା ପାଇଁ ସେହି ବିଶାଳ ପଥର ଖଣ୍ଡକୁ ଦୁଇଖଣ୍ଡ କରି କାଟି ପକାଇଥିଲେ। ସ୍ୱତନ୍ତ୍ର ଟ୍ରକ (ଯାନ) ତିଆରି କରି ମଧ୍ୟ ସେମାନେ

ତେଲି-କୁଦ କ୍ରିକ ପର୍ଯ୍ୟନ୍ତ ନେଇ ପାରିଲେ ନାହିଁ। ଜାହାଜରେ କଲିକତା ବନ୍ଦରକୁ ନେବା ତ ଦୂରର କଥା। ଏହି ନବଗ୍ରହ ପାଥରଟିର ଆୟତନ ୩୫୩ଘନ ଫୁଟ ଏବଂ ଓଜନ ୨୬୫ ଟନ ବା ୭୪୨ ମହଣ ଥିଲା। ଏହି ପାଟଟିର ଲମ୍ବ ୧୯ ଫୁଟ ୧୦ ଇଞ୍ଚ, ମୋଟେଇ ୪ଫୁଟ ୯ ଇଞ୍ଚ ଓ ଉଚ୍ଚତା ୩ ଫୁଟ ୯ ଇଞ୍ଚ। ଏହାକୁ କଲିକତା ବନ୍ଦରକୁ ନେବା ପାଇଁ କେବଳ ଯେ ଦୁଇଖଣ୍ଡ କରି କଟା ଯାଇଥିଲା ତାହା ନୁହେଁ, ତାହାର ଦୁଇ ତୃତୀୟାଂଶ ଚାଞ୍ଛି ବାହାର କରି ଦିଆଯାଇଥିଲା। ଅର୍ଥାତ୍ ପୂର୍ବରୁ ୪ଫୁଟ ୯ଇଞ୍ଚ ମୋଟେଇରୁ କାଟି ବାହାର କରି ୧ଫୁଟ ୬ଇଞ୍ଚ ମୋଟେଇକୁ ରଖା ଯାଇଥିଲା। ଗ୍ରହ ମୂର୍ତ୍ତିଗୁଡ଼ିକ ପଦ୍ମ ପୁଷ୍ପ ଉପରେ ପଦ୍ମାସନରେ ବିରାଜିତ। ସେମାନଙ୍କ ମସ୍ତକରେ ଅଳଙ୍କାର ଖଚିତ ମୁକୁଟ ଏବଂ ଶରୀରର ବିଭିନ୍ନ ଅଂଶରେ ନାନା ପ୍ରକାର ଅଳଙ୍କାର ମାନ ଶୋଭା ପାଉଛି।

ଏଇଥିରୁ ଅନୁମାନ କରିହେବ - ଯେତେବେଳେ ବିଜ୍ଞାନ ଓ କାରୀଗରୀର ବିକାଶ ସାଧିତ ହୋଇ ନଥିଲା। ଉତ୍କଳୀୟ କାରୀଗର ମାନେ କିପରି ଏଡ଼େ ବିଶାଳ ସୂର୍ଯ୍ୟ ମନ୍ଦିରଟିଏ ନିର୍ମାଣ କରିଥିଲେ। ଯାହାର ଖଣ୍ଡିଏ ପଥରକୁ କୋଣାର୍କରୁ କଲିକତାକୁ ବିଜ୍ଞାନ ଯୁଗରେ ମଧ୍ୟ ଇଂରେଜ ଶାସକ ମାନେ ସ୍ଥାନାନ୍ତରିତ କରି ପାରିଲେ ନାହିଁ।

ମାତ୍ର ଗୋଟିଏ କଥା ପାଇଁ ଆମ୍ଭେମାନେ ଇଂରେଜ ଜାତିକୁ ଧନ୍ୟବାଦ ଅର୍ପଣ ନ କରି ରହିପାରୁ ନାହିଁ ତାହା ହେଲା, ଆଜି ବି କୋଣାର୍କ ମନ୍ଦିରକୁ ଓ ତାର କାରୁକଳାର ଭାସ୍କର୍ଯ୍ୟକୁ ବିଶ୍ୱ ଦରବାରରେ ପ୍ରଦର୍ଶନ ପାଇଁ, ଯଦି କେହି ସଂରକ୍ଷଣ କରିଆରେ ବଞ୍ଚାଇ ରଖିବାର ପ୍ରଚେଷ୍ଟା କରିଛନ୍ତି - ସେ ହେଉଛନ୍ତି ଇଂରେଜ ସରକାର। ଜାତୀୟ ସଂରକ୍ଷଣ ଇତିହାସରେ କୋଣାର୍କ ମନ୍ଦିରର ସଂରକ୍ଷଣରେ ଇଂରେଜ ସରକାରଙ୍କ ଭୂମିକା ସ୍ୱର୍ଣ୍ଣାକ୍ଷରରେ ଚିରକାଳ ଲିପିବଦ୍ଧ ହୋଇ ରହିବ।



# କୋଣାର୍କ ସୂର୍ଯ୍ୟ ମନ୍ଦିରର ସଂରକ୍ଷଣ

ସୂର୍ଯ୍ୟ ମନ୍ଦିରର ସଂରକ୍ଷଣ ପ୍ରକ୍ରିୟା ଆରମ୍ଭ ହୋଇଥିଲା ଯେଉଁଦିନ ଇଉରୋପୀୟ ବଣିକ ମାନଙ୍କ ଅନୁରୋଧ କ୍ରମେ, ଜିଲ୍ଲାପାଳଙ୍କୁ ଗଭର୍ଣ୍ଣର ଜେନେରାଲ ନିର୍ଦ୍ଦେଶ ଦେଇଥିଲେ - ଯେପରି ମନ୍ଦିର ବେଢ଼ାରୁ ଖଣ୍ଡିଏ ବି ପଥର ସ୍ଥାନାନ୍ତରିତ ନ ହୁଏ। ମାତ୍ର ସେ ମନ୍ଦିରକୁ ଜୀବନ୍ୟାସ ଦେବାପାଇଁ ଆବଶ୍ୟକ ଅର୍ଥ ମଞ୍ଜୁର କରିବା ପ୍ରସ୍ତାବରେ ପ୍ରଥମେ ସହମତି ହୋଇ ନଥିଲେ। ସେ ଯଦି ସେତେବେଳେ ବି ଆବଶ୍ୟକ ଅର୍ଥ ମଞ୍ଜୁର କରି ଥାନ୍ତେ ୧୮୩୮ ବେଳକୁ ମନ୍ଦିର ଗାତ୍ରରୁ ପଥର ଖସି ଶିଳାସ୍ତୁପ ସୃଷ୍ଟି ହୋଇ ନ ଥାନ୍ତା।

୧୮୩୮ରେ ଇଂରେଜ ସରକାର ନିଜର ସଂରକ୍ଷଣ ଦାୟିତ୍ୱ ସଂପର୍କରେ ସେତେବେଳେ ସଚେତନ ହେଲେ, ଯେତେବେଳେ ବେଙ୍ଗଲ ଏସିଆଟିକ ସୋସାଇଟି ଖୋର୍ଦ୍ଧାର ରାଜା, ସରକାରଙ୍କର ବହୁମୂଲ୍ୟ ସମ୍ପତ୍ତିର ଧ୍ୱଂସ ସାଧନ କରୁଛନ୍ତି ବୋଲି ଉଲ୍ଲେଖ କଲେ। ଫଳରେ ବଙ୍ଗଳାର ଡେପୁଟୀ ଗଭର୍ଣ୍ଣର କେବଳ ବ୍ୟକ୍ତି ବିଶେଷଙ୍କ ଦ୍ୱାରା କ୍ଷୟ କ୍ଷତି ନ ହେବା ପାଇଁ ହସ୍ତକ୍ଷେପ କରିଥିଲେ। ବେଙ୍ଗଲର ଏସିଆଟିକ ସୋସାଇଟିର ଅନୁରୋଧରେ ନବଗ୍ରହ ମୂର୍ତ୍ତିକୁ କଲିକତା ସଂଗ୍ରହାଳୟକୁ ନେବାପାଇଁ ୧୮୬୭ରେ କେବଳ ୩୦୦୦ଟଙ୍କା ମଂଜୁର କରିଥିଲେ।

ବେଙ୍ଗଲର ଲେଫନ୍ୟାଣ୍ଟ ଗଭର୍ଣ୍ଣର ସାର ଆଶଲେ ଇଡେନ (Sir Ashlay Edition) ଠିକ୍ ପରେ ପରେ ମନ୍ଦିର ପରିଦର୍ଶନରେ ଆସିଲେ। ସେ ମନ୍ଦିର ସଂରକ୍ଷଣ ଓ ମରାମତି ପାଇଁ ପ୍ରସ୍ତାବ ଦେଲେ। ସେହି ଅନୁସାରେ ପୂର୍ତ୍ତ ବିଭାଗ (P.W.D) କୁ ନିର୍ଦ୍ଦେଶ ଦେଲେ ମନ୍ଦିରକୁ ଅବକ୍ଷୟରୁ ଅବଶିଷ୍ଟ ଅଂଶକୁ ସୁରକ୍ଷା ଦେବାପାଇଁ। ପ୍ରସ୍ତାବଦେଲେ ମନ୍ଦିର ଦେହରେ ପିଣ୍ଡା ରେ ଥିବା ହାତୀ ଓ ଘୋଡ଼ା ଆଦି ପ୍ରାଣୀର ପଥର ମୂର୍ତ୍ତି ଗୁଡ଼ିକୁ ଆଣି ସଜାଡ଼ି ଥୋଇବା ପାଇଁ। ଉପୁଜି ଥିବା ବୃକ୍ଷ ଓ ଗୁଳ୍ମ ଲତାକୁ ମନ୍ଦିର ଦେହରୁ ଓ ବେଢ଼ାରୁ ସଫା କରିବାର କାର୍ଯ୍ୟ - ୧୮୮୨ ପୂର୍ତ୍ତ ବିଭାଗ କରିଥିଲା।

୧୮୯୨ରେ ସାର୍ ଚାର୍ଲସ ଏଲିଏଟ୍ (Sir Charles Alliot) ଲେଫ୍‌ଟେନାଣ୍ଟ ଗଭର୍ଣ୍ଣର ମନ୍ଦିର ପରିଦର୍ଶନ କଲେ। ସେ ଆବଶ୍ୟକ ଅର୍ଥ ମଂଜୁର କଲେ। ତାଙ୍କ ସମୟରେ ସେହି ଦ୍ୱିତୀୟ ଥର ପ୍ରଚେଷ୍ଟା ହୋଇଥିଲା। ନବଗ୍ରହ ମୂର୍ତ୍ତିକୁ କଲିକତା ଜାତୀୟ ସଂଗ୍ରହାଳୟକୁ ନେବା ପାଇଁ। ଅନାବଶ୍ୟକ ଅଂଶକୁ ଚାଞ୍ଛି ଓ ପଥରଟିକୁ ଦୁଇଖଣ୍ଡ କରି ନେବାରେ ମଧ୍ୟ ବିଫଳ ହୋଇଥିଲେ। କୋଣାର୍କ ଠାରୁ ତେଲିକୁଦ କ୍ରିକ ପର୍ଯ୍ୟନ୍ତ ଅଳ୍ପ ଦୂରକୁ ନେବାର ସମ୍ଭବ ନୋହିଲା। ତା ସହିତ ମଧ୍ୟ କିଛିକାରୁକାର୍ଯ୍ୟ ଯୁକ୍ତ ସାନ ପଥର ଗୁଡ଼ିକୁ ଜାହାଜରେ ନେବା ବନ୍ଦ ହୋଇଗଲା। ସ୍ଥାନୀୟ ଲୋକେ ଏପରି ନେବାର ପ୍ରତିବାଦ କଲେ ଏବଂ ୧୮୯୩ରେ ସରକାର ଲୋକଙ୍କ ପ୍ରତିବାଦକୁ ବିଚାରକୁ ନେଇ ପୂର୍ତ୍ତ ବିଭାଗକୁ ନିର୍ଦ୍ଦେଶ ଦେଲେ ଭବିଷ୍ୟତରେ କେହିବି କୋଣାର୍କର ଖଣ୍ଡିଏ ବି ପଥର ସ୍ଥାନାନ୍ତରିତ ପାଇଁ ଛୁଇଁ ପାରିବେ ନାହିଁ; ତେଲି କୁଦ କ୍ରିକୁ ଯାଇଥିବା ପଥରମାନ ଫେରି ଆସିଲା।

ମାତ୍ର ୧୮୯୪ରେ କେବଳ ୧୩ ଖଣ୍ଡ ପଥର କଲିକତା ଜାତୀୟ ସଂଗ୍ରହାଳୟକୁ ସ୍ଥାନାନ୍ତରିତ ହୋଇଥିଲା।

ପୂର୍ତ୍ତ ବିଭାଗର ସୁପରିନ୍‌ଟେଣ୍ଡେଣ୍ଟ ଇଞ୍ଜିନିୟର ସରକାରଙ୍କ ନିର୍ଦ୍ଦେଶରେ ମନ୍ଦିର ପରିଦର୍ଶନ କଲେ। ସେ ମନ୍ଦିରର ଛାତରୁ ପଥର ନ ଖସିବାର ବ୍ୟବସ୍ଥା କଲେ ଓ ମନ୍ଦିର ଭିତରେ ବାଲି ଭର୍ତ୍ତି କରିବାର ବ୍ୟବସ୍ଥା କଲେ। ତାଙ୍କରି ସୁପାରିଶ୍‌ରେ ଜିଲ୍ଲା ମାଜିଷ୍ଟ୍ରେଟ ମନ୍ଦିରକୁ ଜଗିବା ପାଇଁ ପୋଲିସ ପ୍ରେଟୋଲିଂ ସୁବିଧା କଲେ।

୧୯୦୦ ମସିହା ଡିସେମ୍ବର ମାସରେ ସାର ଉଡ୍‌ବ୍ୟୁର୍ଣ୍ଣ, ଲେଫଟନାଣ୍ଟ ଗଭର୍ଣ୍ଣର ମନ୍ଦିର ପରିଦର୍ଶନ କଲେ। ସେ ହିଁ ସଂପୂର୍ଣ୍ଣ ଭାବରେ ଉପଲବ୍ଧି କଲେ, ଛିଡ଼ା ହୋଇଥିବା ଓ ଭାଙ୍ଗି ପଡ଼ିବା ଅବସ୍ଥାରେ ଥିବା ମନ୍ଦିରର ଅଂଶ ତୁରନ୍ତ ମରାମତ କରିବା ଆବଶ୍ୟକ। ସେ ତା ସହିତ ମଧ୍ୟ ନିର୍ଦ୍ଦେଶ ଦେଲେ ପଡ଼ିଥିବା ପଥର ଗୁଡ଼ିକୁ ତା ପୂର୍ବ ସ୍ଥାନରେ ବସାଇବା, ପୋତି ଯାଇଥିବା ପଥରକୁ ଖୋଳିବା, ମନ୍ଦିର ବେଢ଼ାର ଭଗ୍ନ ପ୍ରାଚୀରକୁ ପୁନର୍ନିର୍ମାଣ କରିବା। ପ୍ରତ୍ନତତ୍ତ୍ୱ ବିଭାଗର ସର୍ଭେୟର ସେହି ସବୁକାର୍ଯ୍ୟ ପାଇଁ ମଧ୍ୟ ସୁପାରିଶ କଲେ। ବଙ୍ଗ ସରକାର ସେ ସବୁ କାର୍ଯ୍ୟ ଆରମ୍ଭ କଲେ। ୧୯୦୧ରେ ଖନନ ଫଳରେ ଗୋଟିଏ ଚକ ଏବଂ ଗୋଟିଏ ନାଳ ଉଦ୍ଧାର କରାଗଲା।

୧୯୦୧ ବର୍ଷ ହେଉଛି ମନ୍ଦିର ପାଇଁ ଏକ ସ୍ମରଣୀୟ ବର୍ଷ। ଏହି ବର୍ଷ ଏକ ସୁନ୍ଦର ସଂରକ୍ଷଣର ବିଧିବଦ୍ଧ ବ୍ୟବସ୍ଥା ଗ୍ରହଣ କରାଗଲା।

ମନ୍ଦିରର ଚତୁଃପାର୍ଶ୍ୱରେ ପୋତି ହୋଇ ପଡ଼ିଥିବା ବଡ଼ ବଡ଼ ପଥରକୁ ବାହାର କରାଗଲା। ମନ୍ଦିର ବେଢ଼ା ଭିତର ଅଂଶକୁ ସଂପୂର୍ଣ୍ଣ ସଫା କରାଗଲା। ମନ୍ଦିରରୁ ଖସି ପଡୁଥିବା ଅଂଶକୁ ସୁନ୍ଦର ଭାବରେ ମରାମତି କରାଗଲା।

ଏହି ଦଶବର୍ଷ ଭିତରେ ପ୍ରତ୍ନତତ୍ତ୍ୱ ବିଭାଗର ସର୍ଭେୟର, ପୂର୍ବ ମଣ୍ଡଳର ସୁପରିନ୍‌ଟେଣ୍ଡେଣ୍ଟ, ଓଡ଼ିଶାର କନ୍‌ଜରଭେଟର, କାର୍ଯ୍ୟ ନିର୍ବାହୀ ଯନ୍ତ୍ରୀ ଓ ସବଡିଭିଜନାଲ ଅଫିସରଙ୍କୁ ନିର୍ଦ୍ଦେଶ ଦେଲେ, ମନ୍ଦିରର ଯେଉଁ ବିଶାଳ ଅଂଶ ରହିଛି ତାକୁ ସୁରକ୍ଷା ଦେବାପାଇଁ ସମଭାବରେ ସହଯୋଗ କରିବାକୁ। ସୁଖର କଥା ଓଡ଼ିଶାର ସେ କାଳର ସେହି ଅଫିସର ମାନେ ତାଙ୍କ ଦାୟିତ୍ୱ ତୁଲାଇବାରେ ଅବହେଳା କରି ନଥିଲେ।

କୋଣାର୍କ ମନ୍ଦିର ବେଢ଼ା ମଧ୍ୟରେ କ୍ଷୁଦ୍ର ବୃହତ୍ ଯେତେ ମନ୍ଦିର ଅଛି ସେ ସବୁର ସୁରକ୍ଷା ଓ ଉଦ୍ଧାର କାର୍ଯ୍ୟ ଆରମ୍ଭ ହେଲା।

ମନ୍ଦିର ଭିତର ପଟରୁ କେତେବେଳେ କେତେବେଳେ ପଥର ଖସିବା ବିପଜ୍ଜନକ ଏବଂ ଭିତରେ କାମ କରୁଥିବା କର୍ମୀମାନଙ୍କର ଜୀବନ ପ୍ରତି ବିପଦ । ଏହା ସହିତ ମନ୍ଦିର କେତେବେଳେ ଭୁଷୁଡ଼ି ପଡ଼ିବ, ସେଥିପାଇଁ ଚିରସ୍ଥାୟୀ ଭାବରେ ଭିତରଟିକୁ ବାଲିରେ ଭର୍ତ୍ତି କରିବାର ନିଷ୍ପତ୍ତି ନିଆଗଲା। ଛାତ ଭାଙ୍ଗି ଯାଇଥିବା ଅଂଶକୁ ମରାମତ କରିବା ପାଇଁ ୪.୫ ମିଟର ମୋଟେଇର ଗୋଟିଏ ସ୍ତମ୍ଭ ମୂଳରୁ ଛାତର ଚୂଳ ପର୍ଯ୍ୟନ୍ତ ନିର୍ମାଣ କରାଗଲା ଓ ଖୋଲା ଅଂଶ ତକ ବାଲିରେ ଭର୍ତ୍ତି କରାଗଲା। ପ୍ରଥମରୁ ଉତ୍ତର ଦ୍ୱାର ଦେଇ ବାଲି ଭର୍ତ୍ତି କରାଯାଉଥିଲା। ଏହିଟି କେବଳ ଖୋଲା ଥିଲା। ପରେ ସେହି ଦ୍ୱାରକୁ ମଧ୍ୟ ବନ୍ଦ କରିଦିଆଗଲା। ଏହା ପରେ ଛାତର ଉପର ଅଂଶ ଗର୍ତ୍ତ କରି ବାଲି ଭର୍ତ୍ତି କରାଗଲା। ଏହି ଗର୍ତ୍ତଟି ୧୩ ସେଣ୍ଟିମିଟର ଡାଇମିଟର ଏବଂ ୭.୬୨ ମିଟର ଲମ୍ବରେ / ସିଧା ଉପରୁ ଗର୍ତ୍ତ ଖୋଳା ଯାଇଥିଲା। ବାହାର ପଟୁ ବଡ଼ ଧରଣର ପଥର କାମ କରା ଯାଇଥିଲା; ଉପରେ ଝୁଲୁ ଥିବା ଅଂଶକୁ ସାହାଯ୍ୟ କରିବା ପାଇଁ। ଦକ୍ଷିଣ ଦ୍ୱାରଟି ପଥର କାମରେ ସଂପୂର୍ଣ୍ଣ ରୂପେ ଲୁଚି ଯାଇଥିଲା। ଏହି ଅଂଶଟି ଖୋର୍ଦ୍ଧା ରାଜାଙ୍କ ଦ୍ୱାରା ନଷ୍ଟ ହୋଇ ଯାଇଥିଲା। ହୁଗୁଳା ହୋଇ ଯାଇଥିବା ପଥର ଗୁଡ଼ିକୁ ପୁନରାୟ ସେମାନଙ୍କ ସ୍ଥାନରେ ସଂଯୁକ୍ତ କରା

ଯାଇଥିଲା । ୧୯୦୬-୭ ପଶ୍ଚିମ ଦ୍ୱାର ଉପରେ ଥିବା କର୍ଣ୍ଣିସ ପ୍ରଲମ୍ବିତ (ଠେକ ପଥର) ପାର୍ଶ୍ୱିକ ଭାରବଲମ୍ବକ ସ୍ତମ୍ଭ ନିର୍ମାଣ କରାଯାଇ ପିଣ୍ଡା ତଳ ବନ୍ଦ କରା ଯାଇଥିଲା ।

ଉପରେ ଥିବା ଦୁଇଟି ବୃହଦାକାର ସିଂହକୁ ସାବଧାନତାର ସହିତ ଭୋଗ ମଣ୍ଡପର ଉପରୁ ଆଣି ପୂର୍ବ ପାହାଚରେ ସ୍ଥାପନ କରାଯାଇଥିଲା । ମନ୍ଦିର ଭିତରୁ ଯେତେବେଳେ ଆବର୍ଜନା ପଥର ପରିଷ୍କାର କରାଯାଉଥିଲା, ସେତେବେଳେ ସୂର୍ଯ୍ୟ ଦେବତାଙ୍କ କ୍ଲୋରାଇଟର ପ୍ରତିମୂର୍ତ୍ତି ଗୋଟିଏ ବକ୍ର ସ୍ତମ୍ଭ ଦେହରୁ ଉଦ୍ଧାର କରା ଯାଇଥିଲା - ଯେଉଁ ପ୍ରତିମୂର୍ତ୍ତି ଦୀଲ୍ଲୀର ଜାତୀୟ ସଂଗ୍ରହାଳୟରେ ସ୍ଥାନିତ ହୋଇଛି ।

ଏହି ଭଳି ବହୁତ କାର୍ଯ୍ୟ ସହିତ ୧୯୦୬ରେ ଝାଉଁ ପୁନ୍ନାଗ ବୃକ୍ଷମାନ ବେଢ଼ାକୁ ଲାଗି ସମୁଦ୍ର ଆଡ଼କୁ ରୋପଣ କରାଯାଇଥିଲା । କେତେବେଳେ ସମୁଦ୍ର ବେଳା ଭୂମିର ବାଲୁକା ଝଡ଼ିଆସି ମନ୍ଦିରକୁ ପୋତି ପକାଇବ - ସେଥିରୁ ସୁରକ୍ଷା ଦେବାପାଇଁ ଏହି ପଦକ୍ଷେପ ମଧ୍ୟ ନିଆ ଯାଇଥିଲା ।

ଏଥି ସହିତ ବେଢ଼ାର ପଶ୍ଚିମ ଦକ୍ଷିଣ କୋଣରେ ଥିବା ସୁନ୍ଦର ମାୟାଦେବୀ ମନ୍ଦିରର ମୂଳଦୁଆ ଓ ତାର ଦୁଇଟି ଦେଖା ଯାଉଥିବା ପାର୍ଶ୍ୱ ଦେବତାଙ୍କୁ ସୁରକ୍ଷା ଦେବା ପାଇଁ ଇଟାର ଘେର ମଧ୍ୟ କରା ଯାଇଥିଲା ।

୧୯୧୦ରେ ପ୍ରାୟ ଏକ ଲକ୍ଷ ଟଙ୍କା ଖର୍ଚ୍ଚରେ ଏହି କୃଷ୍ଣ ପାଗୋଡ଼ାକୁ ଅଧିକ ଅବକ୍ଷୟ ମୁଖରୁ ସୁରକ୍ଷା ଦେବାକୁ ବ୍ୟୟିତ ହୋଇଥିଲା ।

୧୯୧୫ ପର୍ଯ୍ୟନ୍ତ ସୂର୍ଯ୍ୟ ମନ୍ଦିର, ମାୟାଦେବୀ ମନ୍ଦିର ଓ ଭୋଗ ମଣ୍ଡପର ସୁରକ୍ଷା ପାଇଁ ଅଧିକ ଧ୍ୟାନ ଦିଆଗଲା । ମରାମତ କାର୍ଯ୍ୟ ସହିତ ହୁଗୁଳା ପଥରକୁ ଯୋଡ଼ିବା, ପାଣି ପ୍ରବେଶକୁ ବନ୍ଦ କରିବା, ଉପର ପିଣ୍ଡା (Porch) ଗୁଡ଼ିକୁ ସହାୟତା ଦେବା ପାଇଁ ସୁରକ୍ଷା ସ୍ତମ୍ଭ (ଠେକ) ନିର୍ମାଣ କରିବା, ବିଦ୍ୟୁତ ଚଳନ (lightening conductor) ଖଂଜିବା, ଖୋଲି ଯାଇଥିବା ଖିଲାଣ ଗୁଡ଼ିକୁ ପୁଣି ଯୋଡ଼ିବା, ବାଲି ଉଡ଼ି ନ ଆସିବାପାଇଁ ଅଧିକ ବୃକ୍ଷରୋପଣ କରିବା ଆଦି କାର୍ଯ୍ୟ ସବୁ ୧୯୨୨ ବେଳକୁ ସମାପ୍ତ ହୋଇ ଯାଇଥିଲା ।

ସ୍ୱାଧୀନତା ପୂର୍ବରୁ ଦେଶର ମହାନ୍ କାରୁ କଳା ଓ ଭାସ୍କର୍ଯ୍ୟର ସୁରକ୍ଷାପାଇଁ ଇଂରେଜ ମାନଙ୍କର ଏପରି ମହାନ୍ କାର୍ଯ୍ୟକୁ ପ୍ରଶଂସା ନ କରି ରହିହେବ ନାହିଁ । ଏଇଥିରୁ ସେମାନଙ୍କର କୋଣାର୍କ ମନ୍ଦିରର ସୂକ୍ଷ୍ମକାରୁ କଳା ପ୍ରତି ପ୍ରବଳ ଆକର୍ଷଣର ସୂଚନା ମିଳେ ।

● କଥା କହେ କୋଣାର୍କ

ପ୍ରତ୍ନତତ୍ତ୍ୱ ବିଭାଗର ପଦକ୍ଷେପ ଦୀର୍ଘ ତିନିଶହ ବର୍ଷର ଅନ୍ଧକାର ଓ ଅବହେଳା ଭିତରୁ କୋଣାର୍କ ମନ୍ଦିରକୁ ରକ୍ଷା କରିବା ଏକ ସାଧୁ ଉଦ୍ୟମ। ତା ହୋଇ ନଥିଲେ ଏବେ କୋଣାର୍କ ଏକ ଭଗ୍ନ ସ୍ତୁପରେ ପରିଣତ ହୋଇଥାନ୍ତା।

୧୯୩୬ ମସିହାରେ ଉତ୍କଳ ପ୍ରଦେଶ ଗଠନ ହେଲା ପରେ ୧୯୩୮-୩୯ରୁ ପୂର୍ତ୍ତ ବିଭାଗ ଏହାର ରକ୍ଷଣା ବେକ୍ଷଣର ଦାୟିତ୍ୱ ନେଇଥିଲା। ମାତ୍ର ୧୯୩୯ ଠାରୁ ଭାରତର ପ୍ରତ୍ନତତ୍ତ୍ୱ ବିଭାଗ ଏହାର ସୁରକ୍ଷାର ସମସ୍ତ ଦାୟିତ୍ୱ ନେଇଗଲେ।

x x x x

୧୯୪୯ରେ ପ୍ରତ୍ନତତ୍ତ୍ୱ ବିଭାଗର ଜଣେ କାର୍ଯ୍ୟ ନିର୍ବାହୀ ଯନ୍ତ୍ରୀ ସର୍ଭେ କରି ୧୯୫୦ରେ ଅବକ୍ଷୟରୁ ରକ୍ଷା କରିବାକୁ କେତେକ ମୁଖ୍ୟ ପ୍ରସ୍ତାବ ବାଢ଼ିଥିଲେ।

୧୯୫୦ରେ ଭାରତ ସରକାର ଗୋଟିଏ ବିଶେଷଜ୍ଞ କମିଟି ଗଠନ କରିଥିଲେ। ସେହି କମିଟି ଏହି ଅପୂର୍ବ କାରୁ, କଳା, ଭାସ୍କର୍ଯ୍ୟକୁ ବଞ୍ଚାଇ ରଖିବା ପାଇଁ ମୁଖ୍ୟ କେତୋଟି ପ୍ରସ୍ତାବକୁ ଅନୁମୋଦନ କରିଥିଲେ। ତାହା ହେଲା,

୧. ବନ୍ଦ କରା ଯାଇଥିବା ସୂର୍ଯ୍ୟ ମନ୍ଦିର ମଧ୍ୟର ଆର୍ଦ୍ରତା (humidity) କୁ ପରୀକ୍ଷା କରିବା।

୨. ମନ୍ଦିର ବାହାର ପଟରୁ ଭିତରକୁ ପାଣି ପ୍ରବେଶ ନ କରିବା (water tight) ପାଇଁ ପଦକ୍ଷେପ ନେବା। ଅସଜଡ଼ା ମନ୍ଦିରର ଉପର ଅଂଶକୁ କଂକ୍ରିଟ କରିବା।

୩. ମନ୍ଦିର ବେଢ଼ା ମଧ୍ୟରୁ ଅନାବଶ୍ୟକୀୟ ବାଲି ବାହାର କରିବା ଓ ପାଣି ନିଷ୍କାସନର ବ୍ୟବସ୍ଥା କରିବା।

୪. ମନ୍ଦିର ବେଢ଼ାର ଭାଙ୍ଗି ଯାଇଥିବା କାନ୍ଥକୁ ପୂର୍ବର ଉଚ୍ଚତା ପର୍ଯ୍ୟନ୍ତ ଉଠାଇବା।

୫. ଉପର ଓ ତଳ ସମସ୍ତ ଚଟାଣରେ ରାସାୟନିକ ପ୍ରୟୋଗ କରିବା।

୬. ସମୁଦ୍ର ବେଳା ଭୂମି ଦିଗକୁ ଘନ ଝାଉଁ ଓ ବାଦାମ ଜଙ୍ଗଲ ସୃଷ୍ଟି କରିବା।

ଏହି ବିଶେଷଜ୍ଞ କମିଟି ପୁଣି ୧୯୫୩ରେ ବସି ସେ ସବୁର ସମୀକ୍ଷା କରିଥିଲେ।

୧୯୫୬ରେ ନବ ଗ୍ରହଙ୍କ ନିମନ୍ତେ କୋଣାର୍କ ବେଢ଼ାର ବାହାରେ ଉତ୍ତର ପୂର୍ବ କୋଣରେ ଏକ ଛୋଟ ମନ୍ଦିର ନିର୍ମାଣ କରାଯାଇ ନବଗ୍ରହଙ୍କୁ ସ୍ଥାନିତ କରାଯାଇଛି। ସେହିପରି କୋଣାର୍କ ମନ୍ଦିର ପରିସରରୁ ଉଦ୍ଧାର କରା ଯାଇଥିବା ପଥର ଶିଳ୍ପ ଗୁଡ଼ିକର

ସଂରକ୍ଷଣ ସହିତ ପର୍ଯ୍ୟଟକଙ୍କର ଦର୍ଶନ ନିମିତ୍ତ ଏକ କୋଠାଘର ନିର୍ମାଣ କରି ଭାରତ ସରକାରଙ୍କ ପତ୍ନତତ୍ତ୍ୱ ବିଭାଗ କାର୍ଯ୍ୟାଳୟ ପରିସର ମଧ୍ୟରେ ସେ ସବୁ ରଖାଯାଇଛି । ଏହି ସଂଗ୍ରହାଳୟରେ ନିମ୍ନ ଲିଖିତ ଶିଳ୍ପ-ଭାସ୍କର୍ଯ୍ୟ-ମଣ୍ଡିତ-ଶିଳାଖଣ୍ଡ ସାଇତା ଯାଇଛି । ବଳରାମ ମିଶ୍ର ସେ ସବୁର ଉଲ୍ଲେଖ କରିଛନ୍ତି ।

୧. ରାମ ସୀତା ବିବାହ ଦୃଶ୍ୟ । ଏଥିରେ ରାଜା ଜନକ ସୀତାଙ୍କୁ କୋଳରେ ବସାଇଛନ୍ତି ଏବଂ ସମ୍ମୁଖରେ ରାମ, ଲକ୍ଷ୍ମଣ, ଓ ଦଶରଥ ଅଛନ୍ତି । ରାମ ଓ ସୀତାଙ୍କ ମଧ୍ୟରେ କୁଳଗୁରୁ ବଶିଷ୍ଠ ଋଷି ଶଙ୍ଖରେ ଅର୍ଘ୍ୟ ଅର୍ପଣ କରୁଥିବାର ଦୃଶ୍ୟ ରହିଛି । ଦ୍ୱିତୀୟ ଭାଗରେ ସୀତାଙ୍କର ଚାରିଜଣ ସଖୀ ଓ ରାମଭକ୍ତ ପାଞ୍ଚଟି ମାଙ୍କଡ଼ର ମୂର୍ତ୍ତି ରହିଛି । ତୃତୀୟ ଭାଗରେ ଦୁଇଟି ସୁସଜ୍ଜିତ ହାତୀ ଓ ଘୋଡ଼ାଙ୍କ ସହିତ ଚାରିଜଣ ନୃତ୍ୟ-ରତା ରମଣୀ ରହିଛନ୍ତି ।

୨. ରାଜଦରବାର ଦୃଶ୍ୟରେ – ଖଟ ଉପରେ ଥିବା ଗଦି ଉପରେ ରାଜା ବସିଛନ୍ତି । ସମ୍ମୁଖରେ ପାତ୍ର ମନ୍ତ୍ରୀଗଣ ଦଣ୍ଡାୟମାନ । ଜଣେ ପ୍ରଜା ହାତ ଯୋଡ଼ି ଗୁହାରୀ ଜଣାଉ ଥିବାର ଦୃଶ୍ୟ ବ୍ୟତୀତ, ଗୋଟିଏ ହାତୀ ଉପରେ ମାହୁନ୍ତ ବସିଛି ଓ ଦୁଇ ଜଣ ପରିଚାରିକା ଚାମର ଓ ମାଳା ଧରିଥିବାର ଦେଖାଯାଉଛି ।

୩. ପଞ୍ଚଦେବ ମୂର୍ତ୍ତି ଦୃଶ୍ୟ- ଖଣ୍ଡିଏ ପଥର ଉପରେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଆଦି ପଞ୍ଚ ଦେବତାଙ୍କ ମୂର୍ତ୍ତି ରହିଛି ।

୪. ଶିକ୍ଷାଦାନର ଦୃଶ୍ୟ- ତିନୋଟି ପଥର ଉପରେ ତିନୋଟି ଶିକ୍ଷାଦାନର ଦୃଶ୍ୟ ଖୋଦିତ ହୋଇଛି । ସିଂହାସନ ଉପରେ ଆଚାର୍ଯ୍ୟ ବା ଗୁରୁ ତାଳପତ୍ର ପୋଥି ଧରି ବିଦ୍ୟାଦାନ ଥିବାର ଦୃଶ୍ୟ । ଛଅ ଜଣ ଶିଷ୍ୟ ଆଚାର୍ଯ୍ୟଙ୍କ ସମ୍ମୁଖରେ ଦଣ୍ଡାୟମାନ ଥିବା ବେଳେ, ଦକ୍ଷିଣ ପାର୍ଶ୍ୱରେ ଛଅ ଜଣ ଶିଷ୍ୟ ଆଣ୍ଠୁ ମାଡ଼ି ବସିଛନ୍ତି । ବାମ ଭାଗରେ ଦୁଇଜଣ ଶିଷ୍ୟ ମଧ୍ୟ ରହିଛନ୍ତି । ଦ୍ୱିତୀୟ ଭାଗରେ ଶିଷ୍ୟମାନେ ପୋଥି ପଢୁଥିବା ଓ ନିମ୍ନ ଭାଗରେ ପାଞ୍ଚଜଣ ସନ୍ନ୍ୟାସୀ କମଣ୍ଡଳୁ ଧରି ଥିବାର ଦୃଶ୍ୟ ମଧ୍ୟ ଖୋଦିତ ।

୫. ରାଜାଙ୍କର ଦରବାର – ପଲଙ୍କ ଉପରେ ରାଜା ବସିଛନ୍ତି । ଦୁଇଜଣ ସ୍ତ୍ରୀ ଆଲଟ ଚାମର କରୁଛନ୍ତି । ସମ୍ମୁଖରେ ଚାରିଜଣ ପାତ୍ର ମନ୍ତ୍ରୀ ରାଜାଙ୍କୁ କିଛି ସନ୍ଦେଶ ଦେଉଥିବା ବେଳେ, ନିମ୍ନରେ ଦୁଇଟି ହାତୀ ଓ ଦୁଇଟି ଘୋଡ଼ା ସହିତ କେତେକ ଦାସଦାସୀ ଉପସ୍ଥିତ ଅଛନ୍ତି ।

୬. ଏକ ମଗର ଉପରେ ଗଙ୍ଗାଦେବୀ ବସିଛନ୍ତି ।

୭. ସୂର୍ଯ୍ୟ ମୂର୍ତ୍ତି - ସପ୍ତାଶ୍ୱ ସଂଯୋଜିତ ଓ ସାରଥୀ ବିଦ୍ୟମାନ ପୀଠରେ ସୂର୍ଯ୍ୟଦେବ ଦଣ୍ଡାୟମାନ । ଦୁଇ ପାର୍ଶ୍ୱରେ ଢ଼ାଲ ତରବାରୀ ଧାରୀ ଦୁଇ ଜଣ ସୈନିକ । ଏହାଙ୍କର ଚାରୋଟି ହାତ । ଏଥିରୁ ଗୋଟିଏ ହାତରେ ତ୍ରିଶୂଳ ।

୮. ଶେଷ ଦେବ, ଏକ ସପ୍ତଫେଣୀ ସର୍ପର ଫଣା ତଳେ ଦଣ୍ଡାୟମାନ । ଶେଷ ଦେବଙ୍କ ମସ୍ତକରେ ମୁକୁଟ ଓ ଦୁଇ ପାର୍ଶ୍ୱରେ ଦୁଇ ସଖା ରହିଛନ୍ତି ।

୯. ଦୁର୍ଗା, ଜଗନ୍ନାଥ ଓ ଶିବ - ଗୋଟିଏ ପଥରର ଏକ ପାର୍ଶ୍ୱରେ ଦୁଇଟି ସିଂହାସନ ରହିଛି । ଗୋଟିକରେ ମହିଷ ମର୍ଦ୍ଦିନୀ ଦୁର୍ଗା ସିଂହ ଉପରେ ବିରାଜିତ । ଅନ୍ୟଟିରେ ଶିବ ଲିଙ୍ଗ ଓ ଜଗନ୍ନାଥ ମୂର୍ତ୍ତି ବିରାଜିତ । ସମ୍ମୁଖରେ ଦଣ୍ଡାୟମାନ ରାଜାଙ୍କୁ ସେବକ ଠାକୁରଙ୍କ ପ୍ରସାଦ ଦେବାର ଦେଖଯାଏ । ନିମ୍ନ ଭାଗରେ ସୁସଜ୍ଜିତ ହାତୀ ଓ ସୈନ୍ୟ ରହିଛନ୍ତି ।

୧୦. ବିଷ୍ଣୁ ମୂର୍ତ୍ତି - ଚତୁର୍ଭୁଜ ବିଷ୍ଣୁମୂର୍ତ୍ତି ଦଣ୍ଡାୟମାନ ରହିଛନ୍ତି । ଉପର ଦୁଇ ହାତରେ ଶଙ୍ଖ, ଚକ୍ର, ରହିଛି । ଦୁଇ ପାଖରେ ଦୁଇ ଜଣ ସ୍ତ୍ରୀ ମୂର୍ତ୍ତି । ଜଣକ ହାତରେ ଗଦା ଓ ଅନ୍ୟ ଜଣକ ହାତରେ ପଦ୍ମ ରହିଛି । ଏ ସବୁ ମୂର୍ତ୍ତି ଏକ ପଦ୍ମ ଉପରେ ରହିଛି । ବିଷ୍ଣୁଙ୍କ ପାଦ ତଳେ ଗରୁଡ଼ ଆଣ୍ଠୁମାଡ଼ି ବସିଛନ୍ତି ।

୧୧. ନୃସିଂହ ମୂର୍ତ୍ତି । ଭଗବାନ ବିଷ୍ଣୁ ନୃସିଂହ ଅବତାର ଧାରଣ କରି ହିରଣ୍ୟ କାଶ୍ୟପଙ୍କୁ ବିଦାରଣ କରୁଥିବାର ଦୃଶ୍ୟ ରହିଛି ।

୧୨. ଶିବ - ଗୋଟିଏ ବୃକ୍ଷ ଉପରେ ଚତୁର୍ଭୁଜ ହୋଇ ଶିବ ବସିଛନ୍ତି ।

୧୩. ରାଜା ଧନୁର୍ବାଣ ଦ୍ୱାରା ଲକ୍ଷ୍ୟ ଭେଦ କରୁଥିବା ଏବଂ ଅନ୍ୟ ସାମନ୍ତମାନେ ଧନୁଶର ଓ ତରବାରୀ ଧରି ଛିଡ଼ା ହୋଇ ଥିବାର ଦୃଶ୍ୟ ।

୧୪. ଦୋଳି ଦୃଶ୍ୟ - ରାଜା କାରୁକାର୍ଯ୍ୟ ଖଚିତ ଦୋଳିରେ ବସିଥିବା ବେଳେ, ଛଅ ଜଣ ପରିଚାରିକା ଦୋଳି ଝୁଲାଉଛନ୍ତି । ଛଅ ଜଣ ପରିଚାରିକା ବାଦ୍ୟ ଯନ୍ତ୍ର ସହ ନୃତ୍ୟଗୀତ ପରିବେଷଣ କରୁଛନ୍ତି ।

୧୫. ଅଗ୍ନି ଦେବତା - ତ୍ରିଭଙ୍ଗ ତୋରଣ ମଧ୍ୟରେ ଅଗ୍ନିଦେବତା ମେଷ ଉପରେ ଆରୋହଣ କରିଥିବାର ଦୃଶ୍ୟ ।

୧୬. ସୂର୍ଯ୍ୟ ନାରାୟଣ - ଏହି ସଂଗ୍ରହାଳୟରୁ ସୂର୍ଯ୍ୟ ନାରାୟଣ ମୂର୍ତ୍ତିଙ୍କୁ ନେଇ ଦୀଲ୍ଲୀରେ ଜାତୀୟ ସଂଗ୍ରହାଳୟରେ ଅବସ୍ଥାପିତ କରାଯାଇଛି।

ଏହି ସବୁ କାରୁ କଳା, ଭାସ୍କର୍ଯ୍ୟ ଯୁକ୍ତ ପଥର ମୂର୍ତ୍ତିକୁ ଦେଖିଲେ, ଯେ କେହି ଜାଣି ପାରିବେ, କୋଣାର୍କ ଗାତ୍ରର ଅପୂର୍ବ କଳା କୌଶଳ କେମିତି ପର୍ଯ୍ୟଟକଙ୍କୁ ମୁଗ୍ଧ କରୁଥିଲା, ଏହି ସବୁ ଅପୂର୍ବ ସୁନ୍ଦର ଭାସ୍କର୍ଯ୍ୟ ପାଇଁ କୋଣାର୍କ ମନ୍ଦିର ପର୍ଯ୍ୟଟକ, ଗବେଷକ ଓ ଇଞ୍ଜିନିୟର ମାନଙ୍କ ଆଖିରେ ପୃଥିବୀରେ ଶ୍ରେଷ୍ଠ।

ଅନ୍ତାକ୍ଷରୀରେ ଏତିକି କହିବି - କୋଣାର୍କର କାହାଣୀ ଯେଉଁମାନେ ଲୋକ ଲୋଚନଙ୍କୁ ଆଣି ଜନମାନସରେ ଏହି ସୂର୍ଯ୍ୟମନ୍ଦିର ପ୍ରତି ଶ୍ରଦ୍ଧା ସୁମନ ବାଢ଼ି ଦେଇଛନ୍ତି, ସେମାନଙ୍କ ପ୍ରତି ଜଣେ ଲେଖକ ଭାବରେ ମୁଁ ଗଭୀର କୃତଜ୍ଞତା ଜ୍ଞାପନ କରୁଛି। ସେମାନେ ଦେଶଜାତି ପାଇଁ ଅତୀତର କାରୁକଳା -ଭାସ୍କର୍ଯ୍ୟର ଗୌରବମୟ ଇତିହାସ ବିଶ୍ୱ ସମକ୍ଷରେ ଟେକି ଧରିବାରେ ସମର୍ଥ ହୋଇଛନ୍ତି। ସେହିମାନଙ୍କ ପଦାଙ୍କ ଅନୁସରଣ କରି ସରସ୍ୱତୀ ଉପାଧିରେ ଭୂଷିତ ମହାନ ଉପନ୍ୟାସିକା ଡକ୍ଟର ପ୍ରତିଭା ରାୟଙ୍କ ଉପନ୍ୟାସ 'ଶିଳାପଦ୍ମ' ଠାରୁ ଭିନ୍ନ ଏକ ଐତିହାସିକ ଉପନ୍ୟାସ ରଚନା କରିବାପାଇଁ ମୁଁ ଚେଷ୍ଟା କରୁଛି। ତଥାପି ଶିଳାପଦ୍ମର କିଛି ବିଷୟ ବସ୍ତୁକୁ ମୁଁ ବାଦ ଦେଇ ପାରି ନାହିଁ। ମୋର ଏହି 'କଥା କହେ କୋଣାର୍କ' ସଂପୂର୍ଣ୍ଣ ଭାବରେ ଏକ ଗବେଷଣାତ୍ମକ ଉପନ୍ୟାସ। ବିଶେଷକରି ଐତିହାସିକ ଭିତ୍ତି ଭୂମି ଉପରେ ପର୍ଯ୍ୟବସିତ। ଯେଉଁମାନେ ଅଧିକ ଗବେଷଣା କରିବାକୁ ଚାହିଁବେ, ସୂର୍ଯ୍ୟ ମନ୍ଦିରର ନିର୍ମାଣର ଇତିହାସ ଏହି ଉପନ୍ୟାସରୁ ପାଇ ପାରିବେ। ଏହି 'କଥା କହେ କୋଣାର୍କ' ଉପନ୍ୟାସଟି ପାଠକ ପ୍ରାଣକୁ ବନ୍ଶୀ କଣ୍ଟାରେ ମାଛକୁ ଧରିଲା ପରି ଆକର୍ଷଣ କରିବ ଏଥିରେ କିଛି ସନ୍ଦେହ ନାହିଁ।

ତଥାପି ମୁଁ କହି ରଖିବାକୁ ବାଧ - ଯେଉଁମାନେ ଗବେଷକ, ଐତିହାସିକ ଅଧିକ ତଥ୍ୟ ସଂଗ୍ରହ କରିଛନ୍ତି - ସେହି ମାନଙ୍କ ପାଖରେ ମୁଁ କ୍ଷମା ଭିକ୍ଷା କରୁଛି - କିଛି ତଥ୍ୟ ହୁଏତ ମୋ ଉପନ୍ୟାସଟିରେ ଯେ ବାଦ ପଡ଼ି ଥିବ ସେ କଥା ମୁଁ ମୁକ୍ତ କଣ୍ଠରେ ସ୍ୱୀକାର କରୁଛି।

ନାଟକ, ଚଳଚ୍ଚିତ୍ର ବା ଧାରାବାହିକ - ଏ ଗୁଡ଼ିକ ଦୃଶ୍ୟ କାବ୍ୟ। ଅଧିକ ସଂଖ୍ୟକ ଦର୍ଶକ - ଅଳ୍ପ ସମୟ ଭିତରେ ତାର ବିଷୟ ବସ୍ତୁକୁ ପ୍ରତ୍ୟକ୍ଷ କରି ପାରିବେ। ସେ ପ୍ରୟାସ ମୋର ଜାରି ରହିଛି। ଯେମିତି ସମ୍ରାଟ ଖାରବେଳ ଧାରାବାହିକ - ଭାରତବର୍ଷର ଏକ ସୁବର୍ଣ୍ଣ ଯୁଗର ଇତିହାସ ବହନ କରିଛି, ସେମିତି ଏକ ଧାରାବାହିକ ପ୍ରସ୍ତୁତ ପରେ କୋଣାର୍କ

ନିର୍ମାଣର କାହାଣୀ ଉପରେ ଧାରାବାହିକଟିଏ କରିବାରେ ବାରବାର ବିଫଳ ହୋଇ ଏ ଉପନ୍ୟାସଟିକୁ ପାଠକ ମାନଙ୍କ କରକମଳରେ ମୁଁ ଟେକି ଦେବାକୁ ବାଧ୍ୟ ହୋଇଛି। କେବେ ଓଡ଼ିଆ ଜାତିର ପ୍ରତିନିଧି ଶାସକମାନେ ଏହି ଜାତିର ମହାନ୍ ସମ୍ପଦର ସୁରକ୍ଷା ପାଇଁ ଅଧିକ ଯତ୍ନଶୀଳ ହେବେ ସେହି ସମୟ ଅପେକ୍ଷାରେ ମୁଁ।

ତେବେ ଯେଉଁମାନଙ୍କର ପଦାଙ୍କ ଅନୁସରଣ କରି ମୁଁ 'କଥା କହେ କୋଣାର୍କ' ଉପନ୍ୟାସ ଲେଖିଛି - ସେହିମାନଙ୍କ ପବିତ୍ର କରକମଳରେ, ତଥା ସେମାନଙ୍କ ଭିତରୁ କେତେ ଜଣଙ୍କ ଅମର ଆତ୍ମା ଉଦ୍ଦେଶ୍ୟରେ ମୁଁ ସମର୍ପଣ କରୁଛି।

ସେମାନେ ହେଲେ - କୃପାସିନ୍ଧୁ ମିଶ୍ର, ପଣ୍ଡିତ ନୀଳକଣ୍ଠ ଦାଶ, ପଣ୍ଡିତ ଗୋପବନ୍ଧୁ ଦାଶ, ଶ୍ରୀ ସଦାଶିବ ରଥ ଶର୍ମା, ଡକ୍ଟର ରାଧାରମଣ ପଣ୍ଡା, କବିବର ରାଧାନାଥ ରାୟ, ସାରଳା ଦାସ, ଦେବଳା ମିତ୍ର, ବିଷ୍ଣୁନ ସ୍ୱରୂପ, ଏଲିସ ବୋନାର, ରାଜେନ୍ଦ୍ର ପ୍ରସାଦ ଦାସ, ଡକ୍ଟର ରାଜେନ୍ଦ୍ର ଲାଲ ମିତ୍ର, ମିଃ ଏ. ଷ୍ଟାରଲିଂ, ମନ ମୋହନ ଗାଙ୍ଗୁଲି, ପାରସୀ ବ୍ରାଉନ, ଡକ୍ଟର ମାୟାଧର ମାନସିଂ, ଡବଲ୍ୟୁ ଡବଲ୍ୟୁ ହଣ୍ଟର, ଜେମସ୍ ଫରଗୁସନ, ଚାର୍ଲସ ଲ୍ୟୁଆସ ଫେବ୍ରୀ, ଡକ୍ଟର ପ୍ରତିଭାରାୟ ଏବଂ ପ୍ରଫେସର କରୁଣା ସାଗର ବେହେରା ଏବଂ ଆହୁରି ଅନ୍ୟମାନେ।

ଏହା ବ୍ୟତୀତ ମାଦଳା ପାଞ୍ଜି, ପ୍ରାଚୀ ମହାତ୍ମ୍ୟ, ବ୍ରହ୍ମପୁରାଣ, ଶାମ୍ବ ପୁରାଣ, କପିଳ ସଂହିତା, ଭବିଷ୍ୟ ପୁରାଣ, ଭାଗବତ ଏବଂ ପୁରୀ ଜିଲ୍ଲାର ଗେଜେଟିଆରସ୍ ଇତ୍ୟାଦିର ଲେଖକ ଓ ସଂଗ୍ରାହକ।

ଯେଉଁ ଦିନ ବିଶ୍ୱବାସୀ, ବିଶ୍ୱ ବିଖ୍ୟାତ 'କଥା କହେ କୋଣାର୍କ'ର ନିର୍ମାଣର ଚଳଚ୍ଚିତ୍ର ବା ଧାରାବାହିକ ପ୍ରତ୍ୟକ୍ଷୀଭୂତ ହେବେ - ଏ ଓଡ଼ିଆ ଜାତିର ସେହି ମହାନ୍ ଶିଳ୍ପୀମାନଙ୍କୁ ସମ୍ମାନ ବାଢ଼ି ଦେବେ, ସେହିଦିନ ମୋର ଅଭିଳାଷ ପୂର୍ଣ୍ଣ ହେବ।

ବିନୀତ

ଲେଖକ

**ଡକ୍ଟର କାର୍ତ୍ତିକେଶ୍ୱର ପାତ୍ରଙ୍କ ସୃଷ୍ଟିସମ୍ଭାର :**

ଗଳ୍ପ ପୁସ୍ତକ : ୮, ଉପନ୍ୟାସ : ୨୩
ନାଟକ : ୧୨, କାବ୍ୟ : ୩, କବିତା-୪
ଭ୍ରମଣ କାହାଣୀ - ୧, ପ୍ରବନ୍ଧ - ୧୧
ଚଳଚ୍ଚିତ୍ର - ୪, ସିରିଏଲ୍ - ୧
ଏଗୁଡ଼ିକ ମଧ୍ୟରୁ ଡକ୍ଟର କାର୍ତ୍ତିକେଶ୍ୱର ପାତ୍ରଙ୍କ ଉଲ୍ଲେଖନୀୟ ଅବଦାନ -
ଉତ୍କଳର ନୌବାଣିଜ୍ୟର ଇତିହାସ ଉପରେ ପ୍ରଥମ ଗବେଷଣାତ୍ମକ ପ୍ରବନ୍ଧ (ଇଂରାଜୀରେ)
କଳିଙ୍ଗ ସମ୍ରାଟ ଖାରବେଳଙ୍କ ଉପରେ ଧାରାବାହିକ ହିନ୍ଦୀରେ ଭାରତ ସରକାରଙ୍କ ଦୂରଦର୍ଶନରେ ପ୍ରସ୍ତୁତି ।
ଭାରତ ବର୍ଷର ସମ୍ବିଧାନ ସଭାର ଇତିହାସ ଏବଂ ବିତର୍କ (ଇଂରାଜୀରେ) ।
ଏ ସବୁ ବ୍ୟତୀତ - ଓଡ଼ିଆ ଭାଷା ସାହିତ୍ୟର ଜନକ ବ୍ୟାସକବି ଫକୀର ମୋହନଙ୍କ ଉପରେ ଜୀବନୀ ଉପନ୍ୟାସ, ରୀତି ଯୁଗୀୟ ମହାନ୍ ସ୍ୱାଭିମାନୀ କବି ଦୀନକୃଷ୍ଣଙ୍କ ଉପରେ ଜୀବନୀ ଉପନ୍ୟାସ 'ତୁମ୍ଭଙ୍କୁ ମୋର ନାହିଁ ଡର' ମହାଭାରତର ମହାଧନୁର୍ଦ୍ଧର ଅର୍ଜୁନଙ୍କ ମୃତ୍ୟୁ ପୂର୍ବରୁ ତାଙ୍କର ଆତ୍ମ ସମୀକ୍ଷା 'ଅର୍ଜୁନ ଉବାଚ' ।
ସର୍ବୋପରି ଉତ୍କଳର ଗୌରବମୟ ଇତିହାସର ମୂକସାକ୍ଷୀ କୋଣାର୍କ ମନ୍ଦିର ନିର୍ମାଣ ଉପରେ ଏହି **'କଥା କହେ କୋଣାର୍କ'** ଉପନ୍ୟାସ ।

